# ନୀହାରିକା

କଟକ ସିଟି କଲେଜର ଇତିହାସ ବିଭାଗର
**ମୁଖ୍ୟ ଅଧ୍ୟାପିକା ଶ୍ରୀମତୀ ନୀହାରିକା ଦାସଙ୍କ**
ସ୍ମୃତି ଉଦ୍ଦେଶ୍ୟରେ ରଚିତ

ସଂପାଦକ
**ଡକ୍ଟର ପ୍ରମୋଦ କୁମାର ଦାଶ**
ଅଧ୍ୟାପକ, ଓଡ଼ିଆ ବିଭାଗ
ସରକାରୀ ମହିଳା କଲେଜ
ବ୍ରହ୍ମପୁର

ସହଯୋଗୀ
**ଶ୍ରୀ ତପନକାନ୍ତି ପଟ୍ଟନାୟକ**
ଅଧ୍ୟାପକ, ଇଂରାଜୀ ବିଭାଗ
ରାଜଧାନୀ କଲେଜ
ଭୁବନେଶ୍ୱର

**ଅଧ୍ୟାପିକା ନୀହାରିକା ଦାସ ସ୍ମୃତି ନ୍ୟାସ**
କଟକ

# ନୀହାରିକା

ସଂପାଦକ :
**ଡକ୍ଟର ପ୍ରମୋଦ କୁମାର ଦାଶ**

ସହଯୋଗୀ :
**ଶ୍ରୀ ତପନକାନ୍ତି ପଟ୍ଟନାୟକ**

ପ୍ରକାଶକ :
**ଅଧ୍ୟାପିକା ନୀହାରିକା ଦାସ ସ୍ମୃତି ନ୍ୟାସ**
ନଦିଆ ନିବାସ
ଝାଞ୍ଜିରୀ ମଙ୍ଗଳା
କଟକ-୭୫୩୦୦୯
Website : www.niharikadas.in

ପ୍ରଥମ ସଂସ୍କରଣ :
**ବ୍ୟଞ୍ଜନ ଦ୍ୱାଦଶୀ, ୧୯୯୫**

ଦ୍ୱିତୀୟ ସଂସ୍କରଣ :
**ବ୍ୟଞ୍ଜନ ଦ୍ୱାଦଶୀ, ୨୦୧୬**

ମୁଦ୍ରଣ :
**ଶୁଭମ୍ ପ୍ରିଣ୍ଟର୍ସ**
ରାଜେନ୍ଦ୍ର ନଗର, କଟକ-୭୫୩୦୧୦

**ମୂଲ୍ୟ : ଟ.୨୦.୦୦**

# ସ୍ୱର୍ଗତା ନୀହାରିକା ଦାସ



ଆବିର୍ଭାବ :
ତା୧୯/୧୧/୧୯୫୫ରିଖ

ତିରୋଧାନ :
ତା୧୪/୧୨/୧୯୯୪ରିଖ

# ମୁଖବନ୍ଧ

"ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର ।" ସ୍ମରଣିକା ପ୍ରକାଶନ ମୂଳରେ ଏହି ସତ୍ୟ ହିଁ ବିଦ୍ୟମାନ । ମଣିଷ ଜୀବନ କ୍ଷଣଭଙ୍ଗୁର ହେଲେ ମଧ ସ୍ମୃତି ପ୍ରାୟତଃ ମଧୁର । କିନ୍ତୁ ସ୍ମୃତି ଯେତେବେଳେ ଦୁଃଖଦ ଓ କରୁଣ, ସେତେବେଳେ ତାହା ବାରମ୍ବାର ଅନୁରଣିତ ହୋଇଥାଏ ମଣିଷର ହୃଦୟରେ, ମନରେ । ସ୍ମୃତିଚାରଣ ଭିତରେ ମଣିଷ ଫେରିଯାଏ ସେହି ସୁଦୂର ଅତୀତକୁ, ଯାହା ଦିନେ ଥିଲା ପ୍ରାଣବନ୍ତ । ନୀହାରିକା ଦେବୀ ସେହି ଅତୀତ ସ୍ମୃତିର ନିଦର୍ଶନ ହେଲେ ମଧ୍ୟ ସେ ବର୍ତ୍ତମାନ ଆମ୍ଭମାନଙ୍କ ଗହଣରେ ଜୀବନ୍ତ । ସଦା ହସହସ, ପ୍ରଫୁଲ୍ଲିତ ଅନ୍ତର, ନିବିଡ଼ ଆନ୍ତରିକତା, ମଧୁର ସ୍ନେହ ସଂପର୍କର ସେ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ । ଭଗବାନଙ୍କ ଶ୍ରେଷ୍ଠ ଦାନ 'ହସ' ତାଙ୍କ ମୁଖରେ ସର୍ବଦା ଶୋଭା ପାଉଥିଲା । ସେଥିରେ ସେ ସମସ୍ତଙ୍କୁ ଆପ୍ୟାୟିତ କରିପାରୁଥିଲେ । ସେଭଳି ବ୍ୟକ୍ତିତ୍ୱ ଆଜି ଆମ ଗହଣରେ ନାହାଁନ୍ତି ସତ, କିନ୍ତୁ ତାଙ୍କର ନୀତିନିଷ୍ଠ ଜୀବନ, ପରକୁ ଆପଣାର କରିବାର ପ୍ରବୃତ୍ତି ଆମ୍ଭମାନଙ୍କୁ ସର୍ବଦା ଅନୁପ୍ରାଣିତ କରୁଥିବ । ତାଙ୍କର ଅମର ଆତ୍ମା ଚିରଶାନ୍ତି ଲାଭ କରୁ- ଏହା ଭଗବାନଙ୍କ ନିକଟରେ ଆମର ପ୍ରାର୍ଥନା ।

ସ୍ମରଣିକାରେ ପ୍ରକାଶ ପାଇଥିବା ଲେଖାଗୁଡ଼ିକ ପ୍ରାୟ ଶୁଭେଚ୍ଛୁ ବନ୍ଧୁମାନଙ୍କଠାରୁ ପ୍ରାପ୍ତ ହୋଇଛି । ସେସବୁଥିରେ ନୀହାରିକା ଦେବୀଙ୍କ ଜୀବନଚରିତ ଊଣାଅଧିକେ ପ୍ରତିଫଳିତ । ତାହା ସୁଧୀ ପାଠକମାନେ ପାଠ କଲେ ଜାଣିପାରିବେ । ନିବିଡ଼ ଆନ୍ତରିକତାର ସ୍ପର୍ଶ ସେ ସମସ୍ତ ଲେଖାରେ ପ୍ରମାଣିତ । ପ୍ରାୟ ପ୍ରତ୍ୟେକ ଲେଖକ ନିଜନିଜ ଅନୁଭୂତିରୁ ହିଁ ସ୍ମୃତିଚାରଣ କରିଛନ୍ତି । କହିବା ବାହୁଲ୍ୟ ଯେ, ଏତେ ସଦ୍‌ଗୁଣର ଅଧିକାରିଣୀ ହୋଇ ମଧ ନୀହାରିକା ଦେବୀଙ୍କ ମନରେ ଗର୍ବ, ଅହଂକାର କିଛି ନଥିଲା । ସେ ନିଜର କର୍ମମୁଖର ଅଧ୍ୟାପନା ଜୀବନ ସହିତ ଜଣେ ସୁଗୃହିଣୀସୁଲଭ ପାରିବାରିକ ଜୀବନକୁ ଯେପରି ସୁନ୍ଦର ଭାବରେ ସମନ୍ୱିତ କରିପାରିଥିଲେ, ଆଜିର ନାରୀ ପ୍ରଗତି ସ୍ଲୋଗାନସର୍ବସ୍ୱ ସମାଜରେ ତାହା ଦୁର୍ଲଭ । ବୋଧହୁଏ ଏସବୁ ପାଇଁ ଭଗବାନ ଶୀଘ୍ର ଆମ୍ଭମାନଙ୍କ ଗହଣରୁ ତାଙ୍କୁ ନିଜ ପାଖକୁ ନେଇଗଲେ । ସମସ୍ତ ଲେଖା ପାଠ କରିବା ପରେ

ମୋ'ର ଏହା ହିଁ ହୃଦ୍‌ବୋଧ ହୋଇଅଛି । ପ୍ରତ୍ୟେକ ଲେଖକ ନୀହାରିକା ଦେବୀଙ୍କ ସଂସ୍ପର୍ଶରେ ଆସିଛନ୍ତି ଏବଂ ଲେଖାଗୁଡ଼ିକ ସେଥିପାଇଁ ପ୍ରାଣବନ୍ତ ହୋଇଉଠିଛି । ନୀହାରିକା ଦେବୀଙ୍କ ଅକାଳ ବିୟୋଗ ସେମାନଙ୍କ ପ୍ରାଣକୁ ଆନ୍ଦୋଳିତ କରିଛି । ଫଳତଃ ଅନ୍ତରର ଗଭୀରତମ ପ୍ରଦେଶରୁ ସ୍ୱତଃ ବାହାରିଆସିଛି ସେମାନଙ୍କ ନିଜସ୍ୱ ଅନୁଭୂତି ଲେଖନୀ ମାଧ୍ୟମରେ । ଜୀବନ ଓ ଜଗତ୍ ପ୍ରତି ଗଭୀର ଅନ୍ତରଙ୍ଗତା ଏସବୁଥିରେ ପ୍ରକାଶିତ । ସ୍ୱର୍ଗତ ଆତ୍ମା ପ୍ରତି ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ମଧ୍ୟ ଏଗୁଡ଼ିକରେ ନିବେଦିତ । ଭିନ୍ନଭିନ୍ନ ସମୟରେ ପହଞ୍ଚୁଥିଲେ ମଧ୍ୟ ଲେଖାଗୁଡ଼ିକ ପାଠ କରିବାର ସୌଭାଗ୍ୟ ମୁଁ ପାଇଛି ଓ ଯତ୍‌କିଞ୍ଚିତ ଅନୁପ୍ରାଣିତ ହୋଇପାରିଛି । ପରିଶେଷରେ ସେହି ଦିବଂଗତ ଆତ୍ମା ଉଦ୍ଦେଶ୍ୟରେ ପ୍ରଣତି ଜଣାଇ ତାଙ୍କରି ଆଦର୍ଶ ଅମ ସମସ୍ତଙ୍କୁ ମାର୍ଗ ପ୍ରଦର୍ଶନ କରୁ ବୋଲି ଭଗବାନଙ୍କଠାରେ ପ୍ରାର୍ଥନା କରୁଛି ।

ବ୍ରହ୍ମପୁର
ତା୦ ୧।୧୨।୧୯୯୫ରିଖ

ଡକ୍ଟର ପ୍ରମୋଦ କୁମାର ଦାଶ
ସଂପାଦକ

# ଦ୍ୱିତୀୟ ସଂସ୍କରଣ ସମ୍ପର୍କରେ

ସୁଖର ବିଷୟ ଯେ, ଆଜିକାଲି ବ୍ୟକ୍ତିବିଶେଷଙ୍କ ମୃତ୍ୟୁ ପରେ ତାଙ୍କର ସ୍ମୃତିଚାରଣ କରି 'ଏକାଦଶାହ'ରେ ସ୍ମରଣିକା ପ୍ରକାଶିତ ହେବା ଏକ ସାଧାରଣ କଥା ହୋଇଗଲାଣି । ଏହାଦ୍ୱାରା ଜନସାଧାରଣ ତାଙ୍କର ଗୁଣାବଳୀ ସମ୍ପର୍କରେ ଅବଗତ ହୁଅନ୍ତି । ଏଥି ସହିତ ଆମ ଚରିତ ସାହିତ୍ୟ ମଧ ସମୃଦ୍ଧ ହୋଇଥାଏ । ଆଜିକୁ ଦୁଇଦଶନ୍ଧି ତଳେ ଏହି ଧାରା କିନ୍ତୁ ଏତେ ସ୍ୱଚ୍ଛନ୍ଦ ନଥିଲା । ୧୯୯୫ ମସିହାରେ ଆମେ ଅଧାପିକା ନୀହାରିକା ଦାସଙ୍କ ସ୍ମୃତିରେ 'ନୀହାରିକା' ଶୀର୍ଷକ ସ୍ମରଣିକା ପ୍ରକାଶ କରିଥିଲୁ । ଦିନେ ଯେ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେବ- ଏକଥା ସେତେବେଳେ ଆମେ ଚିନ୍ତା ବି କରିନଥିଲୁ । ୨୦୧୩ ମସିହାରେ ପ୍ରାଧାପକ ଡକ୍ଟର ଶୈଳେନ୍ଦ୍ର ନାରାୟଣ ତ୍ରିପାଠୀ 'ନୀହାରିକା'ର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିବା ପାଇଁ ପ୍ରସ୍ତାବ ଦେଇଥିଲେ । ସେ ଏହି ପ୍ରସ୍ତାବ ଦେଇ ଚୁପ୍ ହୋଇ ବସିଯାଇନଥିଲେ; ବରଂ ଦ୍ୱିତୀୟ ସଂସ୍କରଣ ଯଥାଶୀଘ୍ର ପ୍ରକାଶ କରିବାକୁ ଜିଦ୍ ଧରିଥିଲେ । ମସୀ ଚାଳନା କରି ଇଂରାଜୀ ପଦ୍ୟ ସାହିତ୍ୟକୁ ଋଦ୍ଧିମନ୍ତ କରିଥିବା ଡକ୍ଟର ତ୍ରିପାଠୀ ଏବେ ବି.ଜେ.ବି. ସ୍ୱୟଂଶାସିତ କଲେଜର ଇଂରାଜୀ ବିଭାଗର ମୁଖ୍ୟ ଅଛନ୍ତି । 'ନୀହାରିକା'ର ଦ୍ୱିତୀୟ ସଂସ୍କରଣ ପ୍ରକାଶର ସମସ୍ତ ଶ୍ରେୟ ଆମେ ତାଙ୍କୁ ଦେଉଛୁ । କୌଣସି ସ୍ମରଣିକାର ଦ୍ୱିତୀୟ ସଂସ୍କରଣ ଆତ୍ମପ୍ରକାଶ କରିବା ଏକ ବିରଳ ଘଟଣା ନିଶ୍ଚୟ ।

ପ୍ରଥମ ସଂସ୍କରଣରେ ପ୍ରକାଶିତ ଲେଖାଗୁଡ଼ିକ ବ୍ୟତୀତ ଦ୍ୱିତୀୟ ସଂସ୍କରଣରେ ଆଉ ଦୁଇଟି ଲେଖା ଯୋଗ କରିଛୁ । ରାଜ୍ୟ ମହିଳା କମିଶନର ପୂର୍ବତନ ଅଧକ୍ଷା ଶ୍ରୀମତୀ ନମିତା ପଣ୍ଡାଙ୍କର 'ମନେପଡ଼େ' ଶୀର୍ଷକ ଲେଖା ଏଥିରେ ଅନ୍ତର୍ଭୁକ୍ତ । ଅଧାପିକା ସ୍ୱର୍ଗତା ନୀହାରିକା ଦାସଙ୍କ ୫୯ତମ ଜୟନ୍ତୀ ଅବସରରେ ଏହା ୨୦୧୪ ନଭେମ୍ବର ୧୯ରେ 'ମାତୃଭାଷା' ଓ 'ଶ୍ରୁତି'ରେ ପ୍ରକାଶ ପାଇଥିଲା । ଉଭୟର ସମ୍ପାଦକ ଯଥାକ୍ରମେ ଶ୍ରୀମତୀ ସଲୀଳା କର ଓ ଶ୍ରୀ ସର୍ବେଶ୍ୱର ମିଶ୍ରଙ୍କୁ କୃତଜ୍ଞତା ଜଣାଉଛୁ । ତା'ଛଡ଼ା ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲର ପ୍ରାକ୍ତନ ପ୍ରଧାନ ଶିକ୍ଷକ ଡକ୍ଟର ସଂକର୍ଷଣ ମିଶ୍ରଙ୍କର '...ଏବଂ ତା'ପରେ' ଶୀର୍ଷକ ଲେଖା ମଧ ସ୍ଥାନିତ ହୋଇଛି । ଶେଷସ୍ତମ୍ଭ ଭାବେ ପରିଶିଷ୍ଟ

(୩) ରେ ଏହା ପ୍ରକାଶିତ ହୋଇଛି । ସର୍ବାଶେଷରେ ପରିଶିଷ୍ଟ (୪)ରେ ଲେଖକମାନଙ୍କର ପରିଚୟ ପ୍ରଦାନ କରିଛୁ । ସ୍ମରଣିକାର ପ୍ରଥମ ସଂସ୍କରଣରେ ପ୍ରକାଶିତ ହୋଇଥିବା ଅଧ୍ୟାପିକା ଦାସଙ୍କ ରଚିତ 'The Joys and Sorrows of Living in a Joint Family' ଶୀର୍ଷକ ଲେଖାର ଓଡ଼ିଆ ଅନୁବାଦ ଷ୍ଟିୱାର୍ଟ ବିଜ୍ଞାନ କଲେଜର ପଦାର୍ଥ ବିଜ୍ଞାନ ବିଭାଗର ଅଧ୍ୟାପକ ଡକ୍ଟର ଗୌରୀଶଙ୍କର ସାହୁ କରିଛନ୍ତି । ଏହା 'ସର୍ବୋଦୟ'ର ୨୦୧୪ ଡିସେମ୍ବର ୧-୧୫ ସଂଖ୍ୟାରେ ପ୍ରକାଶ ପାଇଛି । ପତ୍ରିକାର ସମ୍ପାଦକ ଡକ୍ଟର ବିଶ୍ୱଜିତ୍ ରାୟଙ୍କୁ କୃତଜ୍ଞତା ଜଣାଉଛୁ । ସ୍ମରଣିକାରେ ମୂଳଲେଖା ସ୍ଥାନିତ ହୋଇଥିବାରୁ ଅନୁବାଦକୁ ଏଥିରେ ସ୍ଥାନ ଦେବାକୁ ଉଚିତ ମନେକରି ନାହୁଁ ।

'ନୀହାରିକା'ର ପ୍ରଥମ ସଂସ୍କରଣର ଲେଖକମାନଙ୍କ ମଧ୍ୟରୁ ଏଥିଭିତରେ ପ୍ରାଧ୍ୟାପକ ଡକ୍ଟର ଦୟାନିଧି ପାଢ଼ୀ, କବି ବଂଶୀଧର ମିଶ୍ର, ପ୍ରଫେସର ଡକ୍ଟର ଅମୂଲ୍ୟକୃଷ୍ଣ ମିଶ୍ର, ପ୍ରାଧ୍ୟାପକ ଡକ୍ଟର ବିଜୟ ସ୍ୱାଇଁ, ରହସ୍ୟ ଔପନ୍ୟାସିକ ଯୋଗେନ୍ଦ୍ର କୁମାର ମହାନ୍ତି ଓ ଅଧ୍ୟକ୍ଷ ଶ୍ରୀନିବାସ ରଥ ପରଲୋକ ଗମନ କରିସାରିଲେଣି । ନ୍ୟାସୀମାନଙ୍କ ମଧ୍ୟରୁ ଜଷ୍ଟିସ୍ ପ୍ରଫୁଲ୍ଲ କିଶୋର ମହାନ୍ତି, ପ୍ରଫେସର ଡକ୍ଟର ଅମୂଲ୍ୟକୃଷ୍ଣ ମିଶ୍ର ଓ ଶ୍ରୀମତୀ କିଶୋରୀମଣି ସିଂହ ମଧ୍ୟ ଇହଲୀଳା ସାଙ୍ଗ କରିସାରିଲେଣି । ସେମାନଙ୍କ ସ୍ଥାନରେ ଆମେ ନୂତନ ନ୍ୟାସୀମାନଙ୍କୁ ଗ୍ରହଣ କରିଅଛୁ । ପ୍ରଚ୍ଛଦପଟ ଶିଳ୍ପୀ ଅସିତ ମୁଖାର୍ଜୀ ବି ଆଉ ଇହଜଗତରେ ନାହାଁନ୍ତି । ଦ୍ୱିତୀୟ ସଂସ୍କରଣର ପ୍ରଚ୍ଛଦପଟରେ ସାମାନ୍ୟ ପରିବର୍ତ୍ତନ କରାଯାଇଛି । ପରଲୋକଗତ ଏ ସମସ୍ତଙ୍କ ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ । ଏଠାରେ ଉଲ୍ଲେଖ କରିବାକୁ ଚାହୁଁଛୁ ଯେ, କଟକ ସିଟି କଲେଜର ନାମ ୨୦୦୦ ମସିହାରେ ପରିବର୍ତ୍ତନ କରାଯାଇ ନେତାଜୀ ସୁଭାଷ ମେମୋରିଆଲ (ଏନ୍.ଏସ୍.ଏମ୍.) ସିଟି କଲେଜ ରଖାଯାଇଛି ।

ଦ୍ୱିତୀୟ ସଂସ୍କରଣର ସମ୍ପାଦନାରେ ବିଶିଷ୍ଟ ସମାଜସେବୀ ଡକ୍ଟର ସଚ୍ଚିଦାନନ୍ଦ ଓ ଅଧ୍ୟାପକ ତୁଷାରକାନ୍ତ ପଟ୍ଟନାୟକ ବିଶେଷ ସହାୟତା ପ୍ରଦାନ କରିଛନ୍ତି। ଏହାର ପ୍ରକାଶନରେ ଶ୍ରଦ୍ଧେୟ ସୁଶାନ୍ତ କୁମାର ଦାସ ଓ ଶ୍ରଦ୍ଧେୟା ଝୁଲନ୍ ବରୁଆ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି। ଏମାନଙ୍କୁ ଅଶେଷ ଧନ୍ୟବାଦ ଜଣାଉଛୁ।

ଆଡ୍‌ଭୋକେଟ୍ ଦେବଦତ୍ତ ମହାନ୍ତି
ଅଧ୍ୟାପିକା ନୀହାରିକା ଦାସ
ସ୍ମୃତି ନ୍ୟାସ ତରଫରୁ

କଟକ
ତା ୦୧।୧୨।୨୦୧୬ରିଖ

ଶ୍ରୀ ଯୁଧିଷ୍ଠିର ଦାସ
ବିଧାୟକ

ସ୍ନେହର ଦେବଦତ୍ତ,

ତୁମର ଭାଉଜ ୰ ନୀହାରିକାଙ୍କ ଅକାଳ ମୃତ୍ୟୁ ତୁମ ପାଇଁ ଏବଂ ତୁମ ପରିବାର ପାଇଁ ଯେତିକି ଦୁଃଖଦାୟକ ମୋ ପାଇଁ ସେତିକି ମର୍ମନ୍ତୁଦ । ତୁମ ଗାଆଁ ସହିତ ଏବଂ ତୁମ ପରିବାର ସହିତ ମୋର ଯେଉଁ ଭାବାତ୍ମକ ସଂପର୍କ ସେ କଥା ତୁମେ ଜାଣିଛ । ନୀହାରିକାଙ୍କ ମୃତ୍ୟୁର ପ୍ରଥମ ବାର୍ଷିକୀ ପାଳନ କରିବା ପାଇଁ ତୁମେମାନେ ଉଦ୍ୟମ କରୁଛ ଜାଣି ମୁଁ ଅତ୍ୟନ୍ତ ଖୁସି । ନିଜର ମଣିଷ ଯେତେବେଳେ ସମସ୍ତଙ୍କୁ ଛାଡ଼ି ଚାଲିଯାଆନ୍ତି ତାଙ୍କର ସ୍ମୃତିଚାରଣ କରିବା ଆମର କର୍ତ୍ତବ୍ୟ ।

ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ଏକ ସ୍ମରଣିକା ପ୍ରକାଶ ପାଉଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ । ସେହି ସ୍ମରଣିକାରେ ତାଙ୍କର ସୁଗୁଣାବଳୀ ଏବଂ ଆଦର୍ଶ ବ୍ୟବହାରକୁ ସ୍ଥାନିତ କଲେ ତାହା ତାଙ୍କ ପୀଢ଼ିର ଏବଂ ତାଙ୍କ ଉତ୍ତର ପୀଢ଼ିର ଝିଅମାନଙ୍କ ଉପରେ ଭଲ ପ୍ରଭାବ ପକାଇବ ।

୰ ନୀହାରିକାଙ୍କ ଆତ୍ମା ପ୍ରତି ମୁଁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

॥ ଇତି ॥

ତୁମର ଶୁଭାକାଂକ୍ଷୀ
ଯୁଧିଷ୍ଠିର ଦାସ
୨।୧୨।୧୯୯୫

ଶ୍ରୀ ଦେବଦତ୍ତ ମହାନ୍ତି
ଆଡ଼ଭୋକେଟ
ଓଡ଼ିଶା ହାଇକୋର୍ଟ
କଟକ

**ଶ୍ରୀ ସମୀର ଦେ**
**ବିଧାୟକ**

ମୋର ଅଗ୍ରଜୋପମ ଶ୍ରୀ ନାରାୟଣ ମହାନ୍ତି କେବଳ ଜଣେ ପ୍ରବୀଣ ଅଧ୍ୟାପକ ନୁହନ୍ତି, ସେ ଜଣେ କର୍ମପ୍ରବଣ ସମାଜସେବୀ ଭାବରେ ରାଜ୍ୟର ବିଭିନ୍ନ ସ୍ତରରେ କାର୍ଯ୍ୟରତ । ତାଙ୍କର ସେହି ସମାଜସେବା ଓ ଅଧ୍ୟାପନା କାର୍ଯ୍ୟକୁ ସାବଲୀଳ ତଥା ସୁସଂହତ କରିବାରେ ତାଙ୍କର ସୁଯୋଗ୍ୟା ପତ୍ନୀ ଅଧ୍ୟାପିକା ଶ୍ରୀମତୀ ନୀହାରିକା ଦାସଙ୍କର ଅବଦାନ ଥିଲା ଅନନ୍ୟ । ସ୍ୱର୍ଗତା ଦାସ ତାଙ୍କ ବ୍ୟବହାର ଓ ଜୀବନାଦର୍ଶଦ୍ୱାରା ତାଙ୍କର ପରିଚିତ ପ୍ରତ୍ୟେକଙ୍କୁ ମୁଗ୍ଧ କରିପାରିଥିଲେ । ତାଙ୍କର ଅକାଳ ବିୟୋଗ ଆମ ସମସ୍ତଙ୍କ ପାଇଁ ମର୍ମାନ୍ତିକ ଦୁଃଖଦାୟକ । ଆଜି ବର୍ଷେ ବିତିଯାଇଥିଲେ ମଧ୍ୟ ତାଙ୍କ ଅମଳିନ ସ୍ମୃତି ଆମମାନଙ୍କର ମାନସପଟରେ ଭାସିଉଠୁଛି । ବାର୍ଷିକ ଶ୍ରାଦ୍ଧ ଅବସରରେ ତାଙ୍କର ଅମର ଆତ୍ମା ପ୍ରତି ମୁଁ ମୋର ଗଭୀର ଶ୍ରଦ୍ଧା ଓ ସମ୍ମାନ ଜଣାଉଛି ଏବଂ ତାଙ୍କ ପରିବାରବର୍ଗଙ୍କ ପ୍ରତି ହୃଦୟର ସମବେଦନା ଜ୍ଞାପନ କରୁଛି ।

ସମୀର ଦେ
୨/୧୨/୯୫

# ସୂଚୀପତ୍ର

# ମୋ ସ୍ମୃତିରେ ଅଲିଭା ରେଖା– ନୀହାରିକା

*ଡକ୍ଟର ଧନେଶ୍ୱର ମହାପାତ୍ର*

ନୀହାରିକା । ସେ ଝିଅଟି, ତା'ର ହସହସ ନମ୍ରତାମଣ୍ଡିତ ମୁହଁଟି ଆଉ ଦେଖିବାକୁ ମିଳିବନାହିଁ ।

ମୁଁ କଟକ ସିଟି କଲେଜରେ ଅଧ୍ୟକ୍ଷ ଥିଲାବେଳେ ନୀହାରିକା ଥିଲା ଅଧ୍ୟାପିକା, ଇତିହାସ ଅଧ୍ୟାପିକା । ନମ୍ରତାର ମୂର୍ତ୍ତିଟିଏ । କେବେ କାହାକୁ ଟାଣ କରି ପଦେ କହେନାହିଁ କି କହିପାରେନାହିଁ । ପିଲାଟିଠାରୁ ବଡ଼ଟି ପର୍ଯ୍ୟନ୍ତ ଯାହା ସାଙ୍ଗରେ କଥା ହୁଏ, ଧୀର ନମ୍ର ଭାବରେ । କେହି କହିପାରିବନାହିଁ ଯେ କାହାକୁ ସେ ଟାଣ କରି ପଦେ କହିଥିଲା ।

ଡିସେମ୍ବର ମାସର ପ୍ରଥମ ସପ୍ତାହ । ଆକାଶ ମେଘାଚ୍ଛନ୍ନ ଥାଏ । ବିନ୍ଦୁବିନ୍ଦୁ ବର୍ଷା ଝରୁଥାଏ । ଖୁବ୍ ଶୀତ ପଡ଼ିଥାଏ । ସକାଳେ ସାତଟା ବାଜିବାକୁ ପାଞ୍ଚମିନିଟ୍ ଅଛି; ସାଇକେଲରେ ଯାଇ ମୁଁ କଲେଜରେ ପହଞ୍ଚିଗଲି । ସେ ସମୟରେ ସକାଳ ସାତଟାରୁ ବାରଟା ପର୍ଯ୍ୟନ୍ତ ଆର୍ଟସ୍ କ୍ଲାସ୍ ହେଉଥାଏ ଏବଂ ଏଗାରଟାରୁ ଚାରିଟା ପର୍ଯ୍ୟନ୍ତ ସାଇନ୍‌ସ ଓ କମର୍ସ କ୍ଲାସ୍ ହେଉଥାଏ । ଘର ଅଭାବରୁ ଏପରି ବ୍ୟବସ୍ଥା କରାଯାଇଥାଏ । ସକାଳ ସାତଟାରୁ ଅପରାହ୍ନ ଚାରିଟା ପର୍ଯ୍ୟନ୍ତ ଠିକ୍ ଭାବରେ ସବୁ କ୍ଲାସ୍ ହେଉଛି କି ନାହିଁ, ଅଧ୍ୟାପକ / ଅଧ୍ୟାପିକାମାନେ ନିୟମିତ ଭାବରେ ଆସି କ୍ଲାସ୍ ନେଉଛନ୍ତି କି ନାହିଁ ଏବଂ ଠିକ୍ ପ୍ରସ୍ତୁତ ହୋଇ ପଢ଼ାଉଛନ୍ତି କି ନାହିଁ, ତାହା ଦେଖିବା ପାଇଁ ମୁଁ ମୋ ଘରୁ (କଲ୍ୟାଣୀ ନଗରରୁ) କଲେଜକୁ ଦିନରେ ଚାରିଥର ଯିବାଆସିବା କରୁଥିଲି । ସେ ସମୟରେ ଅଧ୍ୟାପକ / ଅଧ୍ୟାପିକାମାନଙ୍କର ମାସିକ ବେତନ ଥିଲା ଚାରିଶହ ଟଙ୍କା ମାତ୍ର । ଏହି ସାମାନ୍ୟ ବେତନରେ ଗୋଟିଏ ପେଟ ମଧ୍ୟ ପୋଷିବା କଷ୍ଟକର ଥିଲା । ଅଧ୍ୟକ୍ଷ ଭାବରେ ମୋର ପ୍ରାପ୍ୟ ଥିଲା ରିକ୍‌ସା ଖର୍ଚ୍ଚ ମାତ୍ର । କିନ୍ତୁ ଆମେ ସମସ୍ତେ, ପିଅନଠାରୁ ପ୍ରିନ୍‌ସିପାଲ ପର୍ଯ୍ୟନ୍ତ, ଲାଗିପଡ଼ିଥିଲୁଁ କିଛି ନଥିବା କଲେଜଟିକୁ ଗଢ଼ିବା ପାଇଁ ।

ସାତଟା ବାଜିବାର ପାଞ୍ଚମିନିଟ୍ ମାତ୍ର ପୂର୍ବରୁ ମୁଁ କଲେଜରେ ପହଞ୍ଚିଗଲି । ଆଗେ ଦେଖିବାକୁ ପାଇଲି ନୀହାରିକା ଅଫିସ୍ ବାରଣ୍ଡାରେ ଠିଆ ହୋଇଛି ।

ଦେହରେ ଖଣ୍ଡିଏ ଛୋଟ ଶୀତବସ୍ତ୍ର । ପିଲା ପନ୍ଦର କୋଡ଼ିଏ ଜଣ ଉତ୍ତର ପଟ ଶ୍ରେଣୀଗୃହରେ ବସି କଥାବାର୍ତ୍ତା ହେଉଛନ୍ତି । କହିଲି, "ନୀହାରିକା, ଫାଷ୍ଟ ପିରିଅଡ଼ୁ ଅଛି କି ?"

ସେ ହସହସ ମୁଖରେ କହିଲା, "ହଁ, ସାର୍ ।"

"ଏତେ ସକାଳୁ ଏ ପାଗରେ କିପରି ଆସିପାରିଲ ? ପୁଅ ଦୁହେଁ ଭଲ ଅଛନ୍ତି ତ ?"

"ନା ସାର୍ । ବଡ଼ପୁଅଟିକୁ ଥଣ୍ଡା ଜର । ଗଲେ ଔଷଧ ଦେବି ।"

ସକାଳେ ଏତେ ଥଣ୍ଡା ପାଗରେ, ପୁଅଟିର ଦେହ ଭଲ ନଥିଲେ ମଧ୍ୟ, ସାମାନ୍ୟ ବେତନ ପାଉଥିବା ଅଧ୍ୟାପିକାଟି ଏକନିଷ୍ଠଭାବେ ତା'ର କର୍ତ୍ତବ୍ୟ କରିବା ପାଇଁ ଠିକ୍ ସମୟରେ ଆସି ପହଞ୍ଚିଛି ! ଏହା ଭାବି ମୋ'ର ମନ ସ୍ନେହସିକ୍ତ ହୋଇଉଠିଲା । କହିଲି, "ନୀହାରିକା, ତୁମେ ଯାଅ । ତୁମ କ୍ଳାସ୍ ମୁଁ ଚଳାଇନେଉଛି ।"

"ନା ସାର୍ । ମୁଁ ଆସିଛି ତ କ୍ଳାସ୍ ସାରି ଯିବି ।"

ମୁଁ ସ୍ନେହରେ, ବିଷାଦରେ କହିଲି, "ଆଚ୍ଛା ହେଉ ।" ଏଭଳି ଥିଲା ନୀହାରିକାର କର୍ତ୍ତବ୍ୟନିଷ୍ଠା ।

ଦିନେ ନୀହାରିକା କ୍ଳାସ୍ ନେଉଥିଲା; +୨ ଶ୍ରେଣୀ କ୍ଳାସ୍ । ମୁଁ କ୍ଳାସ୍‌ରେ ପିଲାମାନଙ୍କର ଆଚରଣ ଲକ୍ଷ୍ୟ କରିବା ପାଇଁ ଗୋଟିଏ ପଛସିଟ୍‌ରେ ଯାଇ ବସିଲି । ଦେଖିଲି, ଗୋଟିଏ ପିଲା ଦୁଷ୍ଟାମି କରୁଛି । ସେହି ପିଲା ପାଖକୁ ଚାଲିଯାଇ, କାନ ଧରି ତାକୁ ଟାଣିନେଇଗଲି କ୍ଳାସ୍‌ରୁ ବାହାର କରିଦେବା ଉଦ୍ଦେଶ୍ୟରେ । ଜୋର୍ ଗଳାରେ ତାକୁ ତିରସ୍କାର ମଧ୍ୟ କରୁଥିଲି । କିନ୍ତୁ ନୀହାରିକା ମୋ ପାଖକୁ ଆସି କହିଲା, "ସାର୍, ତାକୁ ଏଥର ଛାଡ଼ିଦିଅନ୍ତୁ । ଆଉ ସେ ଦୁଷ୍ଟାମି କରିବନାହିଁ ।" ମୁଁ ଅବାକ୍ ହୋଇଗଲି । ପିଲାଟି ବିରୁଦ୍ଧରେ ସେ ପଦେ କିଛି କହିଲାନାହିଁ । କେବଳ ବଡ଼ ଭଉଣୀଟି ପରି ତାକୁ ସ୍ନେହର ସହିତ ଚାହିଁଲା । ତାର ଭଗିନୀ–ମମତା, ଯାହା ଥିଲା ମାତୃତ୍ୱ–ମମତାର ରୂପାନ୍ତର ମାତ୍ର, ସଂପୂର୍ଣ୍ଣ କ୍ଳାସ୍‌କୁ ନିସ୍ତବ୍ଧ କରିଦେଲା ।

ମୁଁ ଆଠବର୍ଷ କାଳ ଅଧ୍ୟକ୍ଷ ରହିଲି । ନୀହାରିକା ଥରଟିଏ ମଧ୍ୟ କୌଣସି ଅଭିଯୋଗ ମୋ ନିକଟରେ ବ୍ୟକ୍ତ କରିନଥିଲା । ସେ ଥିଲା ସହିଷ୍ଣୁତାର ପ୍ରତିମୂର୍ତ୍ତି, ନମ୍ରତାର ପ୍ରତିମୂର୍ତ୍ତି ଏବଂ କର୍ତ୍ତବ୍ୟନିଷ୍ଠାର ପ୍ରତିମୂର୍ତ୍ତି ।

ମୁଁ କଲେଜ ଛାଡ଼ିବା ପରେ ଥରେ ନୀହାରିକା ସହିତ ମୋର ଦେଖା ହୋଇଥିଲା । ବଡ଼ ବିଷଣ୍ଣ, ଅବସନ୍ନ ଦିଶୁଥିଲା ସେ । ପଚାରି ବୁଝିଲି, ତାର ଶାରୀରିକ ଅସୁସ୍ଥତା ବଢ଼ିଯାଇଥିଲା । ସେଥିରେ ପୁଣି ତାକୁ କଲେଜରୁ ବଦଳି କରିଦେବାର ଚକ୍ରାନ୍ତ ଚାଲିଥିଲା । କଲେଜରେ ସେ ଯେଉଁ ପୋଷ୍ଟରେ ଥିଲା, ସେହି ପୋଷ୍ଟରେ ସରକାରୀ ଅନୁଦାନ ମିଳୁଥିବାରୁ ସେଥିରୁ ତାକୁ ବଦଳି କରାଇ ଅନ୍ୟ ଏକ ଅନୁଦାନପ୍ରାପ୍ତ କଲେଜରୁ ଜଣକୁ ଆଣିବା ପାଇଁ ଚକ୍ରାନ୍ତ କରାଯାଉଥିଲା । ଏସବୁ କଥା ନୀହାରିକାର ମୁଖରୁ ଶୁଣି ଏବଂ ତା'ର ଦୟନୀୟ ଅବସ୍ଥା ଦେଖି ମୋ'ର ମନ ଆକୁଳ ହୋଇଉଠିଲା । ହାୟ ! ଏଇ ଝିଅଟି କଲେଜ ପାଇଁ କି ତ୍ୟାଗ ନକରିଛି ? ଚାରିଶହ ଟଙ୍କା ମାତ୍ର ଦରମାରେ କେତେ ଶୀତ, ବର୍ଷା, ଖରାରେ କଲେଜକୁ ଆସି ପିଲାଙ୍କୁ ପାଠ ପଢ଼ାଇଛି ଏଇ ଝିଅ ! ସରକାରୀ ଅନୁଦାନ ମିଳିଲା ପରେ ଏହାକୁ କଲେଜରେ ରହିବାକୁ ଦେଉନାହାନ୍ତି ! କଲେଜ ପାଇଁ ଯେଉଁମାନେ ପଇସାଟିର ବା ଘଣ୍ଟାକର ତ୍ୟାଗ ସ୍ୱୀକାର କରିନାହାନ୍ତି, ସେମାନେ ଧରାଧରି କରି ଚାଲିଆସୁଛନ୍ତି । ତ୍ୟାଗ କରିଥିବା ଲୋକଙ୍କୁ ଅନ୍ତତଃ ପୂର୍ଣ୍ଣ ଅନୁଦାନ ପାଇବା ପରେ ପାଞ୍ଚଟି ବର୍ଷ ମାତ୍ର ରହିବାକୁ ଦିଆଯାଉନାହିଁ । ବେଦନାଭରା କଣ୍ଠରେ କହିଲି, "ନୀହାରିକା, ଏ ତ ଚତୁର ସ୍ୱାର୍ଥପରମାନଙ୍କର ଯୁଗ । ତଥାପି ତୁମେ ଚେଷ୍ଟା କର ବଦଳି ନହେବା ପାଇଁ ।"

କଟକ ସିଟି କଲେଜରେ ଦୀର୍ଘ ଆଠବର୍ଷର ଅଧ୍ୟକ୍ଷ ଅନୁଭୂତି ଭିତରେ ମୁଁ ନୀହାରିକାର ନମ୍ରତା, କର୍ତ୍ତବ୍ୟନିଷ୍ଠା ଓ ଛାତ୍ରବତ୍ସଳତାରେ ଲେଶମାତ୍ର ବ୍ୟତିକ୍ରମ ଦେଖିନାହିଁ । ଏହି ତିନୋଟି ଗୁଣକୁ ସେ ଯେପରି ଜୀବନର ପାଥେୟ କରି ଚାଲୁଥିଲା । କଟକ ସିଟି କଲେଜର ପ୍ରତ୍ୟେକ ଧୂଳିକଣାରେ ରହିଛି ନୀହାରିକାର ତ୍ୟାଗ । ମୋ'ର ସ୍ମୃତିପଟରୁ ବୟସାଧିକ୍ୟ କ୍ରମେ ସବୁକିଛି ଲିଭିଯିବ, କିନ୍ତୁ ନୀହାରିକା ଝିଅଟି ଆଦୌ ଲିଭିବନାହିଁ ।

*କଲ୍ୟାଣୀ ନଗର*
*କଟକ–୭୫୩୦୧୩*



# ଅଭୁଲା ସ୍ମୃତି

*ଡକ୍ଟର ନବକିଶୋର ଷଡ଼ଙ୍ଗୀ*

ନିର୍ମମ ସେ ଦିନ । ନିୟତିର ନିଷ୍ଠୁର ବିଧାନ । ମନ ଓ ଚକ୍ଷୁ ଯାହା ମାନିବାକୁ ଘୋର ଅସହଯୋଗ କଲେ, ସେହିଭଳି ଏକ ଦାରୁଣ ବିପର୍ଯ୍ୟୟ ୧୯୯୪ ମସିହା ଡିସେମ୍ବର ମାସ ୧୪ ତାରିଖରେ ସଂଘଟିତ ହେଲା । ଚାହୁଁଚାହୁଁ ଏ କଅଣ ହେଲା ? ସେହି ପ୍ରେରଣାପ୍ରଦ ବ୍ୟକ୍ତିତ୍ୱ ଅଧ୍ୟାପିକା ନୀହାରିକା ଦାସଙ୍କ ଶାନ୍ତ, ସରଳ, ସୁନ୍ଦର ମୁଖାରବିନ୍ଦ ସେହି ମୁହୂର୍ତ୍ତରୁ ଏକ ପବିତ୍ର ସ୍ମୃତି ହୋଇ ରହିଲା । ଆମେସବୁ ବସିଛୁ, ଆମରି ଆଖି ଆଗରେ ସେ ଚାଲିଗଲେ । 'ଟୀକା ଗୋବିନ୍ଦଚନ୍ଦ୍ର'ର ଗୀତ ପଦକ ମନେପଡ଼ିଲା–

"ସେହି କାଳଯମ ବଡ଼ ଦାରୁଣରେ
ନଜାଣଇ ସୁଖ ଦୁଃଖ
ବାଛିନେବ କଞ୍ଚା ରଖିବ ପାଚିଲା
ଦେବଟି ଦାରୁଣ ଦୁଃଖ ।।"

ସେ ଚାଲିଗଲେ । ହଁ ଚାଲିଯିବା ତ ଧ୍ରୁବସତ୍ୟ । ସମସ୍ତେ ବି ଯିବେ । କିନ୍ତୁ ପରିଣତ ବୟସରେ ଗଲେ କାଳମୃତ୍ୟୁ ହେଲା ବୋଲି ଦୁଃଖ ଆସିବ ସିନା, କ୍ଷୋଭ ଆସିବନାହିଁ । ମାତ୍ର ନୀହାରିକା ମାଡ଼ାମ୍‌ଙ୍କ ପାଇଁ ଖାଲି ଦୁଃଖ ଲାଗୁନି, ବିଧିର ବିଧାନ ଉପରେ କ୍ଷୋଭ ଜାତ ହେଉଛି । କାରଣ ଏହା ଅକାଳ ମୃତ୍ୟୁ । କବିବରଙ୍କ ଭାଷାରେ–

"ବଡ଼ କ୍ରୂର କାଳ ବଡ଼ ଅବିଶ୍ୱାସୀ
ହାବୋଡ଼ି ଯିବ ସେ ଆଚମ୍ବିତେ ଆସି ।"

କିନ୍ତୁ କାହିଁକି ଏ ଅନ୍ୟାୟ ବିଚାର ? କ'ଣ କରିଥିଲେ ସେ କାହାର ? ଏହି ଘଟଣାଟି ଏବେ ବି ବିଶ୍ୱାସର ବାହାରେ ଅଛି । ଯାହାଙ୍କୁ ଭଗବାନ୍ ଭଲ ପାଆନ୍ତି, ତାଙ୍କୁ ଆଗରୁ ନେଇଯାଆନ୍ତି – ଏଇଥିରେ ହିଁ ଟିକିଏ ସାନ୍ତ୍ୱନା ମିଳୁଛି । ନଚେତ୍ ମିଳିବ କେଉଁଠାରୁ ?

ମିଷ୍ଟଭାଷା, ସହାସ୍ୟ ବଦନ, ସରଳତା, କର୍ତ୍ତବ୍ୟନିଷ୍ଠା, ପ୍ରଗାଢ଼ କାର୍ଯ୍ୟନିପୁଣତା – ଏସବୁ ସାଧାରଣତଃ ଏକାଦିକ୍ରମେ ଜଣେ ବ୍ୟକ୍ତିର ଭୂଷଣ ହୋଇନଥାଏ । ତନ୍ମଧ୍ୟରୁ ଗୋଟିଏ ବା ଦୁଇଟି ଗୁଣର ଅଧିକାରୀ ହେବା ବିରଳ ନୁହେଁ । କିନ୍ତୁ ଜଣେ ବ୍ୟକ୍ତିର ଅଳଙ୍କାର ଯେ ଏତେ ପ୍ରକାର ଗୁଣ ହେବ, ତାହା କ୍ୱଚିତ୍ ଦେଖାଯାଏ । "କୋଟିକରେ ଗୋଟିଏ" କହିଲେ ଅତ୍ୟୁକ୍ତି ହେବନାହିଁ । ସେପରି ଜଣେ ଭଦ୍ରମହିଳା ଥିଲେ ଅଧ୍ୟାପିକା ନୀହାରିକା ଦାସ ।

ତାଙ୍କର କେହି ଶତ୍ରୁ ଥିଲେ ବୋଲି ଅନ୍ତତଃ ମୁଁ ଜାଣେନା । ସାଧାରଣତଃ ଚାକିରି କ୍ଷେତ୍ରରେ ପରସ୍ପର ପ୍ରତି ଈର୍ଷା, ଦ୍ୱେଷ ପରିଲକ୍ଷିତ ହୁଏ । କିନ୍ତୁ ତାଙ୍କର ସୁକୋମଳ ବ୍ୟବହାର ଓ କାର୍ଯ୍ୟଦକ୍ଷତା ସମସ୍ତଙ୍କ ହୃଦୟକୁ ଜୟ କରୁଥିଲା । ସେ ଅଜାତଶତ୍ରୁ ହେବାର କାରଣ ବୋଧହୁଏ ସେଇଆ । ମୋତେ ସେ ସୌଜନ୍ୟ ଓ ସୌହାର୍ଦ୍ଦ୍ୟର ମୂର୍ତ୍ତିମତୀ ବିଗ୍ରହ ବୋଲି ବୋଧ ହେଉଥିଲେ । ବିରକ୍ତି ବା ପରାଙ୍ମୁଖତା ମୁଁ କେବେହେଲେ ତାଙ୍କଠାରେ ଲକ୍ଷ୍ୟ କରିନାହିଁ ।

ତାଙ୍କ ସଙ୍ଗେ ମୋର ସମ୍ବନ୍ଧ ଅତି ନିବିଡ଼ । ବନ୍ଧୁମାନଙ୍କୁ ସ୍ନେହ ଓ ସମ୍ମାନ ଦେଇ କିପରି ଆପଣାର କରିହୁଏ, ତାହା ତାଙ୍କୁ ଭଲ ଭାବେ ଜଣାଥିଲା । ତାଙ୍କ କଥା ଦି'ପଦ ଓ ମୁହଁର ଭାବଭଙ୍ଗୀରେ ଯେଉଁ ଆନ୍ତରିକତା ଫୁଟିଉଠେ, ତାହା ଲକ୍ଷ୍ୟ କରିବାର କଥା । ମୁହଁଟି ସଦା ଜ୍ୟୋତିର୍ମୟ, ଅଥଚ ଭାବଗମ୍ଭୀର । ମୁଁ ଦୁଇବର୍ଷ ଧରି ଲକ୍ଷ୍ୟ କରିଛି, ସେ ଯେପରି ଅନ୍ତର୍ଜଗତରେ ବାସ କରୁଥିଲେ । ସବୁ କାମ କରୁଥିଲେ, ମାତ୍ର କାହିଁରେ ନଥିଲେ । ତାଙ୍କର ଏହି ଢଙ୍ଗ ଲକ୍ଷ୍ୟ କଲାବେଳେ ଗୀତାର ସ୍ଥିତପ୍ରଜ୍ଞ ଅବସ୍ଥା ମୁଁ ଅନୁଭବ କରିଛି ।

ତାଙ୍କର ବ୍ୟକ୍ତିତ୍ୱ ଥିଲା ଏକ ଭିନ୍ନ ଧରଣର । ତାଙ୍କର ଉଚ୍ଚନୀଚ ମନୋଭାବ ନଥିଲା । ଜଣେ ଅପରକୁ ନୀଚ ପ୍ରତିପାଦିତ କଲେ ଯେ ନିଜେ ଉଚ୍ଚ ବୋଲି ପ୍ରମାଣିତ ହୋଇପାରେ – ଏ ମନୋବୃତ୍ତି ତାଙ୍କର ଆଦୌ ନଥିଲା । ଏକ ମହନୀୟ ଚିନ୍ତାଧାରାଦ୍ୱାରା ତାଙ୍କର ସମସ୍ତ କାର୍ଯ୍ୟକ୍ରମ ପରିଚାଳିତ ହେଉଥିଲା । ମାନବିକତାର ପରିପୂର୍ଣ୍ଣ କଳା ନେଇ ସେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ସବୁ କଥାରେ ଶିଶୁପରି ସରଳ ଓ ବୃଦ୍ଧପରି ଜ୍ଞାନଭାରରେ ଗମ୍ଭୀର । ସେ ଥିଲେ ପ୍ରକୃତରେ ଜଣେ ଭଲମଣିଷ, ଯାହାଙ୍କର ସବୁ କଥା ଅନୁକରଣୀୟ । ଏପରି ମଣିଷକୁ କ'ଣ ମରଣ କେବେହେଲେ ସ୍ପର୍ଶ କରିପାରେ ? ସେ ଏବେ ବି ବଞ୍ଚିଛନ୍ତି

ଆମରିମାନଙ୍କ ଭିତରେ; ତାଙ୍କର ଆଦର୍ଶକୁ ଭଲ ପାଉଥିବା ହଜାର ହଜାର ମଣିଷଙ୍କ ଭିତରେ । ମରି ବି ସେ ମରଣଜୟୀ ।

ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ କଟକ ସିଟି କଲେଜ ସହ ସଂପୃକ୍ତ ପ୍ରତ୍ୟେକ ବ୍ୟକ୍ତିଙ୍କର ସେ ଆପଣାର ଥିଲେ । ଏହି ଅନୁଷ୍ଠାନର ପ୍ରତ୍ୟେକ କାର୍ଯ୍ୟରେ ତାଙ୍କର ସ୍ୱାକ୍ଷର ରହିଛି । ଆତ୍ମବଡ଼ିମା ଓ ଅହଂକାର ବିବର୍ଜିତ ଏହି ଭଦ୍ରମହିଳାଙ୍କ ଚୁମ୍ବକୀୟ ବ୍ୟକ୍ତିତ୍ୱର ସ୍ପର୍ଶ ସମସ୍ତଙ୍କୁ ବିମୋହିତ କରିଛି ।

ସୂର୍ଯ୍ୟାସ୍ତ ପରେ ତାରକା ଦୃଶ୍ୟ ହେବା ଭଳି ନୀହାରିକା ମାଡ଼ାମ୍ ଅସ୍ତମିତ ହେବା ପରଠୁଁ କେତେ ଯେ ସ୍ମୃତି ମାନସପଟରେ ତଥା ଅଶ୍ରୁଳ ଆଖି ଆଗରେ ଉଦ୍‌ଭାସିତ ହେଉଛି, ତାହାର କଳନାନାହିଁ । ତାଙ୍କର ହସହସ ମୁହଁ, ସେ ଦିନର ମଧୁର ସ୍ନେହପୂର୍ଣ୍ଣ ବ୍ୟବହାର ଓ ଅତୀତ ସ୍ମୃତି ପ୍ରତିମୁହୂର୍ତ୍ତରେ ମୋର ମନେପଡ଼ିଯାଉଛି । ମୋ ପାଇଁ ତାଙ୍କ ସ୍ମୃତି ବଡ଼ କରୁଣ, ଗଭୀର ଓ ଗହନ ।

ମୋ ମାନସପଟରେ ଜୀବନର ବହୁସ୍ମୃତି ଅଙ୍କିତ ରହିଛି । କାଳକ୍ରମେ ହୁଏତ ସେ ସମସ୍ତ ଲିଭିଯିବ, ମାତ୍ର ନୀହାରିକା ମାଡ଼ାମ୍‌ଙ୍କ ପ୍ରଶାନ୍ତ, ପ୍ରସନ୍ନ, ହସହସ ସୌମ୍ୟମୁଖଟି କଦାପି ଲିଭିବନାହିଁ ।

ସଂସାରରେ କି ମୃତ, କି ଜୀବିତ କାହାରି ପାଇଁ ଶୋଚନା ନକରିବାକୁ ଭଗବାନ୍ ବାସୁଦେବ ଉପଦେଶ ଦେଇଛନ୍ତି । କିନ୍ତୁ ନୀହାରିକା ମାଡ଼ାମ୍‌ଙ୍କ ଆକସ୍ମିକ ତିରୋଧାନ ପାଇଁ ମୁଁ ଶୋଚନା ନକରି ରହିପାରୁନାହିଁ । ମୋର ଶାସ୍ତ୍ରଜ୍ଞାନ, ଅନୁଭୂତି, ଅଭିଜ୍ଞତା ସବୁକିଛି ଏ ଦିଗରେ ନିଷ୍ଫଳ ହେଉଛି ।

*ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ*

*କଟକ ସିଟି କଲେଜ*

*ରାଜାବଗିଚା, କଟକ–୭୫୩୦୦୯*



# ଏକ ଅନୁକରଣୀୟ ବ୍ୟକ୍ତିତ୍ୱ

*ଅଧ୍ୟାପକ ଦେବବ୍ରତ ମହାପାତ୍ର*

"ଜାତସ୍ୟ ହି ଧ୍ରୁବୋ ମୃତ୍ୟୁଃ, ଧ୍ରୁବଂ ଜନ୍ମ ମୃତସ୍ୟ ଚ"– ଏହି ନିୟମରେ ଜଗତ୍‌ଭକ୍ଷକ କାଳ କାହିଁ କେତେକେତେ ମହାର୍ହ ପ୍ରତିଭାମାନଙ୍କୁ, ମହାମାନବମାନଙ୍କୁ କେତେକାଳୁ କବଳିତ କରିଚାଲିଛି, ତା'ର ଅବଧି ନାହିଁ । ପ୍ରିୟ–ଅପ୍ରିୟ, ସାର–ଅସାର ବିଚାର ତା'ର ନାହିଁ । ବିଧିର ଅଭ୍ରାନ୍ତ ଓ ଅଲଂଘନୀୟ ନିୟମ । ଜଗତ୍‌ଭକ୍ଷକ କାଳ ମାଟିପିଣ୍ଡଟାକୁ ଅକାମୀ କରି, ପୋଡ଼ି ପାଉଁଶ କରିଦେଇ ଉଦରସାତ୍ କରିସାରିବା 'ପରେ ବି ଯେଉଁମାନେ ତୁହାକୁ ତୁହା ଜନମାନସରେ ଅମ୍ଳାନ ଜ୍ୟୋତିଷ୍କ ସଦୃଶ ଝଟକୁଥାନ୍ତି, ଦିବ୍ୟ ପ୍ରେରଣାର ଉତ୍ସ ହୋଇଥାନ୍ତି, କାଳ ସେମାନଙ୍କ ପାଖେ ହାରମାନେ । ସେମାନେ କାଳଜୟୀ, ମରି ବି ଅମର । ଏମିତି ଜଣେ ଥିଲେ ଆମ କଟକ ସିଟି କଲେଜର ଇତିହାସ ବିଭାଗ ମୁଖ୍ୟ ଅଧାପିକା ନୀହାରିକା ଦାସ । ଏତେ ପ୍ରତିଷ୍ଠା, କର୍ମନିଷ୍ଠା ଓ ତ୍ୟାଗପୂତ ଏକ ମହାନ୍ ଆତ୍ମା ଉପରେ ମୋ ଭଳି ଜଣେ ଲୋକର ଟିପ୍ପଣୀ, ଅନ୍ଧର ହାତୀଦର୍ଶନ ବ୍ୟାଖ୍ୟାନୁସରଣ ହେବାର ଆଶଙ୍କା ରହିଛି । ତଥାପି ମହାତ୍ମାଙ୍କର ଗୁଣଗାନରେ ପବିତ୍ର ହେବା ଲୋଭରେ ଏ ପ୍ରୟାସ କରୁଛି; ତାଙ୍କୁ ମାପିବା ବା କଳନା କରିବାର ସାମର୍ଥ୍ୟ ବା ସାହସରେ ନୁହେଁ ।

କଟକ ସିଟି କଲେଜ ୧୯୭୯ ମସିହାରେ ପ୍ରତିଷ୍ଠା ହେବା ଦିନଠୁ ନୀହାରିକା ମାଡ଼ାମ୍ ଇତିହାସ ବିଭାଗ ଅଧାପିକା ଭାବେ ଯୋଗଦେଇଥିଲେ । ମୁଁ କଲେଜରେ ଯୋଗଦେଲି ୧୯୮୬ ମସିହାରେ । କାଲି ପରି ଲାଗୁଛି ମାଡ଼ାମ୍‌ଙ୍କ ସହିତ ପ୍ରଥମ ସାକ୍ଷାତର ଦିନ । ମିତଭାଷୀ, ସ୍ମିତହାସ୍ୟର ମଣିଷଟିଏ । ସବୁବେଳେ ପ୍ରସନ୍ନତା ଲାଗିରହିଥାଏ ମୁଖମଣ୍ଡଳରେ; ସତେ ଯେମିତି କୌଣସି ଗ୍ଲାନିନାହିଁ, ସଂଘର୍ଷନାହିଁ; ଯେପରି କି ସେ ଜିଣିପାରିଥିଲେ ଜୀବନକୁ । ଛୋଟଛୋଟ କାର୍ଯ୍ୟ, ଶାନ୍ତସରଳ କଥା । ସେଇଦିନଠୁ ଗଢ଼ିଉଠିଲା ସଂପର୍କ, ଅକୃତ୍ରିମ ସ୍ନେହଶ୍ରଦ୍ଧା ।

କଲେଜରେ ତାଙ୍କର ଓ ମୋର କ୍ଲାସ୍ ପ୍ରାୟ ଏକାସମୟରେ ପଡ଼େ । ତେଣୁ ପ୍ରାୟ ସବୁ ଦିନ ତାଙ୍କ ସହିତ ମୋର ଦେଖାହୁଏ । ବୟସରେ ସେ ମୋଠାରୁ ଦଶବର୍ଷ ବଡ଼ । ମୁଁ ତାଙ୍କୁ ନମସ୍କାର କଲେ, ପ୍ରତିନମସ୍କାରଟିଏ କରି ପଦେ କଥା ନକହି ଚାଲିଯିବା ତାଙ୍କ ଜାତକରେ ନଥିଲା । ହସିଦେଇ ମୋ କୁଶଳ ସଂପର୍କୀୟ ବିଭିନ୍ନ ପ୍ରଶ୍ନ ପଚାରିଯାଆନ୍ତି । ପ୍ରତ୍ୟେକ ମଣିଷର ପଦମର୍ଯ୍ୟାଦାକୁ ସମ୍ମାନ ଦେବା ତଥା ଅନ୍ୟର ବକ୍ତବ୍ୟ ପ୍ରତି ସହନଶୀଳ ହେବା ପାଇଁ ସେ ଯେପରି ପରାମର୍ଶ ଦେଉଥିଲେ, ତାହା ତାଙ୍କ ନିଜ ବ୍ୟକ୍ତିତ୍ୱରେ ହିଁ ପ୍ରତିଫଳିତ ହେଉଥିଲା ।

ସେ ଥିଲେ ଅଜାତଶତ୍ରୁ । ସମସ୍ତେ ତାଙ୍କର ଆପଣାର– ଏହା ଥିଲା ତାଙ୍କର ଦିବ୍ୟଗୁଣ । ତାଙ୍କ ମହାନୁଭବତା, ଗଭୀରତା ଓ ଆତ୍ମୀୟତା ମୋ ଭଳି ପାର୍ଥିବ ଜୀବ ପାଇଁ ଏକ ବିସ୍ମୟ ହୋଇ ରହିଗଲା । କୌଣସି ଘାତପ୍ରତିଘାତରେ ଭାଙ୍ଗିନପଡ଼ିବା ଥିଲା ତାଙ୍କର ଏକ ବୈଶିଷ୍ଟ୍ୟ । କେହି ତାଙ୍କର ବିରୁଦ୍ଧାଚରଣ କଲେ ଉଦାରତାର ଉଦାହରଣ ନୀହାରିକା ମାଡ଼ାମ୍‌ଙ୍କ ମନୋଭାବରେ କୌଣସି ବିଦ୍ୱେଷ ଭାବୋଦ୍ରେକ ନହେବା ମୁଁ ବରାବର ମୁଗ୍ଧ ଭାବରେ ଲକ୍ଷ୍ୟ କରିଛି । ନିର୍ବିକାର ଭାବେ ସେ ଏଭଳି ପରିସ୍ଥିତିକୁ ସାମନା କରୁଥିଲେ । ସେ କାହା ବିରୋଧରେ କେବେ ବିଷୋଦ୍‌ଗାର କରୁନଥିଲେ; ସେ କାହା ବିରୋଧରେ କେବେ କିଛି ମଧ କହୁନଥିଲେ । ଏଭଳି ପରିସ୍ଥିତିରେ ତାଙ୍କର ଆଦର୍ଶ ବାସ୍ତବିକ ଅନୁକରଣୀୟ ।

ସ୍ୱାଭାବିକ ଭାବରେ ସେ ଥିଲେ ବିନୟୀ, ଶାନ୍ତ, ମିତଭାଷୀ, ବନ୍ଧୁବତ୍ସଳ ଏବଂ ସ୍ନେହ ଓ ସହନଶୀଳତାର ମୂର୍ତ୍ତିମନ୍ତ ପ୍ରତୀକ । ମାତ୍ର ଆବଶ୍ୟକ ସ୍ଥଳେ ସେ ବେଶ୍ ଉତ୍ସାହପ୍ରଦ ଭାବେ ଦୃଢ଼ ହୋଇପାରୁଥିଲେ । ତାଙ୍କର ଆଉ ଏକ ବିଶେଷତ୍ୱ ହେଲା, କୌଣସି ଗୁରୁତର ପରିସ୍ଥିତି ବା ବିପଦସଙ୍କୁଳ ପରିସ୍ଥିତି ଆସିଗଲେ ଆଦୌ ହତ୍‌ବଡ଼େଇ ନଯାଇ ନିଷ୍ପତ୍ତି ନେବାର ସାହସ ଓ ବିଚକ୍ଷଣତା । ଏହା ମୂଳରେ ନିହିତ ଥିଲା ତାଙ୍କର ଗଭୀର ଆତ୍ମପ୍ରତ୍ୟୟ ଓ ଅସୀମ ଭଗବତ୍ ବିଶ୍ୱାସ । ତାଙ୍କର ସରଳ ଜୀବନଯାପନ, ଚରିତ୍ରବତ୍ତା, କର୍ତ୍ତବ୍ୟପରାୟଣତା, ନିଷ୍ଠା, ସାଧୁତା ଓ ନିରଭିମାନ କର୍ମକୁଶଳତା ପ୍ରତି ସବୁ ସ୍ତରରେ ଗଭୀର ସମ୍ମାନ ଥିଲା । ଆଜିର କାମ ସେ କାଲିକୁ ବାକି ରଖୁନଥିଲେ । ତାଙ୍କର ଅତି ନିକଟରୁ ମୁଁ ଏହା ଲକ୍ଷ୍ୟ କରିଛି । ତାଙ୍କର ହୃଦୟବତ୍ତା ମୋତେ ଅଭିଭୂତ କରିଛି । ପ୍ରକୃତରେ ଅହଂକାର ତାଙ୍କୁ ସ୍ପର୍ଶ କରିପାରିନଥିଲା ଏବଂ ସେ ଥିଲେ ବହୁ ଅଭାବନୀୟ ଗୁଣର ଅପୂର୍ବ

ସମାହାର । ତାଙ୍କର ସୌମ୍ୟକାନ୍ତି ବିଷୟରେ ପ୍ରଶ୍ନ କରିବାର ହିଁ ନାହିଁ । କଥୋପକଥନ ମଧ୍ୟ ତଦ୍ରୂପ । ଅନ୍ୟାନ୍ୟ ଗୁଣ ବିଷୟରେ ବିଶ୍ଳେଷଣର ଆବଶ୍ୟକତା ନାହିଁ । ଭୌତିକ ନୁହେଁ, ଆଧ୍ୟାତ୍ମିକ ବିଭବର ସେ ଅଧିକାରିଣୀ ।

ସେ ଦିନ ଶବବାହକମାନଙ୍କର ଡାକ ଶୁଣି ବିଦ୍ୟାନଗରୀର ଗୃହକର୍ତ୍ତ୍ରୀ କାଳିଦାସଙ୍କୁ ପଠାଇଥିଲେ ବୁଝିବା ପାଇଁ – ମୃତ୍ୟୁ ପରେ ସେହି ମନୁଷ୍ୟ କେଉଁଠିକୁ ଗଲା, ସ୍ୱର୍ଗକୁ ନା ନରକକୁ ? ଚିହ୍ନିବାର ଉପାୟ– ଶବ ପଛରେ ଥିବା ଲୋକମାନେ ଯଦି ପ୍ରକୃତରେ ଦୁଃଖ କରୁଥିବେ, ତେବେ ଲୋକଟି ସ୍ୱର୍ଗକୁ ଗଲା; ଆଉ ଯଦି ଖୁସି ହେଉଥିବେ, ତେବେ ନରକଗତି । ଯଦି ସ୍ୱର୍ଗ ବୋଲି କିଛି ଥାଏ, ଯଦି ସତରେ ମୃତ୍ୟୁ ପରେ ନିଜ କାମ ଅନୁସାରେ ମନୁଷ୍ୟ ସେହି ସ୍ୱର୍ଗକୁ ଯାଇପାରୁଥିବ, ତେବେ ମାଡ଼ାମ୍ ସ୍ୱର୍ଗଗାମୀ ହୋଇଥିବେ ନିଶ୍ଚୟ । ତାଙ୍କ ମୃତ୍ୟୁ ପାଇଁ ଶୋକର ଯେଉଁ ଉଚ୍ଛ୍ୱାସ ଉଠୁଛି, ତାହା ପ୍ରକୃତରେ ପ୍ରାଣସ୍ପର୍ଶୀ, ମର୍ମଭେଦୀ ।

ମୁଁ ତାଙ୍କ ସ୍ମୃତିକୁ ଶ୍ରଦ୍ଧା ଓ ସମ୍ମାନ ଜଣାଉଛି । ଉତ୍ସାହୀ, ହସହସ, ସ୍ନେହୀ ସେହି ମୁହଁଟି ମନେପଡୁଛି । ରୂପ ସ୍ଥୂଳରେ ଥିଲା, ଏବେ ସୂକ୍ଷ୍ମରେ ଅଛି– ସ୍ମୃତିରେ । ତାଙ୍କୁ ନମସ୍କାର କଲେ ଲାଗୁଛି, ସେ ବି ହସିହସି ପ୍ରତିନମସ୍କାର କରୁଛନ୍ତି । ମୀମାଂସା ଭିତରେ କେଉଁଠି ଛିଟିକାଏ ଅମୀମାଂସା ପରି, ପ୍ରତ୍ୟୟ ମଧ୍ୟରେ କେଉଁଠି ଅପ୍ରତ୍ୟୟ ଓ ହତାଶା ପରି କଟକ ସିଟି କଲେଜ ଏବେ ମତେ ଦେଖାଯାଉଛି ଶ୍ରୀହୀନ, ରୌଦ୍ରତପ୍ତ, ଶାଳ୍ମଳୀ-ବନସ୍ପତିଟିଏ ପରି । ସେହି ଝରାଫୁଲର ମହକ କିନ୍ତୁ ତଥାପି ପବନରେ ଖେଳିବୁଲୁଛି ।

*ସଂସ୍କୃତ ବିଭାଗ*
*କଟକ ସିଟି କଲେଜ*
*ରାଜାବଗିଚା, କଟକ–୭୫୩୦୦୯*



# ଜାତସ୍ୟ ହି ଧ୍ରୁବୋ ମୃତ୍ୟୁଃ

*ଅଧ୍ୟାପକ ଅରୁଣ କୁମାର ଦାଶ*

ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ; ଆଉ ମୃତ୍ୟୁ ହେଲେ ଜନ୍ମ ନିଶ୍ଚିତ । ଏ କଥାକୁ ତୁମେ ସେ ଦିନ ଯୁଦ୍ଧ କ୍ଷେତ୍ରରେ ଘୋଷଣା କରିଥିଲ ନା ? କିନ୍ତୁ ତୁମେ ତ କହିଲନାହିଁ ମୃତ୍ୟୁ କେତେବେଳେ ଆସିବା ଆବଶ୍ୟକ । ଜୀବକୁ ଜୀବନ ଦେଇ କିଛି କର୍ତ୍ତବ୍ୟ ସଂପାଦନ କରିବାକୁ ପଠାଇଥିଲ । କର୍ମମୟ ଜୀବନର କର୍ମ ଅଧା ରହିଗଲା । ଅବଶିଷ୍ଟ କର୍ମ ବାକି ପଡ଼ିଛି । ଅଥଚ ତୁମେ ବାହୁଡ଼ାଇନେଲ କାହିଁକି ? ଏହା କ'ଣ ପ୍ରଭୁ ତୁମର ଅବିଚାର ନୁହେଁ? ନିଷ୍କପଟ, ନିର୍ମାୟା, ସରଳ ଜୀବମାନଙ୍କୁ ତୁମେ ଏମିତି ଅସମୟରେ ନେଇଯାଅ କାହିଁକି ? ଆମେ ଜାଣିଛୁ ପ୍ରତ୍ୟେକ ବ୍ୟକ୍ତି ଦିନେ ନା ଦିନେ କାଳର କବଳିତ ହେବ । ତଥାପି ତା'ର ଏକ ସମୟ ଅଛି । ସେ ସମୟ ଆହୁରି ବାକିଥିଲା, କିନ୍ତୁ ତାଙ୍କୁ ବାହୁଡ଼ାଇନେଲ । ପଛରେ ଅନେକ ଆଶା, କାମନା, ମୋହ ପଡ଼ିରହିଛି । ତାକୁ ପୂରଣ କରିବ କିଏ ?

ସ୍ନେହମୟୀ, କୃପାମୟୀର ମୂର୍ତ୍ତିମତୀ ପ୍ରତୀକ ଥିଲେ ସେ । ସେ ଆଉ କେହି ନୁହଁନ୍ତି – ଆମର ପରମ ପୂଜନୀୟା ଇତିହାସ ବିଭାଗର ମୁଖ୍ୟ ଅଧ୍ୟାପିକା ନୀହାରିକା ଦାସ । ବେଶି ଦିନର ସଂପର୍କ ପ୍ରତିଷ୍ଠା ହୋଇନାହିଁ ତାଙ୍କ ସହିତ; ତଥାପି ଯେତିକି ସମୟ ସାନ୍ନିଧ ଲାଭ ହୋଇଛି ତାହା ଅବିସ୍ମରଣୀୟ । ନିଷ୍କପଟ ମୁହଁରେ ସରଳ ହସଟିଏ ଯେକୌଣସି ବ୍ୟକ୍ତିକୁ ଆପଣାର କରିନିଏ । ସଦା କର୍ତ୍ତବ୍ୟରତ, ସମୟାନୁବର୍ତ୍ତି ଓ ପ୍ରଗାଢ଼ ଭଗବତ୍-ବିଶ୍ୱାସୀ ଏଭଳି ବିରଳ ବ୍ୟକ୍ତିତ୍ୱ ଆଉ ଆମ ଗହଣରେ ମିଳିବେନାହିଁ । ପଛରେ ଅନେକ କିଛି ପଡ଼ିରହିଛି । ପରିବାରର ଛୋଟଛୋଟ ପିଲାମାନେ ମା'ଙ୍କର କ'ଣ ଘଟିଲା ବୋଲି ବୁଝିପାରୁ ନାହାନ୍ତି । ସ୍ୱାମୀ ଦର୍ଶନର ଅଧ୍ୟାପକ ହେଲେ ମଧ୍ୟ ଜଣେ ସରଳ, ନିଷ୍କପଟ ମନୁଷ୍ୟ । ଆଖି ତାଙ୍କର ଛଳଛଳ; ସେ ଭାବଗମ୍ଭୀର । କିଛି କହିପାରୁ ନାହାନ୍ତି । ବୃଦ୍ଧ ପିତାମାତା ବଞ୍ଚି ଥାଉଥାଉ ଅଲିଅଳୀ କନ୍ୟା ଆଗରେ ଚାଲିଗଲେ । ଏ କି ହୃଦୟ ବିଦାରକ ଦୃଶ୍ୟ ସୃଷ୍ଟି କଲ ପ୍ରଭୁ ତୁମେ ?

ସକାଳୁସକାଳୁ ଖବର ପାଇ ଆମେ ସମସ୍ତେ ଧାଇଁଯାଇଥିଲୁ ଶେଷ ଦର୍ଶନ କରିବା ପାଇଁ । କିନ୍ତୁ ତୁମେ ଏତେ ନିଷ୍ଠୁର ଯେ, ସେତିକି ସୁଯୋଗ ମଧ୍ୟ ଦେଲନାହିଁ । ଦେହ ଚିତାରେ ଭସ୍ମ ହୋଇ ଆତ୍ମା ପରଲୋକ ମାର୍ଗରେ ଗତି କରିଥିଲା । କର୍ମ ଏଇଠି ଅଧା ରହିଗଲା । ପୃଥିବୀ, ସଲିଳ, ତେଜ, ବାୟୁ, ଆକାଶ, ମନ, ବୁଦ୍ଧି, ଅହଙ୍କାର ପ୍ରଭୃତି ସୂକ୍ଷ୍ମ ବିଷୟକୁ ତୁମେ ନେଇଗଲ - ଆଉ ଏକ ଜନ୍ମ ଦେବା ପାଇଁ । ଆଉ ପଛରେ ଅନେକ ଅସଜଡ଼ା, ଅଭୁଲା ସ୍ମୃତି ନେଇ ଯେଉଁମାନେ ବଞ୍ଚି ରହିଲେ ସେହିମାନେ ହିଁ ଲୁହ ଗଡ଼ାଉଛନ୍ତି ଓ ଗଡ଼ାଉଥିବେ । ସ୍ମୃତି ତ ନୁହେଁ କେବେ ଭୁଲିବାର । ଅଭୁଲା ସେ ସ୍ମୃତି । ତାକୁ ଜାବୁଡ଼ିଧରି ଯେଉଁମାନେ ବଞ୍ଚନ୍ତି ସେମାନେ ମଧ୍ୟ ମୃତବତ୍ ବୋଧ ହୁଅନ୍ତି । ଜୀବନର ଅର୍ଦ୍ଧେକ କାଳ ସମାପ୍ତ ହୋଇନଥିଲା । କିଛି ବି ଆଶା ପୂରଣ ହୋଇନାହିଁ । ଅଥଚ ତୁମେ ବାହୁଡ଼ାଇନେଲ କେଉଁ ନ୍ୟାୟରେ ? ଜଗତପତି ହୋଇ ଜଗତ କଲ୍ୟାଣ କରିବାକୁ ଯାଇ ଏ କି ଅକଲ୍ୟାଣ କଲ ପ୍ରଭୁ ତୁମେ ? ତୁମେ ତ କହିଛ ଅନେକ ଜନ୍ମ ତପ ଫଳରେ ମୁଁ ମଣିଷ ଜନ୍ମ ଦିଏ । ଏ କଷ୍ଟଲବ୍ଧ, ତପସ୍ୟାଲବ୍ଧ ଜୀବନର ସ୍ୱଳ୍ପ ସମୟ ମଧ୍ୟରେ କ'ଣ ପରିପୂର୍ଣ୍ଣତା ଆସିଗଲା ? ଆମେ ଜାଣିଛୁ ଏସବୁ ମାୟା, ମୋହ ତୁମ ଭଙ୍ଗା-ଗଢ଼ାର ଖେଳଘର ! ଖେଳ ସରିନାହିଁ; ଅଧାରୁ ଭାଙ୍ଗିଦେଇ କି ଆନନ୍ଦ ପାଇଲ ତୁମେ ? ଅନ୍ୟ ମନରେ ଦୁଃଖ ଦେଇ ତୁମେ କି ଆନନ୍ଦ ପାଅ, ତାହା ବୋଧହୁଏ ତୁମ ବ୍ୟତୀତ ଆଉ କେହି ଜାଣନ୍ତିନାହିଁ ।

ତୁମ ପାଖରେ ଅଭିମାନ କରି କେବଳ ଟିକେ ସାନ୍ତ୍ୱନା ପାଇବି ବୋଲି ଏତେଗୁଡ଼ାଏ ପ୍ରଶ୍ନବାଣ ତୁମକୁ ନିକ୍ଷେପ କରିଛି । ତୁମେ କ'ଣ ଜାଣନାହିଁ, ନିଜ ପରିଜନଙ୍କୁ, ଆତ୍ମୀୟଙ୍କୁ ଛଡ଼େଇନେଲେ କେତେ ଦୁଃଖ ହୁଏ ? ସେହି ଦୁଃଖୀ ମଣିଷମାନଙ୍କୁ ଏ ଦୁଃଖରୁ ମୋଚନ କରିବା ସଙ୍ଗେସଙ୍ଗେ ଅମର ଆତ୍ମାକୁ ସଦ୍‌ଗତି ଦିଅ ମହାପ୍ରଭୁ- ଏତିକି ତୁମ ପାଖରେ ସବିନୟ ପ୍ରାର୍ଥନା ।

*ରାଜନୀତି ବିଜ୍ଞାନ ବିଭାଗ*
*କଟକ ସିଟି କଲେଜ*
*ରାଜବଗିଚା, କଟକ–୭୫୩୦୦୯*



# ନୀହାରିକା ପାଇଁ ଚିଠିଟିଏ

*ଡକ୍ଟର ସ୍ନିଗ୍ଧା ବିଶ୍ୱାଳ*

ସକାଳ ସାତଟାରେ ତରତର ହୋଇ କ୍ଲାସ୍ କରିବାକୁ ଗଲାବେଳେ ରାଜାବଗିଚା ଗୁଡ଼ିଆ ଦୋକାନ ସାମ୍ନା ଡାହାଣ ପଟ ରାସ୍ତାଟା ଆଡ଼କୁ ଦୃଷ୍ଟି ଆପେଆପେ ଟାଣି ହୋଇଯାଏ । ନୀହାରିକା ! ତୁମେ ଆସୁଥିବ କି ! ତା'ହେଲେ ବାକିଟା ରାସ୍ତା ଆଉ ଏକା ଯିବାକୁ ପଡ଼ିବନି । ସେଇଠୁ ସେତିକି ରାସ୍ତା । କେବେ ତୁମେ ଆଗରେ ମୁଁ ପଛରେ । କେବେ ମୁଁ ଆଗରେ ତୁମେ ପଛରେ । ବଡ଼ପାଟିରେ ଡାକି ହୁଏନି ରାସ୍ତାରେ, ଆଗ ଲୋକଟିକୁ ଅଟକାଇଦେଇ ସାଙ୍ଗ ହୋଇ ଯିବା ପାଇଁ । ଏକରକମ ଦୌଡ଼ିବାକୁ ପଡ଼େ, ପାଦରେ ପାଦ ମିଳାଇବା ପାଇଁ । ତା'ପରେ କ୍ଲାସ୍ ବେଳ ହୋଇଯାଉଥିଲେ ବି ସେଇଠୁ ସେତିକି ବାଟ ଆମ ଦୁହିଁଙ୍କ ଗତି ଟିକିଏ ଧିମେଇ ଯାଏ । କେମିତି ଶୀଘ୍ରଶୀଘ୍ର ଘରକାମ ସାରି ବାହାରିବାକୁ ପଡ଼ିଲା । ଗପୁଗପୁ ଆମେ କଲେଜ ଗେଟ୍ ଭିତରେ ପଶିଯାଉଥିଲେ । ଏମିତି ପ୍ରାୟ ହେଉଥିଲା ଯେତେବେଳେ ତୁମେ ଥିଲ ଆମ ଗହଣରେ ।

ଏବେ ବି ଠିକ୍ ସେମିତି ହେଉଛି । ସେଇ ଗଳି ପାଖରେ ପହଞ୍ଚିବା ମାତ୍ରେ ଅଭ୍ୟସ୍ତ ଦୃଷ୍ଟି ନିୟମ ମୁତାବକ ଟାଣି ହୋଇଯାଉଛି ଡାହାଣ ପଟେ । ଆଉ ହଠାତ୍ ଘଣ୍ଟା ଦେଖି ତରତର ହୋଇ ଦଉଡ଼ିବାବେଳେ ପାଦର ଗତି ଶିଥିଳ ହୋଇଯାଉଛି ମନକୁ ମନ ଗଭୀର ଅବସାଦରେ । ତୁମେ ଆଉ ସେ ରାସ୍ତାରେ ଆସୁନାହଁ । ଆସିବା ଆଉ ସମ୍ଭବ ବି ନୁହେଁ । ସକାଳୁଆ କଲେଜର ନୀରବ ପରିବେଶରେ କମନ୍‌ରୁମ୍‌ରେ ମତେ ସେମିତି ଏକୁଟିଆ ବସି ଲିଜର ପିରିଅଡ଼ କାଟିବା ପାଇଁ ବହି ପଢ଼ିବାକୁ ପଡୁଛି । ବହିଟାକୁ ସେମିତି ହାତରେ ଧରି ଗୋଟିଏ ବି ପୃଷ୍ଠା ନଓଲଟାଇ ଗପିବା ପାଇଁ ପାଖ ଚଉକିରେ ତୁମେ ଆଉ ନାହଁ ।

ମୋତେ ବିଶ୍ୱାସ ହେଉନି, ତୁମେ ଆଉ ସତରେ ନାହଁ । କଲେଜ ମିଟିଂରେ ଆମେ ଆଉ ତୁମକୁ ବସିବାର ଦେଖିବୁନି, ପରୀକ୍ଷାରେ ତୁମେ ଆଉ ଏପଟସେପଟ ହେବନି, ରେଜିଷ୍ଟର ଧରି ତୁମେ ଆଉ କ୍ଲାସ୍‌କୁ ଯିବନି,

ଭାଲ୍ୟୁଏସନ୍‌କୁ ଯିବା ପାଇଁ ସାଙ୍ଗ ଖୋଜିବନି, ରିସର୍ଚ୍ଚ କାମ ଆଗେଇପାରୁନି ବୋଲି ଚିନ୍ତା କରିବନି, ଟ୍ରାନ୍ସଫର ସିଜିନ୍ ଆସିଲେ ଭୟ କରିବନି, ସାନପୁଅକୁ ସ୍କୁଲ ପଠାଇବା ପାଇଁ କମନ୍‌ରୁମ୍‌ର ଆଳାପକୁ ଅଧାରୁ ଛାଡ଼ି ଘରକୁ ଯିବା ପାଇଁ ବାହାରିବନି, ବଡ଼ପୁଅ ହଷ୍ଟେଲରେ କେମିତି କ'ଣ ଖାଉଥିବ ଓ ପଢୁଥିବ ସେ ନେଇ ବ୍ୟସ୍ତ ହେବନି । ସବୁ ଚିନ୍ତା-ଦୁଶ୍ଚିନ୍ତା, ପ୍ରାପ୍ତି-ଅପ୍ରାପ୍ତିର ବହୁ ଊର୍ଦ୍ଧ୍ୱରେ ତୁମେ ବର୍ତ୍ତମାନ କେଉଁଠି ! ଆଉ ଆମେ ତୁମକୁ ଭେଟିବୁନି – ନା ସିଟି କଲେଜର ବାରଣ୍ଡାରେ ନା ଝାଞ୍ଜିରୀମଙ୍ଗଳାର ନଦିଆ ନିବାସରେ । ସେ ଘର, ଖଟ, ଆଲଣା, ଚଦର, ରୋଷେଇଘର, ଭାତହାଣ୍ଡି, ଚା ସସ୍‌ପେନ୍‌ରେ ତୁମରି ସ୍ପର୍ଶ ତୁମରି ବାସ୍ନା ଥିବ । ଆମେ ଯଦି ଏଠି କଲେଜର ପ୍ରତ୍ୟେକଟି ମିଟିଂରେ ପ୍ରତ୍ୟେକଟି କାର୍ଯ୍ୟରେ ତୁମର ଉପସ୍ଥିତିକୁ ଝୁରି ହେଉଛୁ, ରକ୍ତ ସହିତ ସଂପର୍କିତ ତୁମର ଆପଣାର ପ୍ରିୟଜନମାନେ କେମିତି ଗ୍ରହଣ କରିପାରୁଥିବେ ଏ ନିଦାରୁଣ ବାସ୍ତବତାକୁ ! ପ୍ରତ୍ୟେକଟି କଥା, କାମ, ଚିନ୍ତାରେ ତୁମ ଅନୁପସ୍ଥିତିର ନିର୍ମମ ଧକ୍‌କାକୁ ରାତିଦିନ ସମ୍ଭାଳିବା କେତେ ଯନ୍ତ୍ରଣାଦାୟକ ହୋଇପଡୁନଥିବ !!

ଏତେ ନୀରବରେ, ଏତେ ଅଚାନକ ଭାବରେ ତୁମେ ଚାଲିଗଲ କାହିଁକି ? କେମିତି ? ପୃଥିବୀରେ ସବୁ କେମିତି ଓ କାହିଁକିର ଉତ୍ତର ମିଳେ, କେବଳ ଯାକୁଇ ଛାଡ଼ି । ଆଜି ପର୍ଯ୍ୟନ୍ତ ଅସହାୟ ମଣିଷ କେତେ ଢଙ୍ଗରେ, କେତେ ବାଗରେ ଏ ପ୍ରଶ୍ନର ଉତ୍ତର ଖୋଜିଛି । କିନ୍ତୁ ଏ ପ୍ରଶ୍ନ ଚିରଦିନ ଅମୀମାଂସିତ । ଦୁଃଖରେ ଅଣ୍ଡାଳି ହେଉଥିବା ତୁମର ସ୍ୱାମୀ, ସନ୍ତାନ, ବାପା, ମା', ବନ୍ଧୁ, ସହକର୍ମୀ ସଭିଙ୍କୁ ତୁମର ଏ ନୀରବ ପ୍ରସ୍ଥାନ ସ୍ୱୀକାର କରିବାକୁ ପଡ଼ିବ । ସ୍ୱୀକାର ନକରି ଗତି ନାହିଁ ।

ତୁମେ କ'ଣ ଜୀବନର ଜଞ୍ଜାଳକୁ ଡରିଗଲ ? ଡରି କରି ଏମିତି ନୀରବରେ ଚାଲିଗଲ ? ସବୁ ଦିନ ତୁମେ ଏମିତି ନୀରବ ଥିଲ । ତୁମ ପରିବାର ପରିସର ଭିତରେ ତୁମେ କେମିତି ଥିଲ ଆମେ ଜାଣିନୁ । କିନ୍ତୁ କଲେଜରେ ସବୁବେଳେ ଆମେ ତୁମକୁ ଶାନ୍ତ ଆଉ ନୀରବ ଦେଖିଆସିଛୁ । କୌଣସି ପରିସ୍ଥିତି ସଂପର୍କରେ ଆପତ୍ତି ନାହିଁ, କୌଣସି ବ୍ୟକ୍ତି ବିରୋଧରେ ଅଭିଯୋଗ ନାହିଁ । ନୂଆନୂଆ କଲେଜ ଆରମ୍ଭବେଳର କୌଣସି ଅପ୍ରୀତିକର ପରିସ୍ଥିତିରେ ଅସନ୍ତୁଷ୍ଟ ହୋଇ ସମସ୍ତେ ପାଟିତୁଣ୍ଡ କରୁଥିବାବେଳେ ତୁମେ ପ୍ରାୟତଃ ନୀବର ରହୁଥିଲ । ବଡ଼ପାଟିରେ ଚିତ୍କାର କରି ଗାଳିଗୁଲଜ କରି ନିଜର ଅସନ୍ତୋଷ ପ୍ରକାଶ କରିବା

ଆମେ ତୁମକୁ ପ୍ରାୟ ଦେଖିନୁ । ସମୟ ସମୟରେ ମନେହେଉଥିଲା– ଅନ୍ୟାୟ, ଅବିଚାର ଦେଖିଲେ ତୁମ ମନରେ କ'ଣ କଷ୍ଟ ହେଉନି ? ବିଦ୍ରୋହ ଆସୁନି ? ସବୁକୁ ତୁମେ ସମ୍ଭାଳିନେଉଛ କେମିତି ? ସେଥିପାଇଁ କେତେଥର ତୁମକୁ ଆମେ ଭୁଲ୍ ବି ବୁଝିଛୁ । ଆଜି ବୁଝୁଛୁ ସବୁରେ ସହିସମ୍ଭାଳି ନେବାର କି ଅଦ୍ଭୁତ ଶକ୍ତି ତୁମ ପାଖରେ ଥିଲା ! ସେଥିପାଇଁ ଭାଗ୍ୟର ଏ ଅବିଚାରକୁ ବି ତ ତୁମେ ଚୁପ୍‌ଚାପ୍ ସହିନେଲ । କାହାକୁ ଜାଣିବାକୁ ବି ଦେଲନି ତୁମକୁ ଏତେ କଷ୍ଟ ହେଉଥିଲା ବୋଲି । ଗତ ପାଞ୍ଚବର୍ଷ ଧରି ତୁମ ସ୍ୱାସ୍ଥ୍ୟ ଧୀରେଧୀରେ ଖରାପ ହୋଇଆସୁଥିଲା । ସହଜ, ସ୍ୱାଭାବିକ ଭାବରେ ତୁମର ସାଧାରଣ କାମଗୁଡ଼ାକ ବି ତୁମେ କରିପାରୁନଥିଲ । ତଥାପି ଶେଷ ପର୍ଯ୍ୟନ୍ତ କଲେଜକୁ ଆସି ନିୟମିତ କ୍ଲାସ୍ ନେଉଥିଲ । ପିଲାଙ୍କ ଯତ୍ନ, ଘରର ଦାୟିତ୍ୱ ସବୁ ସମ୍ଭାଳୁଥିଲ । ନା ଘରର ନା କଲେଜର କୌଣସି କର୍ତ୍ତବ୍ୟରେ ତ୍ରୁଟି କରିନଥିଲ । ତେବେ କେମିତି ଆମେ ଜାଣିଥାଆନ୍ତୁ ତୁମକୁ କଷ୍ଟ ହେଉଥିବ ବୋଲି ।

ପ୍ରତ୍ୟେକ ଦିନ ସକାଳେ ତୁମକୁ ମୁଁ ଭେଟୁଥିଲି । ତୁମ ସହିତ କଥା ହେଉଥିଲି । କେବେ ତ ତୁମକୁ ଯନ୍ତ୍ରଣାରେ ଅସ୍ଥିର ହେବାର ଦେଖିନି । ନିଜର କ୍ଷୟ ପାଇଯାଉଥିବା ସ୍ୱାସ୍ଥ୍ୟକୁ ନେଇ ଯେମିତି ବିବ୍ରତ ଓ ଭୀତତ୍ରସ୍ତ ହୋଇଯିବା କଥା, ତା' ତ ଲକ୍ଷ୍ୟ କରିନି । ତୁମ କଥାରୁ ଜୀବନ ପ୍ରତି ବିରକ୍ତି, ବୀତସ୍ପୃହତା, ଭୟ କେବେ ତ ଜାଣିପାରିନି । ସେମିତି ସହଜ/ସ୍ୱାଭାବିକ କଥାବାର୍ତ୍ତା, ହସଖୁସି । ଅନ୍ତିମ ସମୟ ଯେତେବେଳେ ଆଉ ତିନିମାସ ମାତ୍ର ଥିଲା ସେତେବେଳେ ତୁମ ସାଙ୍ଗରେ ମିଶିଥିଲେ, ମୁଁ କ'ଣ, କେହି ବି ଜାଣିପାରିନଥାନ୍ତେ ସବୁକିଛି ଏତେ ଶୀଘ୍ର ସରିବାକୁ ଯାଉଛି ବୋଲି । ପ୍ରତ୍ୟେକଟି କଥାରେ ତୁମର ଥିଲା ଜୀବନଠାରୁ ଅନେକ କିଛି ପ୍ରାପ୍ତିର ଅଫୁରନ୍ତ ସମ୍ଭାବନା । ମନର କୌଣସି କୋଣକୁ ନୈରାଶ୍ୟ ଛୁଇଁପାରିନଥିଲା । ପ୍ରବଞ୍ଚକ ଏଇ ଜୀବନକୁ ଏତେ ବିଶ୍ୱାସ କରିବାର ଶକ୍ତି ତୁମେ ପାଇଲ କେଉଁଠୁ ? ଯିବାର ଦିନକ ପୂର୍ବରୁ ମୁଁ ତୁମକୁ ଫୋନ୍ କରିଥିଲି । ସେତେବେଳେ ତୁମେ ମୋତେ କହିଲ, ଛୁଟି ଆଗରୁ କଲେଜରେ ଜଏନ୍ କରିବ । ଯିବାର ମାତ୍ର ଅଧଘଣ୍ଟାଏ ଆଗରୁ ତୁମର ଯାଆ ଲୁସିକୁ ଫୋନ୍‌ରେ କହିଥିଲ, ଯଦି ଖରାପ ଲାଗେ ତେବେ କଟକ ଆସି ଡାକ୍ତର ଦେଖାଇବ । କେତେ ସରଳ ନିଃଶଙ୍କ ମନ ସତରେ ତୁମର ଥିଲା ।

ଆଜି ମୁଁ ବୁଝୁଛି, କେତେ ଭିନ୍ନ ନଦିଶିଲେ ମଧ୍ୟ କେତେ ଅସାଧାରଣ ଥିଲ ତୁମେ ଆମ ସମସ୍ତଙ୍କଠାରୁ । ଟିକେ କ'ଣ ଦେହ ଖରାପ ହେଲେ କ'ଣ କ'ଣ ହୋଇଯିବ ଭାବି ଆମେ ନିଜେ ତ ଅସ୍ଥିର ହୋଇପଡୁ, ଅନ୍ୟମାନଙ୍କୁ ବି କେତେ ଅସ୍ଥିର କରିପକାଉ । ମାତ୍ର କେଉଁ ସ୍ତରର ଲୋକ ତୁମେ ଥିଲ ? ଶରୀରର ଯନ୍ତ୍ରଣାକୁ ତୁମେ ଗ୍ରାହ୍ୟ କରୁନଥିଲ କେମିତି ? ଆଜି ସତରେ ବିଶ୍ୱାସ କରିବାକୁ ହେଉଛି ଭଗବାନ୍ ସବୁବେଳେ ଭଲ ଆଉ ଅସାଧାରଣମାନଙ୍କୁ ତାଙ୍କ ପାଖକୁ ଜଲଦି ନେଇଯାଆନ୍ତି । ସେ ଚାହାଁନ୍ତିନି ତାଙ୍କର ପ୍ରିୟଜନମାନେ ସଂସାରରେ ଏ ଯନ୍ତ୍ରଣାଯାତନା ଭିତରେ ରହି କଷ୍ଟ ପାଆନ୍ତୁ । ସେଥିପାଇଁ ପ୍ରକୃତରେ କିଛି ଦାରୁଣ କଷ୍ଟର ଅନୁଭବ ଦେବା ପୂର୍ବରୁ ସେମାନଙ୍କୁ ନିଜ ପାଖକୁ ନେଇଯାଆନ୍ତି । ଏ ଦୃଷ୍ଟିରୁ ଦେଖିଲେ କେତେ ପରିପୂର୍ଣ୍ଣ ଜୀବନ ଥିଲା ତୁମର । ସ୍ୱାମୀଙ୍କର ଅଫୁରନ୍ତ ସୋହାଗ, ପିଲାମାନଙ୍କର ମମତା, ବାପାବୋଉଙ୍କର ଅସରନ୍ତି ସ୍ନେହ, ଭାଇମାନଙ୍କର ଶ୍ରଦ୍ଧା, ଶାଶୁଘରର ପ୍ରୀତି, ବନ୍ଧୁମାନଙ୍କର ସଦିଚ୍ଛା ଭିତରେ ତ ତୁମେ ବୁଡ଼ିରହିଥିଲ । ତୁମେ ଏତେ ଶୀଘ୍ର ସବୁ ଛାଡ଼ି ଚାଲିଯିବ, ଏକଥା ଜାଣିପାରିଥିଲେ ତୁମକୁ ନିଶ୍ଚୟ ଖୁବ୍ କଷ୍ଟ ହୋଇଥାଆନ୍ତା । ପିଲାମାନଙ୍କୁ ଅସହାୟ କରି ସ୍ୱାମୀଙ୍କ ଉପରେ ସବୁ ବୋଝ ଲଦିଦେଇ ଚାଲିଯିବ, ଏ ଚିନ୍ତାରେ ତୁମର ସେଇ କେତୋଟି ଦିନ ଯନ୍ତ୍ରଣାରେ ଅସହ୍ୟ ହୋଇପଡ଼ିଥାନ୍ତା । ସେଥିଲାଗି ଭଗବାନ୍ ତୁମର ନିଷ୍କଳୁଷ ମନରେ ଟିକିଏ ବି ସନ୍ଦେହ ଆଣିଲେନି । ଯାହା ଭବିତବ୍ୟ ତା' ତ ନିଶ୍ଚୟ ଘଟିବ । ତାକୁ ଅନ୍ୟଥା କରିବ କିଏ ? ସେଥିପାଇଁ ଏ ନିଦାରୁଣ ଭବିତବ୍ୟ ସଂପର୍କରେ ତୁମକୁ ଟିକିଏ ବି ଅବଗତ ନକରାଇ, ଆପଣାର ଲୋକକୁ ଡାକିନେଇଗଲା ପରି, ଭଗବାନ୍ ତୁମକୁ ଧୀରେ ଡାକିନେଇଗଲେ । ସବୁକୁ ପର କରି ଚାଲିଯିବାର ଦୁଃଖ ତୁମକୁ ଜାଣିବାକୁ ଦେଲେନି ।

ତୁମେ ସିନା କିଛି ଜାଣିପାରିଲନି, ପଛରେ ଯେଉଁମାନଙ୍କୁ ଛାଡ଼ିଦେଇଗଲ ଚିରଦିନ ପାଇଁ, ସେମାନଙ୍କୁ କ୍ଷତାକ୍ତ କରିଦେଇଗଲ । ଏ କ୍ଷତର ଜ୍ୱାଳା ସମୟ ହୁଏତ କମାଇଦେଇପାରେ, କିନ୍ତୁ କେବେ ବି ତା'ର ଗଭୀରତାକୁ ପୂରେଇଦେଇ ପାରିବନି । ଆମେ ଯେଉଁମାନେ ଏଇ କଲେଜରେ ତୁମ ସହିତ ଆରମ୍ଭରୁ ଥିଲୁ, ତୁମକୁ ଭୁଲିଯିବା ଆମ ପକ୍ଷରେ ସଂପୂର୍ଣ୍ଣ ଅସମ୍ଭବ । କେମିତି ଭୁଲିବୁ ? ଜୀବନର ଯେଉଁ ସମୟରେ ମଣିଷ ସ୍ୱପ୍ନ ଦେଖେ, ସ୍ୱପ୍ନକୁ ସାକାର କରିବା ପାଇଁ ସଂଘର୍ଷ କରେ, ସେମିତି ଦୀର୍ଘ ଚଉଦବର୍ଷ ଆମେ ଏକାଠି କଟେଇଛେ । ନୂଆ କରି

ହୋଇଥିବା ପ୍ରାଇଭେଟ୍ କଲେଜର ସୁଖ-ଦୁଃଖ, ଅଭାବ-ଅସୁବିଧା, ସଂଘର୍ଷ-ସାଧନାର ଦିନଗୁଡ଼ିକରେ ଆମେ ଏକାଠି ହାତରେ ହାତ ଧରି ଠିଆ ହୋଇଛେ । ସିଟି କଲେଜ ମାଟିରେ ପାଦ ଦୁଇଟିକୁ ଟାଣ କରି ଥୋଇବା ପାଇଁ କେତେ ଲୁହ ନଢାଳିଛେ, କେତେ ସ୍ୱପ୍ନ ବା ନଦେଖିଛେ ! ଆଜି ଯେତେବେଳେ ଆମେ ଟିକେ ସିଧା ଠିଆ ହୋଇପାରିଲୁ, ସ୍ୱପ୍ନ ସାକାର ହେଲା ବୋଲି ସନ୍ତୋଷରେ ନିଶ୍ୱାସ ନେବୁ ବୋଲି ଭାବିଲୁ, ଠିକ୍ ସେତିକିବେଳେ ତୁମେ ଛାଡ଼ି ଚାଲିଗଲ । ସ୍ୱପ୍ନ-ସାଧନାର ସେ ସାଥୀକୁ ଆମେ ଭୁଲିବୁ କେମିତି ?

କ'ଣ ବା କହିବି ତୁମ ବାପା-ବୋଉ, ସ୍ୱାମୀ-ପିଲାଙ୍କ କଥା ? ଏ ସାନ୍ତ୍ୱନାହୀନ ଦୁଃଖ ପାଇଁ ସାନ୍ତ୍ୱନାର ଭାଷା କାହିଁ ? ଆତ୍ମଜକୁ ହରାଇବାର ଦୁଃଖକୁ ପାସୋରିବା ପାଇଁ ଏପର୍ଯ୍ୟନ୍ତ ପୃଥିବୀରେ ଉପାୟ ସୃଷ୍ଟି ହୋଇନାହିଁ । ପ୍ରକୃତ ପ୍ରେମ ହଜିଗଲେ ତା'ର ପରିପୂର୍ତ୍ତି ଆଉଥରେ ହୋଇପାରିନାହିଁ, ମା'ର ବିକଳ୍ପଟିଏ ଖୋଜିବା ସମ୍ଭବ ହୋଇନାହିଁ । ତେବେ ଈଶ୍ୱରଙ୍କ ଇଚ୍ଛା ବୋଲି ମାନିନେବା ବ୍ୟତୀତ ଗତ୍ୟନ୍ତର କ'ଣ ବା ଅଛି ? ରବୀନ୍ଦ୍ରନାଥଙ୍କ ଭାଷାରେ ଏତିକି ଖାଲି କହିପାରେ–

ଆମାର୍ ଭାର୍ ଲାଘବ୍ କରେ
ନାଇ ବା ଦିଲେ ସାନ୍ତ୍ୱନା,
ବହିତେ ପାରି ଏମ୍‌ନି ଯେନ ହୟ ।
ନମ୍ର ଶିରେ ସୁଖେର୍ ଦିନେ
ତୋମାରି ମୁଖ୍ ଲଇବ ଚିନେ,
ଦୁଃଖେର୍ ରାତେ ନିଖିଲ୍ ଧରା
ଯେଦିନ କରେ ବଞ୍ଚନା
ତୋମାରେ ଯେନ ନା କରି ସଂଶୟ । (ଗୀତାଞ୍ଜଳି)

ଏ ଦାରୁଣ କଷ୍ଟ ସହି ଜୀବନ ପଥରେ ଆଗେଇଯିବା ପାଇଁ ଭଗବାନ୍ ଆମ ସମସ୍ତଙ୍କୁ ଶକ୍ତି ଦିଅନ୍ତୁ– ଏତିକି ମାତ୍ର ସେ ମଙ୍ଗଳମୟଙ୍କଠାରେ ପ୍ରାର୍ଥନା ।

*ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ*
*କଟକ ସିଟି କଲେଜ*
*ରାଜାବଗିଚା, କଟକ- ୭୫୩୦୦୯*



# ନୀହାରିକା :
# ପ୍ରେରଣାର ଏକ ତୁଙ୍ଗ ମାଇଲଖୁଣ୍ଟ

*ଡକ୍ଟର କୈଳାସ ଚନ୍ଦ୍ର ଦାଶ*

ଅଧ୍ୟାପିକା ନୀହାରିକା ଦାସ ଆଉ ଏ ଜଗତରେ ନାହାଁନ୍ତି । ତାଙ୍କର ଅକାଳ ବିୟୋଗ ଘଟିଛି; ଏ କଥା ବିଶ୍ୱାସ କରିବାରେ କିଛିଟା ବିଳମ୍ବ ହୋଇଛି । କଥାଟି ସତ୍ୟ । ମୃତ୍ୟୁ କାହାକୁ ଛାଡ଼ିନାହିଁ; ଏହା ଚିରନ୍ତନ ନିୟମ । ମଣିଷର ସହସ୍ର ଉଦ୍ୟମ ଏ ଦିଗରେ ବିଫଳ ହୋଇଛି । ତେବେ ମୃତ୍ୟୁ ପରର ସ୍ମୃତିଟି ରହିଯାଇଛି ଛାଇଟିଏ ପରି । ମୋ ପରି ଜଣେ ଇତିହାସ ଅନୁରକ୍ତ ମଣିଷ ଏ ଛାଇଟିକୁ ବହୁତ ଆଦର କରେ । ଏ ଛାଇଟିକୁ ଭାବିବସିଲେ ପ୍ରଲମ୍ବିତ ହୁଏ ଦୂର କେଉଁ ଅତୀତର ରାସ୍ତା । ଆଉ ସେ ରାସ୍ତାରେ କିଛିବାଟ ଚାଲିବାକୁ ମନହୁଏ ।

ମନେପଡୁଛି ଅତୀତର ସେହି ଅଙ୍କାବଙ୍କା ରାସ୍ତା । ସ୍ୱାମୀ ବିବେକାନନ୍ଦ ସ୍ମାରକୀ ମହାବିଦ୍ୟାଳୟ– ଅଳକାନଦୀର ପଠାରେ । ହଠାତ୍ ଦଶନମ୍ବର ପାଖରେ ଦେଖାହୁଏ ନୀହାରିକା– ପ୍ରାକ୍-ବିଶ୍ୱବିଦ୍ୟାଳୟ ବିଜ୍ଞାନ ଛାତ୍ରୀ । ଅଣଖିଆ ପୋଷ୍ଟଅଫିସରୁ ଆସେ ବସ୍‌ରେ । ତାଙ୍କ ବାପା ସମ୍ଭବତଃ ସେହିଠାରେ ପୋଷ୍ଟମାଷ୍ଟର । ବହୁତ ଚୁପ୍‌ଚାପ୍ ଝିଅ । ଜଗତ୍‌ସିଂହପୁରଠାରୁ ଡଳକୁ ସାତ / ଆଠମାଇଲ ଚାଲିଚାଲି ଆସୁଥିବା ଏବଂ ସଭ୍ୟତାର ଆଲୋକ ଉପଭୋଗ କରିନଥିବା ମୋ ପରି ଏକ ବାଳକ ସେତେବେଳେ ସେହି କଲେଜରେ ପ୍ରାକ୍-ବିଶ୍ୱବିଦ୍ୟାଳୟ କଳା ଛାତ୍ର । ନିଃସ୍ୱ ଏବଂ ସଂଗ୍ରାମୀ । ନୀହାରିକାକୁ ସେହି ଦଶନମ୍ବରରୁ ବସ୍‌ରେ ଆସିବାଯିବାର ବହୁବାର ଦେଖିଛି । କେତେ ଝିଅ ତ ଆସନ୍ତି ସେହି ବାଟେ, ଯାଆନ୍ତି ସେ' ବାଟେ । ମୋର ସେମାନଙ୍କ ବିଷୟରେ ଚିନ୍ତା କରିବା ଏତେ ଦରକାର ନଥାଏ । କିପରି କଲେଜ ଜୀବନଟି ବିତିଯିବ, ଏତିକି ମୋର କଳ୍ପନା । ତା'ର ଦୁଇବର୍ଷ ମଧ୍ୟରେ ମୋର ନୀହାରିକା ସହିତ ପରିଚୟ ହୋଇଥିଲା । ସେହି କଲେଜରେ ମୁଁ ଥିଲି ବହୁ ପରିଚିତ ଛାତ୍ର; କାରଣ ସେ ବର୍ଷ ୧୯୭୨ରେ ମୁଁ ବିଶ୍ୱବିଦ୍ୟାଳୟରେ ସ୍ଥାନ ରଖିଥିଲି । ଅନେକ ଛାତ୍ରଛାତ୍ରୀ ମୋ ପ୍ରତି ଦୃଷ୍ଟି ଦେଇଥିଲେ । ହଠାତ୍ ଦିନେ ଦେଖିଲି ନୀହାରିକା

ମୋତେ ଚିହ୍ନିଛି; କିଛି ପରିମାଣରେ ମୋର ନୀତି, ଆଦର୍ଶକୁ ପସନ୍ଦ କରିଛି । ଦିନେ ତା'ର ବାପାଙ୍କ ଆଗରେ ଦୂରରୁ ଜଗତ୍‌ସିଂହପୁର ରାସ୍ତାରେ ମୋ ଆଡ଼କୁ ନିର୍ଦ୍ଦେଶ କରି କହିଥିଲା, "ଏ ହେଉଛି କୈଳାସ – ବହୁ ସରଳ, ଗରୀବ ପିଲାଟିଏ; କିନ୍ତୁ କଲେଜରେ ସମସ୍ତେ ତାକୁ ଶ୍ରଦ୍ଧା କରନ୍ତି । କାରଣ ସେ 'ଟପ୍ ରେଜଲଟ୍' କରିଛି ।" ତାଙ୍କ ବାପା ଦୂରରୁ ମୋ ଆଡ଼କୁ ଦୃଷ୍ଟି ପକେଇଥିଲେ ।

ଏପରି ସମୟ ଆସିଲା ନୀହାରିକା ପୁଣି ମୋ ସହିତ ବି.ଏ. କ୍ଲାସ୍‌ରେ ଇତିହାସରେ ଅନର୍ସ ନେଇ ପଢ଼ିଲା । ଖୁବ୍ କମ୍ କଥା କହେ । କିଛି ପଚାରିଲେ ସାମାନ୍ୟ ହସିଦିଏ ଏବଂ ସ୍ୱଭାବସୁଲଭ ଢଙ୍ଗରେ ଅଳ୍ପ କଥା କହେ । ମୁଁ ଲକ୍ଷ୍ୟ କରିଛି, ଶ୍ରେଣୀରେ ନୀହାରିକା ବହୁତ ଯତ୍ନର ସହିତ ଅଧ୍ୟାପକଙ୍କ କଥା ଶୁଣେ । ତା'ର ପଢ଼ିବାର ପ୍ରବଳ ଇଚ୍ଛା । ତେବେ ବିଶେଷ ଭଲ ଫଳ ପାଇପାରିଲାନାହିଁ । ଭଲ ପଢୁଥିବା ସହାଧ୍ୟାୟୀମାନଙ୍କୁ ବହୁତ ଆଦର କରେ । ସେହି ଅନର୍ସ ପଢ଼ିବାବେଳେ ମୁଁ ନୀହାରିକା ସହିତ କିଛି ପରିମାଣରେ ମିଶିଲି; ଜାଣିଲି ତା'ର ପଢ଼ିବାର ଇଚ୍ଛା ବହୁତ । ବହୁ ସ୍ୱପ୍ନ ଓ କଳ୍ପନା । ମୋର ଦାରିଦ୍ର୍ୟକୁ ଦେଖି ମଧ୍ୟ ସେ ସେତେବେଳେ ମୋତେ ବହୁ ଉତ୍ସାହ ଦେଇଥିଲା ।

ପୁଣି ନୀହାରିକା ଦେଖାହୁଏ ଉତ୍କଳ ବିଶ୍ୱବିଦ୍ୟାଳୟ ଇତିହାସ ବିଭାଗରେ । ସେ ପ୍ରଥମେ ଇଉନିଟ୍ ନଅରେ ତା'ର ବନ୍ଧୁଘରେ ରହୁଥିଲା । ମୁଁ ସଂଗ୍ରାମର ପଥ ବାଛିନେଇ ଲକ୍ଷ୍ମୀସାଗରରୁ ବାଣୀବିହାରକୁ ପଢ଼ିବାକୁ ଆସେ । ବାଣୀବିହାରରେ ସେ ମୋ ପଢ଼ା ବିଷୟରେ ବହୁତ ପଚାରେ । ବେଳେବେଳେ ମୁଁ ପାଠପଢ଼ା ଛାଡ଼ିଦେଇ ଅଭାବ ମେଣ୍ଟାଇବାକୁ ଚାକିରି କରିଯିବି ବୋଲି କହିଲା ମାତ୍ରେ ସେ ବୁଝାଏ ଯେ, ଏମ୍.ଏ. କ୍ଲାସ୍ ଶେଷ କରିବା ପରେ ହିଁ ମୋ ଦୁଃଖ ଦୂର ହୋଇଯିବ । ସେ ମୋତେ ବାରମ୍ବାର ଉତ୍ସାହ ଦିଏ– ଆଇ.ଏ.ଏସ୍. ପରୀକ୍ଷା ଦେବାକୁ । ଥରେ ତା' ସହିତ ବାଣୀବିହାରରେ ଦେଖାହେଲା । ମୁଁ କହିଲି "ନୀହାରିକା ତୁମେ ପାଠ ପଢ଼; ମୋର ଦୁର୍ଭାଗ୍ୟ, ଏହା ହେବନାହିଁ ।" ସେ ହଠାତ୍ ତା'ର ସହପାଠିନୀ ସତ୍ୟଭାମା (ବର୍ତ୍ତମାନ ଇତିହାସ ଅଧ୍ୟାପିକା ଡକ୍ଟର ସତ୍ୟଭାମା ପତି)ଙ୍କ କଥା କହିଥିଲା । "ସତ୍ୟଭାମା ମଧ୍ୟ ବହୁତ ଅସୁବିଧାରେ ପାଠ ପଢୁଛି । ଯଦି ଜଣେ ଝିଅପିଲା ଏପରି ପରିଶ୍ରମ କରି ମଣିଷ ହେବାକୁ ଉଦ୍ୟମ କରୁଛି, ତୁମେ ପୁଅପିଲା ହୋଇ ପଛେଇ ପରାଜିତ ହୋଇଯାଉଛ କାହିଁକି ?" କଥାଟି ସେତେବେଳେ ମୋ ମନକୁ ବେଶ୍ ପାଇଥିଲା ।

ଏମ୍.ଏ. ପରୀକ୍ଷା ପରେ ଦୁଇ/ତିନିମାସ ମଧ୍ୟରେ ନୀହାରିକା ମୋତେ ପ୍ରେରଣା ଦେଇ, ଉତ୍ସାହ ଦେଇ କେତୋଟି ଚିଠି ପଠାଇଛି । ମୁଁ ମଧ୍ୟ ତା' ସହିତ ଯୋଗାଯୋଗ ରଖିଥିଲି । ମାତ୍ର ମୁଁ ଏପରି ଏକ ଖିଆଲି ଚରିତ୍ର ଯେ ସବୁ ସମୟରେ ଜଣକ ସହିତ ଯୋଗାଯୋଗ ରଖିପାରେନାହିଁ । ମୁଁ ପ୍ରାୟ କର୍ମଚାପରେ ଅଧ୍ୟୟନ ନିଶାରେ ତାକୁ ଭୁଲିଯାଇଥିଲି । ନୀହାରିକା ସହିତ ୧୯୭୮ ସେପ୍ଟେମ୍ବର ପରେ ଆଉ ଦେଖା ହୋଇନାହିଁ । ସେ ମୋ କଥା କେତେ ମନେରଖିଥିଲା, କେତେ ଭୁଲିଥିଲା ତା' ମୁଁ ଜାଣିନାହିଁ । ତା'ର ଚିଠି ମୋ ପାଖରେ ନାହିଁ । ଆଜି ସେଗୁଡ଼ିକ ଥିଲେ ଅବଶ୍ୟ ପ୍ରକାଶ କରିଥାଆନ୍ତେ ନୀହାରିକାର ଆଦର୍ଶ, ଚିନ୍ତା ଓ ତା'ର ପ୍ରେରଣା । ମୁଁ ତା'ର କୌଣସି ସଂପର୍କୀୟ ନୁହେଁ; କଲେଜ ଓ ବିଶ୍ୱବିଦ୍ୟାଳୟରେ ୬ବର୍ଷର ସଂଯୋଗ । ତା'ର ମୋ ପରି ହତଭାଗ୍ୟ, ଖିଆଲି ସହପାଠୀକୁ ମନେରଖିବାର ହୁଏତ ଆବଶ୍ୟକତା ନଥିଲା । କିନ୍ତୁ ସେ ମୋତେ ଯେପରି ଉତ୍ସାହ ଦେଇଥିଲା, ମୋ ମନରେ ଆଗେଇବାର ପ୍ରବୃତ୍ତି ଜନ୍ମାଇଥିଲା, ତା' ହୁଏତ ମୋର ଭଉଣୀ ଥିଲେ କରିପାରିଥାଆନ୍ତା କି ନା ସନ୍ଦେହ ।

ତା'ର ମୃତ୍ୟୁ ମୋତେ ବିହ୍ୱଳ କରେ । ସେ ମୋ ଆଗରେ ଛାଇ । କିନ୍ତୁ ଏ ଛାଇ ମୋ ଚିର ସଂଗ୍ରାମପଥର ଏକ ପବିତ୍ର ମାଇଲଖୁଣ୍ଟ । ଯେଉଁ କେତେଜଣ ବନ୍ଧୁଙ୍କୁ ମୋ ଜୀବନର ଆଦ୍ୟପାଦରେ ପାଇ ମୁଁ ଆନନ୍ଦିତ, ଯେଉଁମାନଙ୍କର ସହଯୋଗରେ ମୋର ଜୀବନ ଗଠିତ, ସେମାନଙ୍କ ମଧ୍ୟରେ ଶ୍ରଦ୍ଧେୟା ନୀହାରିକା ଏକାନ୍ତ ଅବିସ୍ମରଣୀୟା । ଆଜି ତା'ର ଅନୁପସ୍ଥିତି ମୁଁ ଅନୁଭବ କରୁଛି ଏ ଲେଖା ଲେଖିବାବେଳେ । ତା'ର ଆତ୍ମା ସଦ୍‌ଗତି ଲାଭ କରୁ । ତା'ର ପରିବାରବର୍ଗ ଶାନ୍ତିର ପଥରେ ଅଗ୍ରସର ହୁଅନ୍ତୁ । ତା'ର ସ୍ମୃତି ଆମ ଚିନ୍ତାଜଗତରେ ଚିରଦେଦୀପ୍ୟମାନ ହୋଇରହୁ ।

*ଇତିହାସ ବିଭାଗ*
*ବି.ଜେ.ବି. କଲେଜ*
*ଭୁବନେଶ୍ୱର- ୭୫୧୦୧୪*



# ହଜିଯାଇଥିବା ମୁହଁଟିଏ

*ଅଧ୍ୟାପକ ଦୟାନିଧି ପାଢ଼ୀ*

ଠିକ୍ ବର୍ଷକ ତଳେ ଶୀତୁଆ ଡିସେମ୍ବର ୧୪ର ନିଷ୍ଠୁର ପରିହାସର ସ୍ୱର ସଂଚରିଗଲା ବାୟୁ ତରଙ୍ଗରେ । ଦୀର୍ଘ ଦିନର ପରିଚିତ ବାନ୍ଧବୀ ଓ ବନ୍ଧୁପତ୍ନୀର ମୁହଁଟି ଚିରଦିନ ପାଇଁ କେଉଁ ଗହଳି ମଧ୍ୟରେ ଲୁଚିଗଲା । ଯେତେ ଖୋଜିଲେ ବି ଆଉ ଠାବ କରି ହେଉନି । ବ୍ୟର୍ଥ ହୁଏ ସମସ୍ତ ଚେଷ୍ଟା ଆଉ ଉଦ୍ୟମ । ସବୁ ଅସ୍ୱାଭାବିକ ଲାଗୁଛି ଆଜି । ନିଃସହାୟ କରି ବନ୍ଧୁଙ୍କୁ ମୋର ଆଖିରୁ ଅଦୃଶ୍ୟ ହୋଇଗଲା ମୋର ସହପାଠିନୀ, ବାନ୍ଧବୀ ନୀହାରିକା । ଦୈନିକ 'ସମାଜ' ପୃଷ୍ଠାରୁ ଦୁଇଦିନ ପରେ ଏ ଖବର ପଢ଼ିଲି । ମୋତେ ସବୁ ମିଛମିଛ ଲାଗିଲା । ବିଶ୍ୱାସ କରିହେଲାନାହିଁ । ଅନୁଚ୍ଚାରିତ ପ୍ରାଣହୀନତା ମଧ୍ୟରେ ଗତି କଲି ବେଶ୍ କିଛି ସମୟ । ଭାବିଲି, ଯେମିତି ଗୋଟେ ଛୋଟ ପୃଥିବୀରେ ନିଆଁ ଲାଗିଗଲା ।

ପ୍ରକୃତିରେ ସବୁ ନିୟମ ଧରାବନ୍ଧା । ସାଗର ବକ୍ଷରେ ଢେଉ ଆସେ, କିନ୍ତୁ ସବୁ ଢେଉ କୂଳ ଛୁଏଁନି । ଘରକରଣାର ଛୋଟମୋଟ ଜଞ୍ଜାଳ ମଧ୍ୟରେ ବାନ୍ଧି ହୋଇ ନୀହାରିକା ବା କେତେ ସ୍ୱପ୍ନ ଦେଖୁନଥିବ ! ପିଲା ବଡ଼ ହେବେ, ମଣିଷ ହେବେ, ମା' ବୋଲି ଡାକି ତାକୁ ରାଜରାଣୀ ଆସନରେ ବସାଇବେ । କିନ୍ତୁ କ'ଣ ହେଲା ? ସେ ସରାଗ ଡାକ ପିଲାଙ୍କ ମୁହଁରୁ ଛଡ଼ାଇନେଇ କେତେ ଦୂରକୁ ଚାଲିଗଲା ସତରେ ! ହାତ ବଢ଼ାଇଲେ ବି ପାଏନା । ପାରିବାରିକ ସତ୍ୟ ଓ ନିୟମରେ ବନ୍ଧା ହୋଇ ମୁଁ ଦେଖିଛି ଗତ ୧୭ବର୍ଷ ଧରି ସେ ଭାତ ରାନ୍ଧେ, ଲୁଗା କାଚେ, ଘର ଝାଡ଼େ, ପୁଣି ସ୍ୱପ୍ନ-ମନ୍ଦିରର ଠାକୁରଙ୍କ ପାଇଁ ଫୁଲ ତୋଳେ, ଦିଅଁପୂଜା କରେ । ଏହା ସତ୍ତ୍ୱେ ଅଧ୍ୟାପିକା ବୃତ୍ତି କରେ । ସେହି କଟକ ସିଟି କଲେଜରେ କେତେ ଝିଅପୁଅଙ୍କ ମାଟିପିତୁଳା ଗଢ଼ିଛି, ଚରିତ୍ର ସୁଧାରିଛି । ଅମାୟିକ, ସରଳ, ନିଷ୍କପଟ ଚରିତ୍ର ତା'ର । ଛାତ୍ରଛାତ୍ରୀ, ବନ୍ଧୁବର୍ଗ, ପରିବାରର ସମସ୍ତ ସଦସ୍ୟଙ୍କୁ ତା'ର ହସହସ ମୁହଁ, ସୁମଧୁର ବ୍ୟବହାର, ସୁମିଷ୍ଟ ପରିଭାଷା ମାଧ୍ୟମରେ ସେ ବାନ୍ଧିରଖିପାରିଥିଲା ।

ମୋର ସେ ଥିଲା ସହପାଠିନୀ ବାଣୀବିହାରରେ ପଢୁଥିଲାବେଳେ । ଦୁହିଁଙ୍କର ଏକା ସ୍ପେଶାଲ୍ ପେପର୍ ଥିଲା । ସବୁ କ୍ଲାସ୍‌ରେ ମୁଁ ଦେଖୁଥାଏ, ସେ ଏକ ଭିନ୍ନ ରୁଚିର ଝିଅ । ସବୁବେଳେ ହସିଲା ମୁହଁ, ଧୀର କଅଁଳିଆ କଥା । ଏକା ସାଙ୍ଗରେ ଆମେ ପିକ୍‌ନିକ୍ ଯାଇଛୁ, ପାଠପଢ଼ା ଆଲୋଚନା କରିଛୁ । ତା'ର ବେଶ୍ ସଂଭ୍ରମ ଓ ଭଦ୍ରାମିର କଥା ସମସ୍ତଙ୍କୁ ବିମୁଗ୍ଧ କରିଥିଲା ଛାତ୍ର ଜୀବନରେ ।

ତା'ର ଚାକିରି ଜୀବନରେ କିଛି ବର୍ଷ ପରେ ମୁଁ ଆବିଷ୍କାର କଲି, ମୋର ବନ୍ଧୁ ଦର୍ଶନ ବିଭାଗର ନାରାୟଣ ବାବୁଙ୍କ ପତ୍ନୀ ସିଏ । ହଠାତ୍ ଦିନେ କଟକରେ ତାଙ୍କ ଘରେ ଦେଖି ଅବାକ୍ ହେଲି । ସେତେବେଳକୁ ସେ ଦୁଇଟି ପୁତ୍ରସନ୍ତାନର ଜନନୀ । ମୋର ବଲାଙ୍ଗୀର ରହଣୀ ମଧ୍ୟରେ ଛଅବର୍ଷ ବିତିଯାଇଥିଲା । ତେଣୁ ନାରାୟଣ ବାବୁ କିମ୍ବା ନୀହାରିକା ସଂପର୍କରେ ଜାଣିବା ସମ୍ଭବ ନଥିଲା । ତା'ପରେ ଯେତେଥର ନଦିଆ ନିବାସ ଘରକୁ ଯାଏ, କେବେ ବି ନଖାଇଲେ ସେ ଯିବାକୁ ଦିଏନା । କ୍ରମଶଃ ମୋ ସହିତ ଘନିଷ୍ଠତା ବଢ଼ିଯାଇଥିଲା । ତା'ର ଛଳନା ବିହୀନ ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ମାନସପଟରେ ଲାଖିରହିଗଲା ।

ସତରେ ନୀହାରିକା ଚାଲିଯିବାର ଗୋଟିଏ ବର୍ଷ ପୂରିଗଲା । ସଂସାରର ସବୁ ବୋଝ ମୋ' ବନ୍ଧୁଙ୍କ ପିଠିରେ ଲଦିଦେଇ ମହାଯାତ୍ରୀ ସାଜିଲା । ମୋର ବନ୍ଧୁଙ୍କର ପକ୍ଷ କ୍ଲାନ୍ତ ହେବାଯାଏ ସେ ବୋଝ ବୋହି ଚାଲିଥିବେ, ସେଇ ଅସ୍ତଗାମୀ ନୀହାରିକାର ରଙ୍ଗ ମାଖି ।

ସମୟର ଥଣ୍ଡାହାତ ସମସ୍ତଙ୍କ କପାଳକୁ ଆଉଁସିଥାଏ । କିନ୍ତୁ ମୁଁ ଭାବିନଥିଲି ଏତେ ଶୀଘ୍ର ନୀହାରିକା ସମସ୍ତଙ୍କୁ ଜଞ୍ଜାଳଦରିଆ ମଝିରେ ଛାଡ଼ିଦେଇ ଚାଲିଯିବ ଦୂର ଦିଗ୍‌ବଳୟ ସେପାରିକୁ ।

ସେହି ଅଜଣା ଅଦେଖା ଶକ୍ତି ତାକୁ ଶାନ୍ତିର ବୋଇତରେ ଭସାଇନେଇଛି ଏ ଶଠତାପୂର୍ଣ୍ଣ, ଛଳନାମୟ ସଂସାର ମଧ୍ୟରୁ । ତା'ର ଆତ୍ମା ଶାଶ୍ୱତ ଶାନ୍ତି ଲାଭ କରୁ-ଏହା ହିଁ ଆଜି ଦିନରେ ମୋର ଏକାନ୍ତ କାମନା ।

*ଇତିହାସ ବିଭାଗ*
*ଫକୀର ମୋହନ କଲେଜ*
*ବାଲେଶ୍ୱର-୭୫୬୦୦୧*



# ନୀରୁକୁ ପଦେ

*ଡକ୍ଟର ସତ୍ୟଭାମା ପତି*

ନୀହାରିକାରୁ ତୁ ନୀରୁ କେବେ ହେଲୁ ?

ସେ କଥା ମୋର ଏବେ ମନେପଡୁନି । କିନ୍ତୁ ଛଅମାସ ତଳେ ନାରାୟଣ ବାବୁ ତୋ ପାଇଁ କିଛି ଲେଖିବାକୁ କହିଲାବେଳେ ସାଙ୍ଗେସାଙ୍ଗେ ହଁ କହିବା ସହ ମୋର କଣ୍ଠ ବାଷ୍ପରୁଦ୍ଧ ହେଇଯାଇଥିଲା । ମାତ୍ର ତୋର ମୃତ୍ୟୁରେ ମୁଁ ଲେଖିବି– ଏହା କେମିତି ଅସମ୍ଭବ ମନେହେଲା । ସେତେବେଳେ ଭାବିଲି, ସେ ତ ନୀହାରିକା ପାଇଁ ଲେଖା ମାଗୁଛନ୍ତି । ତେଣୁ ମୁଁ ନୀରୁ ପାଇଁ ଏତେ ବ୍ୟସ୍ତ ହେବାର କାରଣ ନାହିଁ । ନୀରୁ ତ ମୋର ସମ୍ପୂର୍ଣ୍ଣ ନିଜସ୍ୱ– ତା'ର ମୃତ୍ୟୁ ନାହିଁ । ମୋର ଜୀବନ ସତ୍ତା ସହ ଅଙ୍ଗାଙ୍ଗୀଭାବେ ଜଡ଼ିତ ଏଇ ଅନୁଭବଟି ପାଇଁ ମୃତ୍ୟୁର ଅବତାରଣା ସମ୍ପୂର୍ଣ୍ଣ ଭାବେ ଭିତ୍ତିହୀନ ।

୧୯୭୫ ମସିହାର ଦ୍ୱିତୀୟାର୍ଦ୍ଧରେ ତୋ ସହ ମୋର ପରିଚୟ ହୋଇଥିଲା... ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଇତିହାସ ବିଭାଗରେ ଆଡ଼ମିଶନ୍ ନେଲାବେଳେ । ହଷ୍ଟେଲରେ ରହିବାର ପ୍ରଶ୍ନ ଉଠିଲାବେଳେ ତୋ ନାଁ ଏବଂ ମୋ ନାଁ ତଳଉପର ହୋଇ ରହିଲା । ସେତେବେଳେ ଭାବିଲି, ଆମେ ଦୁଇଜଣ ବୋଧହୁଏ ଗୋଟିଏ ହଷ୍ଟେଲରେ ରହିବା । ଯେତେବେଳେ ଗୋଟିଏ ହଷ୍ଟେଲ ଏବଂ ଗୋଟିଏ ରୁମ୍‌ରେ ଆମେ ରହିବା ସ୍ଥିର ହେଲା, ସେତେବେଳେ ମୁଁ ଜୀବନର ଏକ ଭିନ୍ନ ମୋଡ଼ରେ ଠିଆ ହୋଇଥିଲି । ପ୍ରତିଟି ମୁହୂର୍ତ୍ତ ମୋ ପାଇଁ ସଂକଟପୂର୍ଣ୍ଣ ଥିଲା ଏବଂ ମୋ ପାଇଁ ଜଣେ ପ୍ରକୃତ ବନ୍ଧୁର ଆବଶ୍ୟକତା ଥିଲା । ସେଇ ଅଭାବନୀୟ ପରିସ୍ଥିତିରେ ତୁ ଯେ ମୋ ପାଇଁ ଭଗବାନ୍‌ଙ୍କଦ୍ୱାରା ଅଭିପ୍ରେତ ଏକ ନିଷ୍ଠାପର ସାଥୀ ଥିଲୁ, ସେ କଥା ପ୍ରତିମୁହୂର୍ତ୍ତରେ ମୋ ପାଇଁ ସ୍ମରଣୀୟ ହୋଇ ରହିଛି ଏବଂ ରହିବ ମଧ୍ୟ । ମୋ ଜୀବନରେ ତୋର ଅବଦାନ ତୋଠାରୁ ବୋଧହୁଏ ମୁଁ ବେଶି ଜାଣିଛି । ସେଥିପାଇଁ ମୋର ଅନୁଭବ, ଭଗବାନ୍ ମୋତେ ମୋଠାରୁ ଭଲ ସାଙ୍ଗ ଦେଇ ମୋ ଜୀବନକୁ ସମୃଦ୍ଧ କରିଛନ୍ତି । ମୋ ଜୀବନରେ ସବୁଠାରୁ ଅମୂଲ୍ୟ ସମ୍ପଦ ହିସାବରେ ତୋର ବନ୍ଧୁତ୍ୱ ହିଁ ମୋତେ ଚିରଦିନ ଋଣୀ

କରିରଖିଥିବ । ୧୯୭୬ ମସିହା ମାର୍ଚ୍ଚ ମାସ ଆଠ ତାରିଖର ପୂର୍ବଦିନ ସନ୍ଧ୍ୟା– ହୁଏତ ସେ ଘଟଣାସବୁ ଗୋଟେଗୋଟେ ଚଳଚ୍ଚିତ୍ର ଭଳି ଲାଗୁଛି । ତଥାପି ଜଣେ ସାଙ୍ଗ ଯେ ଜଣେ ସାଙ୍ଗ ପାଇଁ ଏତେ ବେଶି କରିପାରେ ସେଇଟା ଏ ସମୟରେ ଅବିଶ୍ୱାସ୍ୟ ମନେହେଉଛି । କିନ୍ତୁ ସେ କଥାର ସତ୍ୟତା ତଳି, ପ୍ରେମ, ମୋର ସ୍ୱାମୀ ଏବଂ ମୁଁ ଅଙ୍ଗେ ଲିଭେଇଛୁ । ତୁ କହ– ଏତେସବୁ ଅନୁଭବ, ଏତେସ୍ୱବୁ ସ୍ମୃତିର ମୃତ୍ୟୁ କ'ଣ ସମ୍ଭବ? ତୁ ଆଗ ଚାଲିଗଲୁ । ଆଉ କିଛି ଦିନ ପରେ ମୁଁ ମଧ ଯିବି । କିନ୍ତୁ ତତେ ଚିରଦିନ ସ୍ମୃତି ମାଧ୍ୟମରେ ବଞ୍ଚେଇ ରଖିବା ପାଇଁ ମୁଁ ମୃତ୍ୟୁ ପର୍ଯ୍ୟନ୍ତ ବାଧ୍ୟ ହେବି ।

ବାଣୀବିହାରରୁ ଏମ୍.ଏ. ପଢ଼ା ସରିଲାପରେ ଘଟଣାଚକ୍ରରେ ଆମେସବୁ ଅଲଗା ହୋଇଯାଇଥିଲେ ମଧ୍ୟ ମାନସିକ ସ୍ତରରେ ବେଶି ନିକଟରେ ଥିଲେ । ତୋର ମୃତ୍ୟୁର ପରଦିନ ସକାଳେ ଏ ଦାରୁଣ ଖବର ସନ୍ଧ୍ୟାଠାରୁ ପାଇ ମୁଁ ସ୍ଥିର ହୋଇଗଲି । ଭୀଷଣ ରାଗଲାଗିଲା ତୋ ଉପରେ । କାରଣ ତୁ କେବଳ ତୋ ନିଜକଥା ଭାବିଲୁ କେମିତି ? ଦେବପ୍ରତିମ ନାରାୟଣ ବାବୁ ଏବଂ ତୋ ରକ୍ତମାଂସରେ ଗଢ଼ା ଦୁଇଟି କଣ୍ଢେଇଙ୍କ ପାଇଁ ତୁ ଦୁଃଖର ପାହାଡ଼ ଠିଆ କରାଇଦେଲୁ । ମତେ ଆଶ୍ଚର୍ଯ୍ୟ ଲାଗିଲା– ଗୋଟିଏ ସାଙ୍ଗ ପାଇଁ ସମସ୍ତ ସାମାଜିକ ବନ୍ଧନ ଅତିକ୍ରମ କରି ଅସମ୍ଭବକୁ ବିଜ୍ଞଲୋକ ଭଳି ସମ୍ଭବ କରିପାରିଥିବା ଝିଅ ନିଜ ଜୀବନର ମଧ୍ୟାହ୍ନରେ ନିଜର ପ୍ରାଣପ୍ରତିମମାନଙ୍କୁ ଠକିପାରିଲା କେମିତି ? ଏକଥା ତୋଦ୍ୱାରା କେମିତି ସମ୍ଭବ ହେଲା ନୀରୁ? ହୁଏତ ଅତ୍ୟନ୍ତ ନିରୁପାୟ ହୋଇଗଲୁ । ନହେଲେ କିଛି ମହତ୍ ଉଦ୍ଦେଶ୍ୟ ରଖି ତୁ ଏ ପଦକ୍ଷେପ ନେଇଛୁ । ତୋ କଥା ତୁ ହିଁ ଜାଣୁଛୁ; କାରଣ ତୋ ପାଖକୁ ନଗଲେ ତ ଏ ଉତ୍ତର ପାଇବା ସମ୍ଭବ ନୁହେଁ ।

ଏଇଠି ରହି ଭଗବାନ୍‌ଙ୍କୁ ପ୍ରାର୍ଥନା କରୁଛି– ତୁ ଶାନ୍ତିରେ ମହାଶାନ୍ତି ଆଡ଼କୁ ଗତି କର ଏବଂ ତୋର ଆତ୍ମା ମୋକ୍ଷଲାଭ କରୁ ।

॥ ଇତି ॥

ତୋର

ସତ୍ୟ

*ଇତିହାସ ବିଭାଗ*

*ରେଭେନ୍‌ସା ପ୍ରାତଃ ମହାବିଦ୍ୟାଳୟ, କଟକ- ୭୫୩୦୦୩*



# ସରଗପୁରୀକୁ ଚିଠି ଖଣ୍ଡେ

*ଶ୍ରୀମତୀ ମେନକା ସୁନ୍ଦରୀ ରଥ*

ଇଲାଲୋ,

ବୁକୁରେ ବୁକୁଏ କୋହ, ଆଖିରେ ଆଖିଏ ଲୁହ ନେଇ ଲେଖୁଛି– ଏ ଚିଠି ଖଣ୍ଡକ ତୋ ପାଖକୁ ଶେଷଥର ପାଇଁ । ଏମିତି ଏକ ଅସମୟରେ ତୁ ସମସ୍ତଙ୍କୁ ଛାଡ଼ି ଚାଲିଗଲୁ; ଏତେ ପାଖରେ ଥାଇ ମଧ୍ୟ କିଛି ବି ଟିକେ କହିଲୁନି । ଆଜି ମୁଁ ଠିକ୍ ବୁଝୁଛି ତୁ କାହିଁକି ଆସିନଥିଲୁ ମୋ ପୁଅ ବ୍ରତଘରକୁ । କିନ୍ତୁ ମୁଁ ତୋ ଉପରେ ରାଗିଯାଇ ତତେ ଦେଖା ମଧ୍ୟ କଲିନି । ସେଥିପାଇଁ ତୁ ସରଗରେ ଥାଇ କ୍ଷମା ଦେବୁ କି ନାହିଁ ଜାଣେନା । ମୁଁ କିନ୍ତୁ ଅନୁତାପ କରୁଛି ।

ମୋ ଆଖି ଆଗରେ ଦେଖାଯାଉଛି ବୋଧପୁର ଗାଆଁ, ମହାଦେବ ଆମ୍ବତୋଟା, ଆମଗାଆଁ ସ୍କୁଲ, ନାନପୁର ସ୍କୁଲ, ବାଣୀ ବିହାର, ମିନି ଘର, ମାତା ଘର ଆଉ ଝାଞ୍ଜିରୀମଙ୍ଗଳାର ନଦିଆ ନିବାସ ଓ କକେଇଙ୍କ ଘର, ଯେଉଁଠି ତୋର ସ୍ମୃତିସବୁ ଜଡ଼ିତ । ମାତା, ମିନି ସମସ୍ତେ ଶୁଣିଲେ; ସମସ୍ତେ ସ୍ଥାଣୁ ପାଲଟିଗଲେ । କେମିତି ତୁ କାହାକୁ ଟିକେ କିଛି ବି କହିଲୁନି ? ତୋର ମୋର ସାଙ୍ଗ ହୋଇ ଏକାଠି ପଢୁଥିଲେ ନା ? ଦି'ନମ୍ବର ତିନିନମ୍ବର ତୋଠାରୁ ଅଧିକା ରଖୁଥିଲି ବୋଲି ତୁ ଏମିତି ଭାବରେ ମତେ ପଛରେ ପକେଇ ଆଗେଇଗଲୁ । ତୁ ତ ଏମିତି ନଥିଲୁ । ମାଟ୍ରିକ ପରୀକ୍ଷା ବେଳ କଥା ମନେପଡ଼େ । "ଆ ଇଲା, ଡେରି ହେଲାଣି, ପଢ଼ିବା ।" ତୁ କିନ୍ତୁ ଗାଈମାନଙ୍କୁ ପିଇବାକୁ ନଦେଇ କେବେ ବି ପଢ଼ିବସୁନି । ଗୋସେବାଠାରୁ ପରା ଧର୍ମ ନାହିଁ ? କାହିଁକି ଏତେ ନିର୍ଦ୍ଦୟ ହୋଇ ତୋର ପିଲାଛୁଆ ସଂସାର ଠାକୁରେ ଭସେଇଦେଲେ ! ଆଜି ତୋର ପିଲାଙ୍କୁ ଦେଖିବାର ସାହସ ମୋର ନାହିଁ କିମ୍ବା ତୋର ବାପାବୋଉଙ୍କୁ ଦେଖା କରିବାର ସାହସ ମଧ୍ୟ ମୋର ନାହିଁ ।

ତୁ ଚାଲିଗଲୁ ଅହ୍ୟରାଣୀ ହୋଇ– ଯାହା ଲାଭ କରିବା ପାଇଁ ସବୁ ସ୍ତ୍ରୀଙ୍କର କାମନା ଥାଏ । କିନ୍ତୁ ସମସ୍ତେ ତ ସେ ଗୌରବର ଅଧିକାରିଣୀ ହୋଇପାରନ୍ତିନି । ତୁ କିନ୍ତୁ ଜିତିଗଲୁ । ତୁ ପରମ ସୁଖୀ । ସଂସାରର ଆବିଳତାରେ କାହିଁକି ବା ତୁ ଘାଣ୍ଟି

ହୋଇଥାନ୍ତୁ ? କେତେଟା ଦିନରେ ତୁ ତୋର ସବୁ ସୁଖ ହାସଲ କରି ଏମିତି ବାଟରେ ଚାଲିଗଲୁ ଯେଉଁ ବାଟରୁ କି କେହି କେବେ ପଛକୁ ଫେରି ଚାହେଁ ନାହିଁ ।

ସତ କହିଲୁ ଇଲା ତୋର ସେଠି କିଛି ବି କାହା କଥା ମନେପଡ଼େନି ? ଆତ୍ମା ପରା ଅମର, ଅବିନଶ୍ୱର । କେତେ କଷ୍ଟ କରିଥିଲୁ ପୁଅଦୁଇଟିଙ୍କ ପାଇଁ, କେତେ ବ୍ୟସ୍ତ ହେଉଥିଲୁ ସି.ଡ଼ି.ଏ. ଜାଗା ପାଇଁ, କେତେ ବିଶ୍ୱାସ ଭରିରଖିଥିଲୁ ତୋ ସ୍ୱାମୀଙ୍କ ସ୍ନେହରେ । ସବୁକିଛିର ମମତା କେମିତି ଏତେ ଶୀଘ୍ର ତୁଟାଇ ଦେଲୁ !

ମୁଁ ଜାଣୁଛି ଇଲା ତୁ ଆଉ ଫେରିବୁନି । ତୁ ଅନନ୍ତ ପଥର ଯାତ୍ରୀ ହୋଇଛୁ । ତୁ ପରମ ସୌଭାଗ୍ୟବତୀ । ଆଚ୍ଛା ଇଲା, ପିଲାଦିନେ ଥରେ ଆମେ କଥାବାର୍ତ୍ତା ହେଉଥିଲେ ନା – "ଯେତେ ଲୋକ ମରନ୍ତି ସମସ୍ତେ ଆକାଶରେ ତାରା ହୋଇଯା'ନ୍ତି ।" ଆଜି ଯଦି ତୁ ପ୍ରକୃତ ସେଇଆ ହୋଇଥାଉ ତା'ହେଲେ ତୋର ମିଞ୍ଜିମିଞ୍ଜି ଆଲୋକରେ ନିଶ୍ଚୟ ଦେଖିପାରୁଥିବୁ ତୋ ପାଇଁ ତୋ ସ୍ୱାମୀ, ପୁଅଦୁଇଟି, ଆତ୍ମୀୟସ୍ୱଜନଙ୍କ ସହ ସାଙ୍ଗସାଥୀମାନେ କିପରି ତତେ ଝୁରି ହେଉଛନ୍ତି ।

ଅମାନିଆ ଲୁହଗୁଡ଼ିକ ସଂଘର୍ଷରତ ତଳକୁ ଆସିବା ପାଇଁ । ତଥାପି ମୁଁ ଲେଖୁଛି । ଠିକ୍ ୧୫ ଦିନ ପୂର୍ବରୁ ମୁଁ ଶୁଣିଥାଏ ବେବିଦେଈ କଥା । ସେତେବେଳେ ମୋ ମନର ଅବସ୍ଥା ଯାହା ଥିବ । ତା'ପରେ ପୁଣି ତୋ କଥା ଶୁଣି ନିଜର ଭାରସାମ୍ୟ ହରାଇଲା ପରି ଲାଗିଲା । ସବୁବେଳ ପାଇଁ ବୋଧପୁରର ଅନେକ ସ୍ମୃତି ମାନସପଟରେ ଉଙ୍କିମାରି ଉଭେଇଗଲା । ଯେମିତି ଲାଗିଲା ସବୁର ମାୟା ମୋ ପାଖରୁ ଦୂରେଇଦୂରେଇ ଯାଉଛି । କିନ୍ତୁ ଆଜି ମୁଁ ପ୍ରକୃତିସ୍ଥ । ଆଜି ମୁଁ ଭାବୁଛି ନୀହାରିକା ଅନନ୍ତ ଆକାଶରେ ନିଜକୁ ମିଶାଇଦେଇଛି । ସେ ଆଜି ବନ୍ଧନମୁକ୍ତ । କାହାରି ଆଖିର ଲୁହ, ଅନ୍ତରର କୋହ ତାକୁ ଫେରାଇପାରିବନି । ତେଣୁ ଈଶ୍ୱରଙ୍କୁ ଡାକୁଛି ସେ ତୋର ମୃତ୍ୟୁପଥ କୁସୁମିତ କରନ୍ତୁ । ତୋର ଆତ୍ମା ସଦ୍‌ଗତିପ୍ରାପ୍ତ ହେଉ । ଆମ ପ୍ରତ୍ୟେକଙ୍କ ଆଖିର ଲୁହ ତୋର ପୂଜାଫୁଲ ହେଉ ।

॥ ଇତି ॥

ତୋର

ମିନି

*ଗୋପବନ୍ଧୁ ବାଳିକା ଉଚ୍ଚବିଦ୍ୟାଳୟ*
*ଚଂପତି, ଜିଲ୍ଲା-କଟକ*



# ଆଦରର ନୀହାରିକା

*ଶ୍ରୀମତୀ ସରୋଜିନୀ ତ୍ରିପାଠୀ*

ଆଦରର ନୀହାରିକା,

ତୋର ସେହି ଅଭୁଲା ସ୍ମୃତିକୁ ମନେପକାଇ ମୁଁ ଆଜି କେଇଧାଡ଼ି ଲେଖିବା ପାଇଁ ଯାଉଛି । ଜାଣେନା, ତା'ର ଶେଷ କେଉଁଠି ହେବ ।

ତୁ ଥିଲୁ ମୋର କଲେଜ ଜୀବନର ସହପାଠିନୀ । ଦୀର୍ଘ ଚାରିବର୍ଷ କାଳ ସାଙ୍ଗ ହୋଇ ପଢ଼ିଥିଲେ ଏସ୍.ଭି.ଏମ୍. କଲେଜ, ଜଗତ୍‌ସିଂହପୁରରେ । ତୋର ବ୍ୟବହାର, ଚାଲିଚଳନ କିପରି ଥିଲା ତାହା ତୋ ସଙ୍ଗେ ନମିଶିଥିବା ଲୋକେ ଭାବି ବି ପାରିବେନାହିଁ । ଇତିହାସ (ଅନର୍ସ) ଛାତ୍ରୀ ଭାବରେ ଆମର କଟିଥିଲା ଦୁଇବର୍ଷ । ଗୋଟିଏ ଗ୍ରୁପ୍‌ରେ ଆମେ ରହିଥିଲେ ତିନିଜଣ । କେତେ ହସଖୁସି, ମଉଜମଜଲିସ୍‌ରେ କଟାଇଦେଇଥିଲେ ସେହି ଦିନଗୁଡ଼ିକୁ । ସେହି ସ୍ମୃତି ଏବେ ମନେପଡ଼ିଲେ ମନ ଚହଲିଯାଏ । କିନ୍ତୁ ଏସବୁଠାରୁ ତୁ ଆଜି ବହୁତ ଦୂରରେ... ପରୀକ୍ଷା ସରିବା ପରେ ପରସ୍ପରଠାରୁ ଦୂରେଇଯାଇଥିଲେ ବି କେହି କାହାକୁ ପାସୋରିଦେଇ ପାରିନଥିଲେ । ଶେଷରେ ତୁ ହେଲୁ ଜଣେ ଅଧ୍ୟାପିକା ଏବଂ ଜଣେ ଅଧ୍ୟାପକଙ୍କ ସହଧର୍ମିଣୀ ।

ହଠାତ୍ ତୁମ ପରିବାର ସହିତ ମୋର ସଂପର୍କ ପୁଣି ଥରେ ନିକଟତର ହୋଇଗଲା । ତୋ ବିଷୟରେ ସେମାନଙ୍କଠାରୁ ଶୁଣି ମୁଁ ବହୁତ ଖୁସି ହୋଇଥିଲି ଏବଂ ଭାବିଥିଲି ପୁଣି ଥରେ ଆମର ସେହି ବିଗତ ଦିନର ସ୍ମୃତିକୁ ମନେପକାଇ ଆନନ୍ଦ ପାଇବା ବୋଲି । କିନ୍ତୁ ଈଶ୍ୱରଙ୍କର ସେ ଇଚ୍ଛା ନଥିଲା । ତା' ପୂର୍ବରୁ ତୁ ଚିରଦିନ ପାଇଁ ଏ ମରଜଗତରୁ ସମସ୍ତଙ୍କୁ ଦୂରେଇଦେଇ ଆରପାରିକୁ ଚାଲିଗଲୁ । ଖବରକାଗଜରୁ ସେହି ଦୁଃସମ୍ବାଦ ପଢ଼ି ମୋ ମୁଣ୍ଡ ଉପରେ ଆକାଶ ଅଜାଡ଼ି ହେଲା ପରି ଲାଗିଲା । ତାହା ମୁଁ ବିଶ୍ୱାସ କରିପାରିଲିନି । କେବଳ ଆଖିରୁ ଦୁଇଟୋପା ଲୁହ ବ୍ୟତୀତ ମୁଁ ଆଉ କିଛି ଦେଇପାରିଲିନି ।

ଶେଷରେ ଅନେକ ପ୍ରଶ୍ନ । ମୃତ୍ୟୁଦଣ୍ଡରେ ତୁ କାହିଁକି ଦଣ୍ଡିତ ହେଲୁ? ଦୋଷ କ'ଣ ଥିଲା ତୋ'ର? କାହିଁକି ଈଶ୍ୱର ତୋର ସୁନାର ସଂସାରକୁ ଚୂନା କରିଦେଲେ? କିଏ ଦେବ ଏସବୁର ଉତ୍ତର?

ହଁ, ସେହି ପରମେଶ୍ୱର । ତାଙ୍କରି ପାଖରେ ତୋର ଆତ୍ମାର ସଦ୍‌ଗତି କାମନା କରି ରହୁଛି । ଜେମ୍‌ସ ଆର୍ଥର୍ ହାଲାମ୍‌ଙ୍କ ଅନୁସାରେ କହିବାକୁ ହେବ, "Everything has a good purpose." ବାସ୍ ଏତିକି ।

॥ ଇତି ॥

ତୋର

ସରୋଜିନୀ

*ମାର୍ଫତ୍- ଡକ୍ଟର ପ୍ରଫୁଲ୍ଲ କୁମାର ତ୍ରିପାଠୀ*
*ଗ୍ରାମ- ଅଢ଼ଙ୍ଗ ଶାସନ, ପୋ.ଅ.- ଅଣଖିଆ*
*ଜିଲ୍ଲା- ଜଗତ୍‌ସିଂହପୁର, ପିନ୍- ୭୫୪୧୦୨*





# ବିଭୁ ପାଶେ ତାଙ୍କ ଅଳି

ଶ୍ରୀ ବଂଶୀଧର ମିଶ୍ର

ଜୀବନରେ କେବେ ଦେଖିନି ତୁମକୁ
ଭେଟିନି ଥରକ ପାଇଁ
ତୁମ ସାଥେ ଯେଣୁ ନାହିଁ ପରିଚୟ
ଜାଣିବି ଅବା ମୁଁ କାହିଁ ।୧।
ସମ୍ବାଦପତ୍ରରୁ ପଢ଼ିଲି ତୁମର
ଅକାଳ ବିୟୋଗ ବାର୍ତ୍ତା
ସେତେବେଳେ ମୁହିଁ ଜାଣି ଯେ ପାରିଲି
ମୋର ବନ୍ଧୁ ତୁମ ଭର୍ତ୍ତା ।୨।
ବନ୍ଧୁପତ୍ନୀଙ୍କର ବିୟୋଗ ବାରତା
ପଢ଼ି ଅଶ୍ରୁ ଗଲା ଗଡ଼ି
ଦାରୁଣ ସମ୍ବାଦ ପଢ଼ିଲା ମାତ୍ରକେ
ଦୁଃଖ ଗଲା ମୋର ବଢ଼ି ।୩।
ବନ୍ଧୁର ବିପଦେ ସାନ୍ତ୍ୱନା ଦେବାକୁ
ନଥିଲା ମୁଖେ ମୋ ଭାଷା
ଏଡ଼େ ବେଗେ ବନ୍ଧୁ ହେବେ ପତ୍ନୀହରା
ନଥିଲା ମନେ ଏ ଆଶା ।୪।
ଆସିଥିଲ ଯେବେ, ତୁମ କୁଆଁରାବେ
ହସିଉଠିଥିଲା ଘର
ଆଜି ଗଲାବେଳେ କାନ୍ଦିଉଠିଥିଲେ
ତୁମ ପ୍ରିୟ ପରିବାର ।୫।
ସବୁରି ନୟନେ ଅଶ୍ରୁ ଭରିଦେଇ
ନେଲଟି ଚିରବିଦାୟ
ବଡ଼ କ୍ରୂର କାଳ ବଡ଼ ସେ ନିଷ୍ଠୁର
କା' ପ୍ରତି ନୁହେଁ ସଦୟ ।୬।

ନାହିଁ ଦୟାମାୟା କଠୋର ତା' ହିଆ
ବୁଝେନା ସେ କା'ର ଦୁଃଖ
ରଖେ ସେ ପାଚିଲା ବାଛିନିଏ କଞ୍ଚା
ସେଇଥିରେ ତା'ର ସୁଖ ।୭।
ଶିକ୍ଷାର ସର୍ବୋଚ୍ଚ ଉପାଧି ମଣ୍ଡିତ
ହୋଇ ହେଲ ଅଧ୍ୟାପିକା
ଅଧ୍ୟାପିକା ଥାଇ ଶିକ୍ଷାଦାନ ଦେଇ
ନିର୍ବାହ କଲ ଜୀବିକା ।୮।
ତୁମ ଶିକ୍ଷାଦାନ ଅତୀବ ମହାନ
ରଖିଥିଲ ଶିକ୍ଷା ମାନ
ତୁମ ଶିକ୍ଷାଦାନେ ଛାତ୍ରଛାତ୍ରୀମାନେ
ମଣୁଥିଲେ ଭାଗ୍ୟବାନ ।୯।
ଛାତ୍ରସ୍ନେହଶୀଳା ଅଧ୍ୟାପିକା ଭାବେ
ରହିଥିଲା ତୁମ ଖ୍ୟାତି
ସେଇ ଛାତ୍ରଛାତ୍ରୀ ଝୁରୁଛନ୍ତି ନିତି
ତୁମ ସ୍ନେହ-ଶ୍ରଦ୍ଧା-ପ୍ରୀତି ।୧୦।
ତୁମ ବ୍ୟବହାର ଅତୀବ ମଧୁର
ହସହସ ତୁମ ଗୀର
କପଟତାଶୂନ୍ୟ ତୁମ ପ୍ରାଣ, ମନ
ଥିଲ ଶାନ୍ତ-ଶିଷ୍ଟ-ଧୀର ।୧୧।
ସହକର୍ମୀ ସାଥେ ଅଧ୍ୟକ୍ଷ ସହିତେ
ସମସ୍ତଙ୍କ ଥିଲ ପ୍ରିୟ
ଦିନକ ପାଇଁକି କେବେ କାହା ପାଶେ
ହୋଇନ ତୁମେ ଅପ୍ରିୟ ।୧୨।
ଜୀବନ ଯୌବନେ ଦେଲେ ଦେଖା ଜଣେ
ସ୍ୱାମୀ ରୂପେ ନେଲ ବରି
ତୁମେ ଅଧ୍ୟାପିକା ସେ'ତ ଅଧ୍ୟାପକ
ବାହିଲ ସଂସାର ତରି ।୧୩।

ଏକ ନୀଡ଼େ ତୁମେ ଥିଲ ଦୁଇ ପକ୍ଷୀ
ଏକ ବୃନ୍ତେ ଦୁଇ କଳି
ସେ'ତ ନାରାୟଣ ତୁମେ ଥିଲ ଲକ୍ଷ୍ମୀ
ମୁଦ୍ରା-ଦୁଇପାର୍ଶ୍ୱ ଭଳି ।୧୪।
କାୟା ସାଥେ ଛାୟା ପରି ତୁମେ ଥିଲ
କ୍ଷୀର ସାଥେ ନୀର ସମ
ଏକ ମନ, ଏକ ଆତ୍ମା, ଏକ ପ୍ରାଣ
ସହି ନପାରିଲା ଯମ ।୧୫।
କପୋତ-କପୋତୀ ବଗ ଓ ବଗୁଲୀ
ସମ ଥିଲା ତୁମ ଯୋଡ଼ି
ନିମିଷକ ପାଇଁ ହୋଇନାହଁ କେବେ
ଜୀବନରେ ଛଡ଼ାଛଡ଼ି ।୧୬।
ଆଜି କିନ୍ତୁ ତୁମେ ଛାଡ଼ି ଚାଲିଗଲ
ରହିଗଲେ ଏକା ପତି
ଯେ ଶଙ୍ଖା ସିନ୍ଦୂର ଚିହ୍ନ ସଧବାର
ଘେନିଗଲ ଥିଲ ସତୀ ।୧୭।
ଅତୀତର କେତେ ଅପାସୋରା ସ୍ମୃତି
ଗୋଟିଗୋଟି ପଡ଼େ ମନେ
ତାହାସବୁ ଭୁଲି ତୁମେ ଗଲ ଚାଲି
ଭୁଲି ଆପଣାର ଜନେ ।୧୮।
ଯେ ନୀହାରପୁଞ୍ଜ ସଦୃଶ ନକ୍ଷତ୍ରୁଁ
ଆସିଥିଲ ନୀହାରିକା
ସେ ନୀହାରପୁଞ୍ଜେ ଆଜି ମିଶିଗଲ
ସ୍ୱାମୀଙ୍କୁ କରିଣ ଏକା ।୧୯।
ସିଟି କଲେଜର ଗୋଡ଼ିମାଟି ଝୁରେ
ଝୁରେ ବୋଧପୁର ଗାଆଁ,
କିଏ ଆଜି ଆଉ ତାଙ୍କୁ ବୋଧ ଦେବ
ଝୁରିହେବେ ତୁମ ନାଆଁ ।୨୦।

ଝୁରିବେ ତୁମକୁ ତୁମ ପିତାମାତା
ତୁମ ଶ୍ୱଶୁର, ଦେବର
ତୁମ ଛାତ୍ରଛାତ୍ରୀ ସାଥେ ସହକର୍ମୀ
ଝୁରୁଥିବେ ନିରନ୍ତର ।୨୧।
ଶୁଖିଲେ ଶୁଖିବ କାଠଯୋଡ଼ି ନୀର
ଶୁଖିବନି ଆଖି ଲୁହ
ଚିରଦିନ ପାଇଁ ଛୁଟୁଥିବ ସିନା
ସ୍ୱାମୀଙ୍କର ଦୁଃଖ-ସୁଅ ।୨୨।
ଯେ ସ୍ୱାମୀ ଦେବତା ଯା'ଙ୍କ ପାଦେ ମଥା
ନତ ଥିଲା ତୁମ ସଦା
ସେ ସ୍ୱାମୀଙ୍କୁ ତୁମେ ଛାଡ଼ି ଚାଲିଗଲ
ବସାଇ ବାଟରେ ଅଧା ।୨୩।
ଅଧାବାଟେ ବସି ତୁମ ଗୁଣ ଘୋଷି
କରି ନାମ ଜପାମାଳି
କାଟୁଛନ୍ତି ଦିନ ହୋଇ ପତ୍ନୀହୀନ
ଦୁଃଖେ ଦିନ ଯାଏ ଭାଳି ।୨୪।
ଯୁଗେଯୁଗେ ତୁମ ପରି ପତ୍ନୀ ମିଳୁ
ବିଭୁ ପାଶେ ତାଙ୍କ ଅଳି
ତୁମ ଆତ୍ମା ଆଜି ଲଭୁ ଚିରଶାନ୍ତି
ପାଅ ସ୍ୱାମୀ ତାଙ୍କ ଭଳି ।୨୫।

*ସାଧନା କୁଟୀର*
*ପଟାପୋଲ, କଟକ-୭୫୩୦୦୧*



# ସ୍ମୃତି ତବ...

ପ୍ରାଧ୍ୟାପକ ଚୈତନ୍ୟ ପ୍ରସାଦ ସେଠୀ

କେତେ ସ୍ୱପ୍ନ କେତେ ସମ୍ଭାବନା ସତେ !
ପାଣିଫୋଟକା ଏ' ଜୀବନରେ
ରାତି ନପାହୁଣୁ ଏଠି ଦୀପ ଗଲା ନିଭି
ତୁମେ ଚାଲିଗଲ କାହିଁ ଦୂରେ ॥

ସଂକ୍ଷିପ୍ତ ତୁମର ଏଇ ସଂସାରର ଲୀଳା
ତୁମେ କ'ଣ ଆଗୁଁ ଥିଲ ଜାଣି
ସେ ଲାଗି ଯୁ'ଆଡ଼େ ଗଲ, ସବୁଆଡ଼େ
ରଚିଗଲ ସ୍ମୃତି, ତୁମ ଅଲିଭା ବିପଣି !!

ତୁମର ଜୀବନ ଗୀତି, ତୁମ ସ୍ନେହ, ସୋହାଗ ଭାରତୀ
ସଭିଙ୍କୁ କରିଛି ସ୍ତବ୍ଧ; ତୁମ ଅନ୍ତର୍ଦ୍ଧାନ ପରେ ଆଜି
ତୁମର ଅଫେରା ପଥ ଲମ୍ବିଯାଏ ଆମ ଆଗେ ଯାହା
ତୁମ କଥା ଭାବିଦେଲେ ସବୁ ଏଥି ଯାଏ ଅବା ହଜି !

ତୁମେ ଗଲ ବିଭୁ ପଦେ
ମାୟାମୟ ଏ ସଂସାର ଛାଡ଼ି
ସ୍ମୃତି ତବ ରାଜୁଥିବ ଚିରଦିନ
ଆମଲାଗି ଅମଳିନ ଏଠି ।

ତର୍କ ଓ ଦର୍ଶନ ବିଭାଗ
ଢେଙ୍କାନାଳ କଲେଜ
ଢେଙ୍କାନାଳ-୭୫୯୦୦୧



# ଆକାଶର କୋଉ ତାରାଟି ତମେ !

*ଅଧ୍ୟାପକ ହୃଷୀକେଶ ମଲ୍ଲିକ*

କାଗଜ ଉପରୁ ମୁହଁ ଉଠାଇ
ତମ ଅଣ-ଚଉଡ଼ା ଡ୍ରଇଁରୁମ୍ ଆଡ଼େ
ଚାହିଁଲି । ଦେଖିଲି, ଆଉ ପୁରୁଣା ସେଇ
ସୋଫାଟି ଉପରେ ବସି ରହିଚ
ତମେ... ସେ ପାଖେ ନାରାୟଣ ବାବୁ
ଏ ପାଖେ, ମୋ' ସ୍ତ୍ରୀ ମାଣିକ ।
ଶତ୍ରୁକୁ ଆତ୍ମୀୟ କଲା ଭଳି
ପରିଚିତ, ସବୁଦିନିଆ ହସରୁ ଧାରେ
ଲାଖିରହିଛି, ତମ ଓଠରେ
ସେ ଦିନ ପରି, ଆଜି ମଧ... !!

କିଏ ବିଶ୍ୱାସ କରନ୍ତା
ଇୟା ଭିତରେ ତମେ ଚାଲିଗଲଣି !
ଏଇ ପା', ଚା' ବଢ଼େଇଦେଇ
କହିଥିଲ : 'ଦେଖିବେ, ଚିନି ହେଇଚି,
କି' ନା; ଏଇ ଚିନି, ଲୁଣ ନା'
ମତେ ଭାରି ଅଡୁଆ... !'
ଆଜି ବୁଝୁଚି; ତମ କଥାର ଅସଲ, ଦୋସରା ଅର୍ଥ
ଆଜି ବୁଝୁଚି; ଆଉ କୁଆଡ଼େ ଯିବ ବୋଲି
ତମେ ସଜହେଲଣି, ସେ ଦିନରୁ;
ଚିନି, ଲୁଣ ଆଉ, ସଂସାର ଆଡୁ
ମୁହଁ ବୁଲେଇ ସଜଡ଼ାସଜଡ଼ି କଲଣି
ଯିବାବେଳର ଝୁଲିମୁଣି
ତମ ଅନ୍ତଃକରଣରେ !!

ତେବେ କ'ଣ ଜାଣିଜାଣି
ଏତେ କପଟ କଲ, ସେଥର ଆମ ସାଙ୍ଗରେ
'ଯେବେ କଟକ ଆସିବେ, ଆସୁଥିବେ
ଇୟାଡ଼େ' ବୋଲି କହିଲ ଯେ....
ଜୀବନଟା ଏଇମିତି ନା' ସତରେ !
ପୁଅର ପେନ୍‌ସିଲ୍ କଟାକଳ, ରେନୋଲଡ଼୍ ରିଫିଲ୍,
ଜ୍ୟାମିତି ବାକ୍ସ କିଣା ନସରୁଣୁ
ଚାଲିଯିବାକୁ ହବ....
ଚାଲିଯିବାକୁ ହବ, ବାକିରଖି ପିଠଉବଟା
ଅଇଲାସନ ମାଣବସାର !!

ଲାଗ୍‌ଲାଗ୍ ଢେର୍ ଦିନଯାଏ
ଆକାଶ ଆଡ଼େ ଚାହିଁ
ମୁଁ ଖୋଜିହେଲି ତମକୁ...,
ଅସରନ୍ତି ତରା ବିଜିବିଜି ଏ ଆକାଶର
ଏବେ କୋଉ ତରାଟି ତମେ ?
କୁହୁଡ଼ିଆ ଶୀତସକାଳରେ
ଟିଉସନ୍ ଯାଉଥିବା ତମ ସାନପୁଅ
ତାଳୁର ତମେ କୋଉ ଶିଶିରବିନ୍ଦୁ ??
ନାଲିପାଟ ବାନ୍ଧିବା ଆଗରୁ ମହାପ୍ରୁ'
କାଠଯୋଡ଼ି ସେପାରିକି
ଉଡ଼ିଯାଉଥିବା ଚଢ଼େଇପଲରୁ
ଆଜି ତମେ କୋଉ ଚଢ଼େଇ ???

*ଶିଶୁ ସାହିତ୍ୟ ସମିତି*
*୨/୩, ୫ ଆର୍ (ଏଫ୍)*
*ୟୁନିଟ୍-୯, ଭୁବନେଶ୍ୱର-୭୫୧୦୦୭*



# ବାହୁଡ଼ା ବିଜୟ

*ଅଧ୍ୟାପକ ଜୟଚନ୍ଦ୍ର ସାହୁ*

ମୃତ୍ୟୁ ମଧ୍ୟ କେତେ ଆତୁର ଥିଲା
ତାଙ୍କୁ ଭେଟିବାକୁ ଯେ !
ଆପଏଣ୍ଟମେଣ୍ଟର ପରୱା ନକରି
ଧସାଇଆସି ପଶିଲା ତାଙ୍କ ରୁମ୍‌କୁ;
ସେ କେବେ କାହାକୁ ନିରାଶ କରିନଥିଲେ
ଶତ୍ରୁ କି ମିତ୍ରକୁ
କେମିତି ବା ମନା କରିଥାନ୍ତେ ତାକୁ ?
ସେ ତ ଥିଲେ ସବୁଠି, ସବୁ କାମରେ
ସବୁରି ସାଙ୍ଗରେ ।
ସବୁ ଅଡୁଆ ତୁଟାଇବାକୁ ବାହାରିଗଲେ କାହିଁକି ?
ସେ ପୁଣି ଆସିବେ କି ଫେରି–
ଅତର୍କିତ ଭାବେ; ସବୁରି ମେଳରେ ?
ଯେତେବେଳେ ଭେଳା ଭେଳା ଅନ୍ଧାରସବୁ
ଜଳିପୋଡ଼ି ଯାଉଥିବ
ଆଗନ୍ତୁକଙ୍କର ରକ୍ତିମ ଆଭାରେ !

*ଗଣିତ ବିଭାଗ*
*ରାଜେନ୍ଦ୍ର କଲେଜ*
*ବଲାଙ୍ଗୀର- ୭୬୭୦୦୧*



# ...ନ ହନ୍ୟତେ ହନ୍ୟମାନେ ଶରୀରେ

*ଶ୍ରୀ ସୁଧାଂଶୁ ମୋହନ ରାଉତରାୟ*

ସତ କରି କୁହ ।
ସତରେ କ'ଣ ସିଏ
ଏବେ ବି କୋଉଠି ବସିଥିବ
ଚୁପ୍‌ଚାପ୍ ତା'ର ଏକାଟିଆ
ମହାନଦୀ ପଠାରେ,
ନିବିଡ଼, ନିଛାଟିଆ ପୂର୍ଣ୍ଣିମା ରାତିରେ,
ସମୁଦ୍ର ବାଲିରେ,
କି ହାତ ଅପହଞ୍ଚ କୋଉ
ନୀହାରିକାରେ
ତାରା ହୋଇ ଦୋଳି ଖେଳୁଥିବ ?

ଏବେ ବି ମୋର ସବୁ ମନେଅଛି,
ମନେଅଛି, ମନେଅଛି ...
ସେଇ ଦୂର ଗାଁ ଦାଣ୍ଡ - ଖରାବେଳ,
କଲେଜର କରିଡ଼ର
ଧଉଳି ପାହାଡ଼ର ଲିପି
ଇତିହାସ, ତର୍କଶାସ୍ତ୍ର
ଓ ସ୍ୱର୍ଗଦ୍ୱାରର ସୂର୍ଯ୍ୟାସ୍ତ ।

ମାଇଲ୍ ମାଇଲ୍ ବ୍ୟାପୀ ସେଇ ସହରର ମରୁଭୂମିରେ
ଶାନ୍ତ-ଶୀତଳ ସେଇ ଓଏସିସ୍
ଜୀବନରେ ଭରପୁର୍
ସ୍ୱପ୍ନ ଜୁଡୁବୁଡୁ...

ଅକସ୍ମାତ୍ ଯିଏ ଉଭାନ୍ ହୋଇଗଲା
ଆଶ୍ୱିନ ସକାଳର ସୁନ୍ଦର ଶିଶିର ବିନ୍ଦୁ ଯେମିତି
କି ରାଜଗୃହ ପର୍ବତ ଗୁମ୍ଫାର ନିର୍ବାଣୋନ୍ମୁଖ ଦୀପଶିଖା ।

ସତରେ ସିଏ କ'ଣ
ଏବେ ବି କୋଉଠି ବସିଥିବ
ବେଳରତରତ ଡାଆଣିଆ ଖରାରେ
କୁଙ୍କୁରିକାଙ୍କୁରି ହୋଇ
କୋଉ ଶୀତ ପାହାନ୍ତିରେ ?
ଗୋଟିପଣ ଭିଜୁଥିବ
ଆଷାଢ଼ର ପ୍ରଥମ ବର୍ଷାରେ;
ଏଠି ଯେମିତି ଭିଜିଯା'ନ୍ତି ଅହରହ
ମେଳା-ଫେରନ୍ତା ରାସ୍ତାରେ ।

ପଛରେ ପଡ଼ିଯାଇଥିବା
ବିଦଗ୍ଧ ଦାର୍ଶନିକ
ବିଚରା ଏକେଲା,
ନିଜସ୍ୱ ଲୁହରେ...

*ପରିଚାଳକ ବିଭାଗ*
*ଭାରତୀୟ ରିଜର୍ଭ ବ୍ୟାଙ୍କ*
*ପାଟନା, ବିହାର*



# ନୀହାରିକା ସ୍ମରଣେ

*ପ୍ରଫେସର ଡକ୍ଟର ଅମୂଲ୍ୟକୃଷ୍ଣ ମିଶ୍ର*

ଅଧ୍ୟାପକ ନାରାୟଣ ମହାନ୍ତିଙ୍କ ସହଧର୍ମିଣୀ ନୀହାରିକାଙ୍କ ଅକାଳ ବିୟୋଗରେ ତାଙ୍କର ଛାତ୍ରଛାତ୍ରୀ, ପରିବାରବର୍ଗ ତଥା ବନ୍ଧୁବାନ୍ଧବ ଶୋକରେ ଜର୍ଜରିତ । ତାଙ୍କର ସୁଶୀଳ ପ୍ରକୃତି ଓ ଅମାୟିକ ବ୍ୟବହାର ତାଙ୍କୁ ସମସ୍ତଙ୍କର ଅତିପ୍ରିୟ କରିପାରିଥିଲା । ଜଣେ ମେଧାବୀ ଛାତ୍ରୀ ଭାବରେ ସେ ଯେପରି ନିଜର ଶିକ୍ଷକ ଏବଂ ଅଧ୍ୟାପକମାନଙ୍କ ପ୍ରିୟପାତ୍ରୀ ହୋଇପାରିଥିଲେ, ଜଣେ ଉତ୍ତମ ଅଧ୍ୟାପିକା ଭାବରେ ସେ ସେହିପରି ତାଙ୍କ ଛାତ୍ରଛାତ୍ରୀଙ୍କ ଶ୍ରଦ୍ଧାର ପାତ୍ରୀ ହୋଇପାରିଥିଲେ ।

ସକଳ ବ୍ୟସ୍ତତା ସତ୍ତ୍ୱେ ସେ ଥିଲେ ଜଣେ ନିପୁଣା ଗୃହିଣୀ । ସ୍ୱାମୀ, ସନ୍ତାନସନ୍ତତି ତଥା ପରିବାରର ଅନ୍ୟମାନଙ୍କ ଭଲମନ୍ଦ ଦେଖିବାରେ ସେ ଥିଲେ ପାରଙ୍ଗମ । ସେଥିପାଇଁ ସେ ଥିଲେ ସମସ୍ତଙ୍କର ଆଦର ଓ ସ୍ନେହର ଅଧିକାରିଣୀ । ଅତିଥିସେବା ଥିଲା ତାଙ୍କ ଗାର୍ହସ୍ଥ୍ୟ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ତେଣୁ ସେ ଅତିଥିମାନଙ୍କର ସ୍ନେହଭାଜନ ଥିଲେ ।

ଆଜିର କୁଟିଳ ଦୁନିଆରେ ଜଣେ ନିଜର ସ୍ୱାର୍ଥସିଦ୍ଧି ପାଇଁ ଅପରର ଅମଙ୍ଗଳ କରିବାକୁ ପଛଘୁଞ୍ଚା ଦେଉନାହିଁ । କିନ୍ତୁ ସ୍ୱର୍ଗୀୟା ମହାନ୍ତି ଥିଲେ ଭିନ୍ନ ଉପାଦାନରେ ଗଢ଼ା । ସେ ନିଜକୁ କଷ୍ଟ ଦେଇ ଅନ୍ୟକୁ ସୁଖ ଦେବାକୁ ଜୀବନର ବ୍ରତ ବୋଲି ଗ୍ରହଣ କରିଥିଲେ ।

ଭଗବାନ୍ ତାଙ୍କର ସେହି ଅତିପ୍ରିୟ ମଣିଷକୁ ଅଦିନରେ ନିଜ ପାଖକୁ ନେଇ ଆମ ସମସ୍ତଙ୍କୁ ଶୋକସାଗରରେ ଭସାଇଦେଲେ । ତାଙ୍କ ସ୍ୱାମୀ ଅଧ୍ୟାପକ ମହାନ୍ତିଙ୍କର ସେ ଥିଲେ ଉପଯୁକ୍ତ ସହଧର୍ମିଣୀ ଓ ସହକର୍ମିଣୀ । ସ୍ୱାମୀଙ୍କର ବିଭିନ୍ନ ସେବାମୂଳକ କାର୍ଯ୍ୟର ସେ ଥିଲେ ପ୍ରକୃତ ଉତ୍ସ । ତାଙ୍କ ବିହୁନେ ଆଜି ତାଙ୍କ ସ୍ୱାମୀ ସାଥୀହରା; ତାଙ୍କ ପୁତ୍ରଦ୍ୱୟ ମାତୃହରା । ସେମାନଙ୍କୁ ସମବେଦନା ଜଣାଇବାକୁ ମୋର ଭାଷା ନାହିଁ ।

ଭଗବାନ୍ ସେହି ସ୍ନେହମୟୀ ପ୍ରତିମାଙ୍କ ଅମର ଆତ୍ମାକୁ ଶାନ୍ତିରେ ରଖନ୍ତୁ ଏବଂ ସ୍ୱାମୀ ଓ ପୁତ୍ରମାନଙ୍କୁ ତାଙ୍କ ବିୟୋଗଜନିତ ଦୁଃଖ ସହିବାକୁ ମନୋବଳ ଦିଅନ୍ତୁ- ଏହାହିଁ ଈଶ୍ୱରଙ୍କ ନିକଟରେ ଏକମାତ୍ର ପ୍ରାର୍ଥନା ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

*୧୯୦, ଖାରବେଳ ନଗର*

*ଭୁବନେଶ୍ୱର– ୭୫୧୦୦୧*





# ପ୍ରଭାତର ନୀହାର କଣିକାଟି

*ଡକ୍ଟର ଶ୍ୟାମସୁନ୍ଦର ମିଶ୍ର*

ତାଙ୍କର ଦୁଇଟି ପୁଅଙ୍କୁ ଧରି ଆମ ଘରବାଟ ଦେଇ ହରିପୁର ସରସ୍ୱତୀ ଶିଶୁ ମନ୍ଦିରରେ ସେ ଛାଡ଼ିବାକୁ ଓ ଆଣିବାକୁ ଯାଆନ୍ତି । ବେଳେବେଳେ ତାଙ୍କ ସହ ଭେଟ ହୋଇଯାଏ । ମୁହାଁମୁହିଁ ହୋଇଗଲେ ନମସ୍କାର ସହ ମଧୁର ସ୍ମିତ ହସଟିଏ ବାହାରିଆସେ ଦୁଇଓଠ ସନ୍ଧିରୁ; ଆଉ ସେଇଥିରୁ ଫୁଟିଉଠେ ତାଙ୍କର ଅନାବିଳ ମାତୃହୃଦୟର ସ୍ୱରୂପ । ନିରହଂକାର,ନିରଭିମାନ ଓ ଶାନ୍ତ ବ୍ୟକ୍ତିତ୍ୱଟି ଭିତରେ ଦେଖାଯାଉଥାଏ ସଂଯତ ସମ୍ମୋହନ ଶକ୍ତି ଯାହା ସହଜରେ ପରକୁ ଆପଣାର କରିପାରେ, ଅପରିଚିତକୁ ନିକଟତର କରିପାରେ ।

ଗୃହଜଂଜାଳ, ପତିସନ୍ତାନଙ୍କ ସେବା ସାଙ୍ଗକୁ ଅଧ୍ୟାପନାର ଗୁରୁଦାୟିତ୍ୱ ଓ କର୍ତ୍ତବ୍ୟକୁ ନିର୍ବିରୋଧରେ ଓ ପ୍ରଶାନ୍ତ ଚିତ୍ତରେ ସେ ସମାହିତ କରିପାରୁଥିଲେ । ଜଣେ ଆଧୁନିକା, ଉଚ୍ଚଶିକ୍ଷିତା ନାରୀ ବିଦ୍ରୋହ, ବିପ୍ଳବ ଓ ସଂଗ୍ରାମ ମାଧ୍ୟମରେ ସମାଜଠାରୁ ନିଜର ସ୍ୱାଧିକାର ଦାବି କରୁଛି । ସେ କିନ୍ତୁ ନିଜର ଅନ୍ତର୍ନିହିତ ଗୁଣ ବଳରେ ସେହି ସ୍ୱାଧିକାର ଅର୍ଜନ କରିଥିଲେ । ତାଙ୍କୁ ଦେଖିଲେ ମନେହେଉଥିଲା ଭାରତୀୟ ନାରୀମାନେ ତଥାକଥିତ ବନ୍ଧନରୁ ମୁକ୍ତି ପାଇଁ ତାଙ୍କରି ପରି ନାରୀମାନଙ୍କ ପନ୍ଥା ଅନୁସରଣ କଲେ କେତେ ଭଲ ହୁଅନ୍ତା !

ଏହିପରି ଏକ ଜୀବନକଳିକା ଅକାଳରେ ଝରିପଡ଼ିଲା । ଇତିହାସର ଅଧ୍ୟାପିକା ନୀହାରିକା କେତେ ଶୀଘ୍ର ନିଜେ ଇତିହାସ ହୋଇଗଲେ ! ଜଣେ ବାତ୍ସଲ୍ୟହୃଦୟା ମାତା, ଅତିଥିବତ୍ସଳା ଗୃହିଣୀ, ପ୍ରେମଶୀଳା ପତ୍ନୀ ଏବଂ ନିରଭିମାନୀ ଆଦର୍ଶ ଅଧ୍ୟାପିକାଙ୍କର ଅଳ୍ପବୟସରେ ଏପରି ଅକାଳ ବିୟୋଗ କେବଳ ତାଙ୍କର ପରିବାର ପ୍ରତି ନୁହେଁ, ତାଙ୍କ ସଂସ୍ପର୍ଶରେ ଆସିଥିବା ପ୍ରତ୍ୟେକ ବ୍ୟକ୍ତି ପାଇଁ ଦାରୁଣ ଦୁଃଖାବହ ଥିଲା । କର୍ମପଟୁତା ଏବଂ ଅସୀମ ଧୈର୍ଯ୍ୟଶୀଳତା ଥିଲା ତାଙ୍କ ଚରିତ୍ରର ଅନ୍ୟତମ ଅନୁକରଣୀୟ ବୈଶିଷ୍ଟ୍ୟ । ସେହି ଗୁଣ ଲାଗି ସେ ତାଙ୍କର ଅସଂସାରୀ ଅଧ୍ୟାପକ-ସ୍ୱାମୀଙ୍କର ସଂସାର ନୌକାକୁ ସୁରୁଖୁରୁରେ ଚଳାଇନେଇ ପାରୁଥିଲେ ।

ଓଡ଼ିଶା ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ ସହ ସଂପର୍କରେ ଆସିବା ପରେ ମୁଁ ଅଧାପକ ଶ୍ରୀ ନାରାୟଣ ମହାନ୍ତିଙ୍କ ପରିବାର ସଙ୍ଗେ ଘନିଷ୍ଠ ହୋଇପଡ଼ିଥିଲି ଏବଂ ନୀହାରିକାଙ୍କ ବ୍ୟକ୍ତିତ୍ୱକୁ ନିକଟରୁ ପର୍ଯ୍ୟବେକ୍ଷଣ କରିବାର ସୁଯୋଗ ପାଇଥିଲି । ସେଥିଯୋଗୁଁ ତାଙ୍କ ବିୟୋଗ ସମ୍ବାଦ ମୋ ପାଇଁ ଅତ୍ୟନ୍ତ ଦୁଃଖଦାୟକ ଥିଲା । ତାଙ୍କ ମୃତ୍ୟୁ ଆକସ୍ମିକ ନଥିଲା । ମରଣାନ୍ତ ବ୍ୟାଧିର ପୀଡ଼ା ତାଙ୍କୁ କିଛିଦିନ ସହ୍ୟ କରିବାକୁ ହୋଇଥିଲା । ଏପରି ଜଣେ ପୁଣ୍ୟମୟୀ ମହିଳାଙ୍କ ପାଇଁ ଏ କଷ୍ଟ କେବଳ କୌଣସି ପୂର୍ବଜନ୍ମର ପ୍ରାରବ୍ଧ ଛଡ଼ା ଅନ୍ୟ କ'ଣ ହୋଇପାରେ ?

ଏବେ ବି ତାଙ୍କ ସ୍ମୃତି ଜାଗ୍ରତ ହେଲେ ମୋ ମନରେ କବି କୁନ୍ତଳାକୁମାରୀଙ୍କ 'ଶେଫାଳି ପ୍ରତି' କବିତାର ଭାବ ଉଦୟ ହୋଇଯାଏ– ଯେଉଁ ଫୁଲଟି କମ୍ ସମୟ ପାଇଁ ଫୁଟି ତାହାର ସୌରଭରେ ଜଗତକୁ ମୁଗ୍ଧ କରିଥାଏ ତାହାର ମୂଲ୍ୟ ସୌନ୍ଦର୍ଯ୍ୟ ଜଗତରେ ଚିରନ୍ତନ । ନୀହାରିକାଙ୍କର ସ୍ମୃତି ପ୍ରଭାତର ନୀହାର କଣିକା ପରି ଶୁଭ୍ର ଓ ସ୍ୱଚ୍ଛ ରୂପରେ ଆମ ସମସ୍ତଙ୍କ ହୃଦୟରେ ସର୍ବଦା ସଂଜୀବିତ ରହୁ ।

*ମିଶ୍ର ଲେନ୍*
*ଝାଞ୍ଜିରୀ ମଙ୍ଗଳା*
*କଟକ–୭୫୩୦୦୯*





# ବିଷାଦର ବାର୍ଷିକୀ

*ଡକ୍ଟର ଗଣେଶ ପ୍ରସାଦ ଦାସ*

ନାରାୟଣ ରେଭେନ୍‌ସା କଲେଜରେ ପଢ଼ିଲାଦିନୁ ମୁଁ ତାକୁ ଜାଣିଥିଲି । ସେ ଅତି ସରଳ, ନିଷ୍କପଟ ଓ କର୍ମଠ ହୋଇଥିବାରୁ ମୋର ବଡ଼ ଶାଳୀର ବାହାଘର ତା' ସହିତ ହେବା ପାଇଁ ମୁଁ ଚାହୁଁଥିଲି । ଏ ପ୍ରସ୍ତାବ ଦେବା ପୂର୍ବରୁ ନୀହାରିକା ସହିତ ତା'ର ଶୁଭପରିଣୟର ନିମନ୍ତ୍ରଣପତ୍ର ପାଇଲି । ଏହି ବିବାହ ଉତ୍ସବରେ ମୁଁ ଉପସ୍ଥିତ ରହେ ବୋଲି ତା'ର ତଥା ମୋର ଆନ୍ତରିକ ଇଚ୍ଛା ଥିଲେ ମଧ୍ଯ ସେ ଦିନର ବର୍ଷା ତହିଁର ବାଧକ ହୋଇଥିଲା । ପରେ ନାରାୟଣଠାରୁ ସବୁ ପଚାରି ବୁଝିଥିଲି । ଜାଣିଲି ଯେ ନୀହାରିକା ସୁଗୁଣା ଓ ସୁଶୀଳା; ଏକ ସ୍ଥାନୀୟ ବେସରକାରୀ ମହାବିଦ୍ୟାଳୟରେ ଇତିହାସର ଅଧ୍ୟାପିକା ।

ବିଭିନ୍ନ ସମୟରେ ଝାଞ୍ଜିରୀମଙ୍ଗଳାସ୍ଥିତ ତାଙ୍କ ଘର 'ନଦିଆ ନିବାସ'କୁ ଯାଇଛି । ଅଧିକାଂଶ ସମୟରେ ନାରାୟଣ ଘରେ ନଥାଏ । କଲେଜ ଶିକ୍ଷକଙ୍କର ବିଭିନ୍ନ ସମସ୍ୟାର ସମାଧାନ ତଥା ଦର୍ଶନଶାସ୍ତ୍ରରେ କେଉଁଠି ସମ୍ମାନ ଶ୍ରେଣୀ ଓ କେଉଁଠି ସ୍ନାତକୋତ୍ତର ଶ୍ରେଣୀ ଖୋଲିବ, ସେହି ବ୍ୟବସ୍ଥାରେ ସେ ଛୁଟିଦିନରେ ମଧ୍ୟ ଘରେ ନରହି କୁଆଡ଼େ କେମିତି ବ୍ୟସ୍ତ ରହେ । ପରିଚୟ ଦେଇ ଖବର ପଠାଇଲେ ନୀହାରିକା ଆସନ୍ତି ଏବଂ ହସିହସି ଅଭିବାଦନ ଜଣାନ୍ତି । ନାରାୟଣ ପାଇଁ ଖବରଟିଏ ଦେଇ ପଳାଇଆସିବାକୁ ଚାହିଁଲେ ସେ ବସିବା ପାଇଁ କଟାଳ କରନ୍ତି ଏବଂ ଆପ୍ୟାୟିତ ନକରି ଚାଲିଆସିବାକୁ ଦିଅନ୍ତିନାହିଁ ।

ଯେତେଥର ତାଙ୍କ ଘରକୁ ଯାଇଛି ସବୁଥର ନୀହାରିକାଙ୍କର ଆଦରଅଭ୍ୟର୍ଥନା ପାଇଛି । ତାଙ୍କର ଯୌଥ ପରିବାର; ନିଜର ଅଧ୍ୟାପନା ବୃତ୍ତି ସହିତ ଘରର ଯାବତୀୟ କାମ ତାଙ୍କୁ କରିବାକୁ ପଡ଼ିଥାଏ । ତା' ଭିତରେ ଅତିଥିଅଭ୍ୟାଗତଙ୍କର ଚର୍ଚ୍ଚା ସେ ଅନାୟାସରେ ଏହିପରି କରିଥାନ୍ତି । ଘର ଓ ବାହାରର ଏତେ ଲୋକଙ୍କର ଏତେ କଥା ବୁଝି ମଧ୍ୟ ତାଙ୍କୁ କେତେବେଳେ କ୍ଳାନ୍ତ ହୋଇପଡ଼ିଥିବାର ବା ଅସନ୍ତୁଷ୍ଟ ହେବାର ଲକ୍ଷ୍ୟ କରିନାହିଁ । ସେ ତାଙ୍କର ଯେଉଁ ଶାଶୁ, ଶ୍ୱଶୁର, ନଣନ୍ଦ, ଦିଅରଙ୍କ ତତ୍ତ୍ୱ ନେଉଥିଲେ ସେମାନେ ତ ତାଙ୍କର ତତ୍ତ୍ୱ

ନିଶ୍ଚୟ ନେଉଥିବେ । କିନ୍ତୁ ସ୍ୱାମୀ ନାରାୟଣର ଏ ବାବଦରେ ଡର ଥାଏ କି' ନା, ଏକଥା ମୁଁ ବେଳେବେଳେ ଭାବେ । କିନ୍ତୁ ଏହା ନେଇ ନାରାୟଣ ପ୍ରତି ନୀହାରିକାଙ୍କର କୌଣସି ବିରକ୍ତି ବା ଆକ୍ଷେପୋକ୍ତି ମୋ କାନରେ ପଡ଼ିନାହିଁ । ବରଂ ସେ ନିଜେ ଇତିହାସରେ ଗବେଷଣା କରୁଥିଲେ ମଧ୍ୟ ନାରାୟଣ ମୋ ପାଖରେ କରୁଥିବା ଦର୍ଶନ-ଗବେଷଣାରେ ଯେପରି କୌଣସି ବାଧା ନଆସେ, ସେଥିପ୍ରତି ସେ ବିଶେଷ ସଚେତନ ଥିବାର ମୁଁ ଜାଣେ ।

ପୋଷାକପତ୍ର ବିଷୟରେ ନାରାୟଣର ବିଶେଷ ସଉକି ନଥାଏ । ସେଥିପାଇଁ ତାର ସାଙ୍ଗସରିସାମାନେ ତାକୁ ଅନେକ ସମୟରେ ଇମିତି ପିନ୍ଧ, ସିମିତି ପିନ୍ଧ ବୋଲି ବରାଦ କରନ୍ତି । କିନ୍ତୁ ଏ ପ୍ରକାର ବରାଦ ତା' ସ୍ତ୍ରୀଙ୍କ ଆଡୁ ଆସୁନଥିଲା ବୋଧହୁଏ । ତେଣୁ ଅନେକ ଆଧୁନିକା ମହିଳାଙ୍କ ପରି ନୀହାରିକାଙ୍କର ବାହ୍ୟ ଚାକଚକ୍ୟରେ ଧ୍ୟାନ ନଥିବାର ମୋର ଧାରଣା ହୋଇଥିଲା । ମୋ ବିଚାରରେ ନୀହାରିକା ଜଣେ ଉତ୍ତମା ସହଧର୍ମିଣୀ, ଆଦର୍ଶ ଗୃହିଣୀ, ପତିପୁତ୍ର ଅନୁରକ୍ତା, ଅତିଥିପରାୟଣା ତଥା ଛାତ୍ରବତ୍ସଳା ଅଧ୍ୟାପିକା ଥିଲେ ।

ନୀହାରିକା ନୀହାରିକାଗର୍ଭରେ ଲୀନ ହୋଇଯିବାର ଏକବର୍ଷ ଅତୀତ ହୋଇଗଲା । ତାଙ୍କର ଅକାଳ ବିଲୟରେ ତାଙ୍କର ସ୍ୱାମୀ ତଥା ଦୁଇପୁଅଙ୍କର ଜୀବନରେ ଯେ ବିପର୍ଯ୍ୟୟ ଆସିଲା ତା ନୁହେଁ, ସାରା ପରିବାରଟିର ଅକଳନୀୟ ଓ ଅପୂରଣୀୟ କ୍ଷତି ଘଟିଲା । ଅତ୍ୟନ୍ତ ଦୃଢ଼ମନା ନାରାୟଣର ସ୍ଥିତି ଯେ ଦୋହଲିଯାଇଛି ଓ ବିଭିନ୍ନ ଜାଗତିକ କାର୍ଯ୍ୟରୁ ତା' ମନ କିଛି ଅଂଶରେ ଯେ ଛାଡ଼ିଯାଇଛି, ଏହା ମୋର ଦୁଃଖଦ ଅନୁଭବ । ଈଶ୍ୱରଙ୍କ ନିକଟରେ ମୁଁ ଏକାନ୍ତ ଭାବରେ ପ୍ରାର୍ଥନା କରୁଛି ଯେ ନାରାୟଣ ତଥା ଦୁଇପୁଅ (ବାପୁ ଓ ଲିଙ୍କନ୍) ଦୃଢ଼ମନା ହୋଇ ନିଜନିଜର ଲକ୍ଷ୍ୟପଥରେ ଅଗ୍ରସର ହୁଅନ୍ତୁ ଓ ସିଦ୍ଧିଲାଭ କରନ୍ତୁ । ଏହାଦ୍ୱାରା ହିଁ ସେମାନଙ୍କର ତଥା ଆମ୍ଭମାନଙ୍କର ପ୍ରିୟ ନୀହାରିକାଙ୍କର ଆତ୍ମା ଶାନ୍ତିଲାଭ କରିବ ।

*ସ୍ନାତକୋତ୍ତର ଦର୍ଶନ ବିଭାଗ*
*ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର*
*ଭୁବନେଶ୍ୱର–୭୫୧୦୦୪*



# ଆପଣାର ଜଣେ ଚାଲିଗଲା ପରେ

*ପ୍ରାଧ୍ୟାପିକା ପ୍ରତିଭା ପ୍ରଧାନ*

'ସମାଜ'ରେ ଖବରଟା ପଢ଼ି ବିଶ୍ୱାସ ହେଲାନି... ଏଇ କେତେଦିନ ତଳେ ଦେଖିଥିଲି... "ଔଷଧର ଉପକାର ମିଳିଛି; ଆଗ ଅପେକ୍ଷା ବେଶ୍ ଭଲ ଲାଗୁଛି..." କହି ସେମିତି ଶାନ୍ତସରଳ ହସହସ ମୁହଁରେ ଧୀରେଧୀରେ ଆସି ପାଖରେ ଠିଆ ହୋଇ ରୋଗର ଚିକିତ୍ସା ବିଷୟରେ ଗୋଟିଗୋଟି କହିଯାଉଥିଲା । ମୁହଁଟି କିନ୍ତୁ ଶେତା ହୋଇ ଫୁଲିଲା ଭଳି ଲାଗୁଥିଲା; ସ୍ୱର କେମିତି ବସିଗଲା ଭଳି ଶୁଭୁଥିଲା । ସେଥିରେ ପୁଣି ଚା' କରି ଆଣିବା ପାଇଁ ତା'ର ଯେଉଁ ବ୍ୟସ୍ତତା... ସତେ ଯେମିତି ସମ୍ପୂର୍ଣ୍ଣ ସୁସ୍ଥ ମଣିଷଟିଏ ।

ତା'ର ଅସୁସ୍ଥତା ଯୋଗୁଁ ଘରର ସମସ୍ତେ ହଇରାଣ ହେଉଛନ୍ତି ବୋଲି ନିଜକୁ ବଡ଼ ସଂକୁଚିତ ଓ ଋଣୀ ବୋଲି ବାରମ୍ବାର କହିବା ଭିତରେ ଘରର ସମସ୍ତଙ୍କ ଅବଦାନ, ସେବା, ଯତ୍ନ ବିଷୟରେ କହିଲାବେଳେ ଆଖି ତା'ର କୃତଜ୍ଞତା ଓ ପ୍ରଶଂସାରେ ଭରିଉଠୁଥିଲା । ପୁଅଟି ଉପଯୁକ୍ତ ମଣିଷ ହେବାର ଆଶାରେ ସରସ୍ୱତୀ ବିଦ୍ୟା ମନ୍ଦିର, ଗତିରାଉତ ପାଟଣାର ଛାତ୍ରାବାସରେ ରଖିଥିବା କଥା ପ୍ରସଙ୍ଗକ୍ରମେ କହୁଥିଲାବେଳେ ପୁଅଟି ଆସି ପ୍ରଣାମ କରି ପାଖରେ ଠିଆହେଲା । କେତେ ଛୋଟ ଛୁଆଟିଏ ! ମା'ର ଅସୁସ୍ଥତା ଖବର ପାଇ ବୋଧହୁଏ ଅଳ୍ପ ଦିନ ପାଇଁ ଆସିଥିଲା ।

ମୁଁ ହଠାତ୍ ୮/୧୦ ବର୍ଷ ପଛକୁ ଫେରିଯାଇଥିଲି । ବଲାଙ୍ଗୀର ସରକାରୀ ମହିଳା ମହାବିଦ୍ୟାଳୟରେ ଅଧ୍ୟାପିକା ଥାଏ । ନାରାୟଣର ସ୍ତ୍ରୀ ଆସିଛି, ଛୋଟ ପୁଅଟିକୁ ନେଇ- ଏହା ଶୁଣି ତା' ରୁମ୍‌କୁ ଯାଇଥିଲି । ସେଇ ପ୍ରଥମ ଦେଖାରେ କେମିତି ତା' ପ୍ରତି ଏକ ଅଜଣା ଆକର୍ଷଣ ଅନୁଭବ କରିଥିଲି । ଟିକି ପୁଅଟି ସହିତ ଓଢ଼ଣା ଭିତରେ ନମସ୍କାର କରି ପାଖେଇକି ଠିଆ ହୋଇ ଆସ୍ତେଆସ୍ତେ

ଅନୁରୋଧ କରୁଥିଲା, ଜଳଖିଆ ଚା' ଖାଇବା ପାଇଁ । ହାତଧରି କେତେ ନିଜର ପରି ସମସ୍ତ ସଶୁଣାର ସହ ଜିଗର କରୁଥିଲା । ସେ ଥିଲା ପର୍ଯ୍ୟନ୍ତ ସବୁ ଦିନ ଆସିବା ପାଇଁ ଅଳି କରୁଥିଲା, ହେଲେ ନୂଆବୋହୂଟିଏ ପରି ସେ ଦିନକ ପାଇଁ ଦୁଆରବନ୍ଧ ଡେଇଁ ବାହାରକୁ ବୁଲିଯିବା ଦେଖିନାହିଁ । ରୁମ୍‌ଟି ଭିତରେ କିଛି ନା କିଛି କାମ ଭିତରେ ବୁଡ଼ିରହିଥିବ । ସ୍ନେହୀ ମଣିଷଟିଏ... ଅଳ୍ପ ସମୟ ଭିତରେ ଅତି ନିଜର କରିନେଲା ଭଳି ସମସ୍ତ ଗୁଣରେ ପରିପୂର୍ଣ୍ଣ। ଏତେ ପାଠ ପଢ଼ିଛି ବୋଲି ଜାଣି ହେବନି ତା'ର ସରଳ ଭାବଭଙ୍ଗୀ ଓ କଥାବାର୍ତ୍ତାରୁ ।

ତା'ର ଅନେକ ବର୍ଷ ପରେ, ପ୍ରାୟ ୫/୬ ବର୍ଷ ପରେ, ମୋ ପୁଅକୁ ସରସ୍ୱତୀ ଶିଶୁ ମନ୍ଦିର, ହରିପୁରରେ ପଢ଼ାଇବା ପାଇଁ ଖବର ନେବାକୁ ନାରାୟଣ ଘରକୁ ଯାଇଥିଲି । ସେତେବେଳେ ଜାଣିବାକୁ ପାଇଲି, ସେ କଟକ ସିଟି କଲେଜରେ ଅଧ୍ୟାପିକା ଅଛି ବୋଲି । ଖରାବେଳେ ତାଙ୍କ ଘରେ ପହଞ୍ଚି ଦେଖିଲି ସେଇ ସଙ୍ଗେସଙ୍ଗେ କଲେଜରୁ ଫେରିଥାଏ । ମୁହଁରେ ପରିଶ୍ରମର ଛାପ । ହେଲେ ଆନ୍ତରିକତାର ସ୍ୱର ଏମିତି ଟାଣିରଖିଲା ଯେ ମୁଁ ଆଉକେବେ ଆସିବି କହି ଫେରିପାରିଲିନି । ଏତେବର୍ଷ ପରେ ଦେଖା । ତା'ର ଭାଷାରେ ଆନନ୍ଦ ଝରିପଡୁଛି ଯେମିତି... ଆଉ ମୁଁ ସାଉଁଟିବାରେ ଲାଗିଛି... କେତେବେଳେ ଘଣ୍ଟାଏ ବିତିଯାଇଛି ଜାଣିପାରିନି । ବ୍ୟବହାର, କଥାବାର୍ତ୍ତା ସେମିତି ସେଇ ପୁରୁଣା ଦିନର ପ୍ରଥମ ପରିଚୟ ପରି; କିଛି ବଦଳିନି । ଯେତେବେଳେ ତା' କଥା ମନକୁ ଆସିଛି, ଆଖି ଆଗରେ ଭାସିଉଠେ ଶାନ୍ତି ଓ ସନ୍ତୋଷଭରା ହସଖୁସିର ନାରୀ ମୂର୍ତ୍ତିଟିଏ । ଲାଗେ ଯେମିତି ଜୀବନରେ ଯାହା ସେ ଚାହିଁଛି, ତା' ପାଇଛି । ତା' କଥାରେ ଅନ୍ୟର ପ୍ରଶଂସା ଯେମିତି ବସା ବାନ୍ଧିଛି ।

ଏବେ ଦରକାର ପଡ଼ିଲେ ଫୋନ୍ କଲେ ଆଉ ସେ ସ୍ୱର ଶୁଭିବନି । "ମାଡ଼ାମ୍ ନମସ୍କାର । ଘରଆଡ଼େ ଟିକେ ସମୟ କରି ଆସନ୍ତୁ; ସୁବିଧା କରି ନିଶ୍ଚୟ ଆସିବେ । ପୁଅଝିଅ କେମିତି ଅଛନ୍ତି ? ସେ ବଜାରକୁ ଯାଇଛନ୍ତି; ଆସିଲେ ଆପଣ ଫୋନ୍ କରିଥିଲେ ବୋଲି ନିଶ୍ଚୟ କହିଦେବି । ଆପଣଙ୍କୁ ଘରେ ଦେଖା କରି ଆସିବେ ।"

ଝାଞ୍ଜିରୀମଙ୍ଗଳା ନଦିଆ ନିବାସର ସେ ଅଣଓସାରିଆ ସିଢ଼ି ଦେଇ ଦୋତାଲାର ବାରଣ୍ଡା ପାଖ ବୈଠକଘରର ସୋଫା ଉପରେ ବସି ଥିରିଥିରି ଚାଲିର ଶବ୍ଦ ଥମିଗଲା ପରେ ସେ ଆତ୍ମୀୟତାର ସ୍ୱର ଆଉ ଶୁଣିବାକୁ ମିଳିବନି, ଏହା ଭାବିଦେଲେ ନାରାୟଣ ଘରକୁ ଯିବାର ସମସ୍ତ ଯୋଜନା ହଠାତ୍ ଶୂନ୍ୟରେ ମିଳେଇଯାଏ । ଅନେକ ଥର ଚେଷ୍ଟା କରିଛି ଯିବି ବୋଲି, ଦୁଃଖ ସମୟରେ ପାଖରେ ଠିଆ ହୋଇ କିଛିଟା ଯନ୍ତଣାରେ ଭାଗିଦାର ହେବା ପାଇଁ; ହେଲେ ଆଜିଯାଏ ମନକୁ ଦମ୍ଭ କରିପାରିନି ।

ଈଶ୍ୱରଙ୍କ ନିକଟରେ ଏତିକି ପ୍ରାର୍ଥନା, ଏପାରିର ପୁଣ୍ୟଫଳ ସେପାରିରେ ଆତ୍ମାର ସଦ୍‌ଗତି ଓ ଶାନ୍ତି ପାଇଁ ପାଥେୟ ହେଉ ।

*ମନସ୍ତତ୍ତ୍ୱ ବିଭାଗ*

*ଶୈଳବାଳା ମହିଳା କଲେଜ*

*କଟକ–୭୫୩୦୦୧*





# ମରଣ ତୁ ଶ୍ୟାମ ସମାନ

*ଡକ୍ଟର ନଟବର ଶତପଥୀ*

ବହୁଶବ୍ଦ ନଥିଲା ସେ ଦିନ । ସେମାନେ ଆଗରୁ ମରିସାରିଥିଲେ; ହଜିଯାଇଥିଲେ ଲୋକାରଣ୍ୟ ଭିତରେ । ଧୀରେଧୀରେ ହଜିଆସୁଥିଲେ, ମରିଆସୁଥିଲେ, ଶୁଖିଲା ପତ୍ର ପରି । ସତେଜ ଫୁଲର ପାଖୁଡ଼ା ମଉଳନ ଧରିଲା ପରି । କୋଉଠି ସୁନ୍ଦର ଭିତରେ କାଳିମାର ଛୋଟ ଦାଗଟିଏ କ୍ରମେ ବଢ଼ିବଢ଼ି ସବୁକୁ ଖାଇଗଲା ପରି। ନୂଆପାଣି ମାଡ଼ିଆସି ପାଣିବେଢ଼ାରେ ବାଲିକୁ ଭସାଇବା ପରି ।

କୋଉ ଗୋଟାଏ ଶବ୍ଦର ଅଦେଖା ହାତ ଘେରିଦେଲା ନୀହାରିକାକୁ! ସେ ତ ଜମାରୁ ଭଲପାଉନଥିଲା ଶବ୍ଦକୁ । ରୋଷେଇଘର ଛାଡ଼ି ଦଉଡୁଥିଲା ସେଇଠିକି ଯୋଉଠି ନିତି ଶବ୍ଦମାନଙ୍କୁ ହୃଦବ୍ରହ୍ମ ଭିତରୁ ବାହାର କରିଦିଆଯାଏ; ଫୋପାଡ଼ି ଦିଆଯାଏ ଦେଖଣାହାରୀଙ୍କ ଗହଣକୁ । ସବୁଙ୍କ ପରି ସେ ବାହାର କରିଦିଏ, କେଡ଼େ ଆହ୍ଲାଦରେ ବ୍ରହ୍ମରୂପ କରି, ଅର୍ଥ ଅର୍ଥାନ୍ତରରେ ସୁନ୍ଦର କରି । କିନ୍ତୁ ଗୋଟାଏ ଶବ୍ଦକୁ ସେ କାହିଁକି ବାନ୍ଧିରଖିଥିଲା ? ସମସ୍ତଙ୍କୁ ଭୁଲାଇ ଅଛପା ରଖି ସେ କ'ଣ ଏତେ ଭଲପାଉଥିଲା ସେ ଶବ୍ଦ - କୃଷ୍ଣଙ୍କୁ ରାଧିକା ପରି! ଏତେ ବିଭୋର ହୋଇ ଗାଉଥିଲା- ମରଣ ତୁ ଶ୍ୟାମ ସମାନ । ଏତେ ଅଳ୍ପ ବୟସରୁ ଅଶୀତିପର ବୁଢ଼ୀଟିଏ ପରି ସେ ଗୀତର ମୂର୍ଚ୍ଛନାରେ ଜଡ଼ ହୋଇଗଲା !

ଛୋଟ ବଗିଚାର ମାଳୀ ବଡ଼ ବଗିଚା ସହ ତଉଲି ମଣ୍ଡଣି କରିବା ପରି ସେ ଦେଖୁଥିଲା ଏଡ଼େବଡ଼ ଦୁନିଆକୁ । ଚୁପ୍‌ଚାପ୍ ବାୟାଟି ପରି ନିଜର ନୀଡ଼କୁ ସଜାଉଥିଲା ଦିନଦିନ ଧରି । କ୍ଳାନ୍ତି ନଥିଲା, ଶବ୍ଦ ନଥିଲା, ନଥିଲା ଦୁଃଖ । କେବଳ ହସ ଯେ ହସ । ଫୁଲ ପରି ସତେଜ, ଚିକ୍କଣ; ପୁଣି ହସିବାର ଯଥେଷ୍ଟ ସମ୍ଭାବନାରେ ଉଜ୍ଜ୍ୱଳ । ତା' ଭିତରେ କେବେଠୁ ଶିଖିଥିଲା ଏଡ଼େ ଅନୁପମ, ଅମୃତଝରା ଗୀତ- ମରଣ ତୁ ଶ୍ୟାମ ସମାନ ।

ସେ ଜାଣିଥିଲା ଦୁନିଆର କେତେ ଇତିହାସ । ଇତିହାସ୍ ଲେଖାଉଥିଲା ନୂଆନୂଆ ମୁହଁରେ । କିନ୍ତୁ କିଏ ଜାଣିଥିଲା, ନିଜେ ଇତିହାସ କରି ଚକିତ

କରିଦେବ ଇତିହାସକୁ । ଇତିହାସଟିଏ ହେଇଯିବ ଆକସ୍ମିକ ଭାବେ । ତା' ଭିତରେ ପୁଣି ମରଣ ବଂଶୀର ମଧୁର ବିଳାପ!

ସେ କ'ଣ ଏୟା ଶୁଣାଉଥିଲା ତା'ର ଇତିହାସର ଗପ ଭିତରେ: ଇତିହାସ ଭାରି ଦୁଃଖ ଦିଏ । ଇତିହାସ ଗୋଟାଏ କାମନା । ତାକୁ ବିନାଶ କର । ସେଇଥି ପାଇଁ କ'ଣ ସେ ଚାଲିଗଲା ଅବିନାଶୀ ଆଉ କୋଉ ଗୋଟିଏ ଅଣଇତିହାସମୟ ଅଦୃଶ୍ୟ ଜାଗାକୁ? କ'ଣ ଅବା ସେ ଜାଣିଥିଲା ସେ ଜାଗା ବିଷୟରେ? ଏମିତି ଘାରି ହେଲା ତା'ରି ଗୋପନ ଡାକରେ? ନିଃଶବ୍ଦର ଶବ୍ଦ ତାକୁ ଅଥୟ କଲେ? କରାଘାତ କାହାର ଦ୍ୱାରରେ; ଝଣତ୍କାର କାହାର ରାନ୍ଧଣାଘରେ! କାହାର ମୃଦୁମୃଦୁ ହସ ଅକ୍ଷର ଭିତରେ , ପିଲାଙ୍କ ଦରୋଟି ଓଠରେ, କାହାର ମିଟିମିଟି ଆଖି କଳାପଟା ଓ ଚକ୍ର ସରଳ ସଫା ବର୍ତ୍ତୁଳତାରେ? କାହାର; କାହାର?

ଚମକିପଡ଼େ କି ନୀହାରିକା? ପତ୍ରଝଡ଼ା ପରି ପଉଷର ବିଷଣ୍ଣ ଆକାଶ ତ ଆଖେଇନଥିଲା ଜୀବନକୁ, ବୟସକୁ, ସୁନ୍ଦର ଛୋଟିଆ ବଗିଚାକୁ । ଗଛର ଉପରୁ ଚାନ୍ଦର କିରଣ ପରି କିଏସେ ତାକୁ ଉଠାଇଦେଲା ଏଡ଼େବଡ଼ ରାତିର ମଝିଟାରେ? ମାଇଲମାଇଲ ରାତିର ଘୋର ଘନ ବାଟ! ଭୟ ନଥିଲା; ହସର ଭୟ ନଥାଏ, ଫୁଲର ଭୟ ନଥାଏ । ଫୁଲ ହଉହଉ ହସ ଫୁଟିଯାଏ ଯୋଉଠି, ନୀହାରିକାର ବଂଶୀ ସେଇଠି ମୂର୍ଚ୍ଛନା ମାର୍ଜନକୁ କ'ଣ ସମ୍ଭାଇଥିଲା ଏତେ ଦିନ ଧରି?

ଇତିହାସ କଷ୍ଟ ଦିଏ? ଥରେ ସେ କାହିଁ କହିଲାନାହିଁ, କି କାହାକୁ ଶିଖାଇଲାନାହିଁ । କେବଳ ହସିହସି କହିଗଲା– ପିଲେ, ଶୁଣରେ ଇତିହାସ; ବାପ ଅଜାଙ୍କର କୀର୍ତ୍ତି ଗଉରବ । ଖଣ୍ଡା ତଲୁଆରର ବିଭବ ଭିତରେ ମଣିଷଜାତିର ଦୃପ୍ତ ପୌରୁଷର ବିଜୟ ଡିଣ୍ଡିମ । କୋଉଠି ଥିଲା ସେ ଡିଣ୍ଡିମ ଭିତରେ ଏତେଟିକେ ଖୁଣ ଯେ ତାକୁ ରୁଟ୍ କରି ଦଂଶିଦେଲା ? ଆଉ ସେହି ଦଂଶନ ହେଲା ଏଡ଼େବଡ଼ – 'ମରଣର ବିରାଟ କଳାଛାଇ ।'

କୋଉଦିନୁ ସେ କଳାଛାଇ ଦଂଶନର ଅଙ୍ଗରାଗ ବନିଗଲା । ସେ ତାକୁ ଚିହ୍ନିପକେଇଲା । ହାତଧରି ଆପଣାର କଲା। ଖେଳିଲା ଦିନରାତି ସାଙ୍ଗରେ ଧରି । ଛାଇ ପରି ରହିଲା ପାଖେପାଖେ । ଯିଏ ହାତ ଧରିଥିଲା, ଯାହାକୁ ବ୍ରହ୍ମପିଣ୍ଡରୁ ବିଦାରି ଆଲୁଅକୁ ଆଣିଥିଲା, ଯାହାକୁ ଶିଖଉଥିଲା 'ବ୍ରହ୍ମ ତୁମେ ସନାତନ' ସେମାନଙ୍କୁ ଭୁଲିଗଲା । ଅଜଣା ଅତିଥି ସାଙ୍ଗରେ ଖେଳିଲା,

ଖେଳୁଖେଳୁ ତା'ରି ସାଙ୍ଗରେ ପୁଣି ଚାଲିଗଲା । ଫେରି ଚାହିଁଲାନି ଥରେ ଦୁଇଟି କଅଁଳ, ସଦ୍ୟ କୁନିକୁନି ବ୍ରହ୍ମସନାତନ ଖେଳିବାକୁ ଡାକୁଛନ୍ତି; ରାହା ଧରୁଛନ୍ତି, "ଖୋଲିଦିଅ ମା' ଏ ଅନ୍ଧପୁଟୁଳି, ଖୋଲିଦିଅ ମା'ଖୋଲିଦିଅ ।"

ନିଷ୍ଠୁର ନୋହୁ ଜାଣେ; ଜାଣେ ଥୟ ଧରିବୁନି ଅତୁଟ ରାହାର ଶବ୍ଦରେ । କାରଣ ତୁ ଶବ୍ଦକୁ ଭଲପାଉନଥିଲୁ । କିନ୍ତୁ ଏଇଠି ଅବୁଝା ରହିଗଲା ସେଇ ଶବ୍ଦଟିର କଥା । ଯା'ର ମୋହନ ବଂଶୀ ମୋହିଦେଲା, ଆଉ ସେ ବାଟରେ ଯାଉଯାଉ କେବଳ ଗୋଟିଏ ଶବ୍ଦ ଶୁଭୁଥିଲା – "ଲୁହ ପୋଛ ପିଲାଏ, ଲୁହ ପୋଛ ।"

ସେ ଶବ୍ଦ କାହାର ?

*ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ*
*ରେଭେନ୍‌ସା କଲେଜ*
*କଟକ–୭୫୩୦୦୩*





# ମୁଁ ତାଙ୍କୁ ଯେତିକି ଜାଣେ

*ପ୍ରାଧ୍ୟାପକ ଧନେଶ୍ୱର ସାହୁ*

ବନ୍ଧୁ ଅଧ୍ୟାପକ ଶ୍ରୀ ନାରାୟଣ ମହାନ୍ତିଙ୍କ ଧର୍ମପତ୍ନୀ ଅଧ୍ୟାପିକା ନୀହାରିକା ଦାସଙ୍କ ବିୟୋଗ ହେବାର କେତୋଟି ମାସ ବିତିଗଲାଣି । ଦିନ, ମାସ ଓ ବର୍ଷ ବିତିଗଲେ ବି ସ୍ମୃତି ପୁରୁଣା ହେବନାହିଁ । ସ୍ମୃତି ଭିତରେ ନୀହାରିକା ଦେବୀ ସବୁଦିନ ରହିଥିବେ । ତାଙ୍କ ଉପରେ ପ୍ରକାଶ ହେବାକୁ ଯାଉଥିବା ସ୍ମରଣିକାଟିଏ ପାଇଁ ଦୁଇପଦ ଲେଖିବାବେଳକୁ ତାଙ୍କର ମୁହଁଟି ଆଖି ଆଗକୁ ଆସିଯାଉଛି । ବିଶ୍ୱାସ କରିହେଉନି ଯେ ସେ ଏ ସଂସାରରୁ ବିଦାୟ ନେଲେଣି ବୋଲି! ନିଜର ତରୁଣ ସ୍ୱାମୀ ଓ ଚପଳ ପୁଅଦୁହିଁଙ୍କି ଛାଡ଼ି ସେ ଚାଲିଗଲେ । ବନ୍ଧୁ, ପରିଜନ, ସହକର୍ମୀ, ଛାତ୍ରଛାତ୍ରୀ ସମସ୍ତେ ଦୁଃଖ ପ୍ରକାଶ କଲେ, ସମବେଦନା ଜଣାଇଲେ । ହେଲେ ତାଙ୍କର ସ୍ୱାମୀ ଓ ପୁତ୍ରଦୁହିଁଙ୍କର ସଂସାର ଉଚ୍ଛନ୍ନ ହୋଇଗଲା। ନିଷ୍ଠୁର ବାସ୍ତବତାକୁ ଗ୍ରହଣ କରି ସେମାନଙ୍କ ଆଖିର ଲୁହ ଶୁଖିଲାଣି; ହେଲେ ଅନ୍ତର ତଳର ବେଦନା କ'ଣ କେବେ ଉପଶମ ହେବ !

ନୀହାରିକା ଦେବୀଙ୍କ ସହିତ ମୋ'ର ଓ ମୋ ସ୍ତ୍ରୀଙ୍କର ପ୍ରଥମ ସାକ୍ଷାତ ହୁଏ ୧୯.୩.୮୯ ଦିନ । ମୋ ଶାଳୀଙ୍କର ଆକସ୍ମିକ ବିୟୋଗଜନିତ ଟେଲିଗ୍ରାମ ପାଇ ଯାଜପୁରରୁ କଣ୍ଟାବାଞ୍ଜି ଯିବା ଉଦ୍ଦେଶ୍ୟରେ ସେ ଦିନ ଆମେ କଟକକୁ ଆସି ବନ୍ଧୁ ନାରାୟଣ ବାବୁଙ୍କ ଘରେ ଦିନ ଏଗାରଟାରେ ପହଞ୍ଚିଲୁ । ସନ୍ଧ୍ୟାରେ ବସ୍ ଧରିବା ପର୍ଯ୍ୟନ୍ତ ତାଙ୍କର ଅତିଥି ହେଲୁ । ଏକବର୍ଷ ତଳେ ବିବାହ କରିଥିବା ପଚିଶବର୍ଷ ବୟସ୍କା ନିଜ ସାନ ଭଉଣୀର ବିୟୋଗ ଖବର ପାଇ ମୋ ସ୍ତ୍ରୀ ବହୁତ କାନ୍ଦୁଥିଲେ ଓ ଖା'ପିଅ କରୁନଥିଲେ । ଏହିପରି ଏକ ପରିସ୍ଥିତିରେ ଆମେ ଯେତେବେଳେ ତାଙ୍କ ଘରକୁ ଆସିଲୁ ସେ ସାନ ଭଉଣୀ ଭଳି ମୋ ସ୍ତ୍ରୀଙ୍କ ପାଖରେ ବସି ଆଶ୍ୱାସନା ଦେଲେ । ତାଙ୍କ ଆଖିରୁ ଲୁହ ପୋଛିଦେଲେ । ପାଖରେ ବସି ବାଧ କରି ଖୁଆଇଲେ । ତାଙ୍କର ସ୍ନେହପରିଚର୍ଯ୍ୟା ଭିତରେ ମୋ ସ୍ତ୍ରୀ ସାମୟିକ ଭାବରେ ନିଜର ଦୁଃଖ ଭୁଲିଗଲେ । ସେ ଦିନ ନୀହାରିକା ଦେବୀଙ୍କ ଭିତରେ ଏକ ଦରଦୀ ସମ୍ବେଦନଶୀଳ ବ୍ୟକ୍ତିତ୍ୱଟିର ସନ୍ଧାନ ମୁଁ ପାଇଥିଲି । ତାଙ୍କ ଭିତରର ସେହି

ପରିଚୟଟି ପରବର୍ତ୍ତୀ ସମୟରେ ଆତ୍ମୀୟତାରେ ରୂପାୟିତ ହୋଇଥିଲା । ସେ ଯାଜପୁର ଯାଇ ଦିନଟିଏ ଆମ ଗହଣରେ କଟାଇଥିଲେ । ବିରଜା ମନ୍ଦିରରେ ତାଙ୍କର ମାନସିକ ପୂରଣ କରିବା ଅବସରରେ ପ୍ରସାଦ ସେବନର ବ୍ୟବସ୍ଥା କରି ଆମମାନଙ୍କୁ ଆପ୍ୟାୟିତ କରିଥିଲେ । ବନ୍ଧୁ ସୁଲଭ ଆତ୍ମୀୟତା ଭିତରେ ନିଜର ଭିନ୍ନ ଦୃଷ୍ଟିଭଙ୍ଗୀ ସତ୍ତ୍ୱେ ତାଙ୍କର ପୂଜାଉପାସନା ସହିତ ଆମେ ସାମିଲ ହୋଇଥିଲୁ ଓ ତାଙ୍କ ଗହଣରେ କେତୋଟି ଘଣ୍ଟା କଟାଇଥିଲୁ । ସେହି ଅବସରରେ ତାଙ୍କ ସହିତ ମୋ ପିଲାଙ୍କର ଓ ପତ୍ନୀଙ୍କର ସଂପର୍କ ନିବିଡ଼ ହୋଇଥିଲା । କିନ୍ତୁ ସେହି ସ୍ନେହୀ, ଦରଦୀ ଓ ଈଶ୍ୱର-ବିଶ୍ୱାସୀ ମଣିଷଟି ଆଜି ଆଉ ନାହାଁନ୍ତି । ଏହି ଦାରୁଣ ସତ୍ୟଟିକୁ ବିଶ୍ୱାସ କରିବା କଷ୍ଟଦାୟକ ହେଉଛି ।

ବନ୍ଧୁ ନାରାୟଣ ବାବୁଙ୍କ ପାଖରୁ ଜାଣିଲି ଯେ ନୀହାରିକା ଦେବୀ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଓ ବିଶିଷ୍ଟ ଗାନ୍ଧୀବାଦୀ ନେତା ୰ ନବକୃଷ୍ଣ ଚୌଧୁରୀଙ୍କ ରାଜନୈତିକ କାର୍ଯ୍ୟଧାରା ଉପରେ ଗବେଷଣା କରୁଛନ୍ତି । ଏହି ପରିପ୍ରେକ୍ଷୀରେ ନବ ବାବୁଙ୍କ ସହିତ ସଂପୃକ୍ତ ଥିବା କେତେକ ବ୍ୟକ୍ତିବିଶେଷଙ୍କ ସଙ୍ଗେ ସେ ଟିକିଏ ସାକ୍ଷାତ କରି ତଥ୍ୟ ସଂଗ୍ରହ କରିବାକୁ ଆଗ୍ରହୀ । ସର୍ବୋଦୟ ସଂଗଠନ ସହିତ ମୋର କିଞ୍ଚିତ ସଂପର୍କ ଥିବା ଯୋଗୁଁ ଅନଗୁଳଠାରେ ରହୁଥିବା ନବ ବାବୁଙ୍କ ଧର୍ମପତ୍ନୀ ମାଳତୀ ଦେବୀ ଓ ଅନ୍ୟମାନଙ୍କ ସଙ୍ଗେ ସାକ୍ଷାତ କରିବାକୁ ତାଙ୍କ ସହିତ ଯିବା ପାଇଁ ନାରାୟଣ ବାବୁ ମୋତେ ଅନୁରୋଧ କରିଥିଲେ । ଫଳରେ ୧୯୯୦ ମସିହା ମେ' ମାସରେ ନାରାୟଣ ବାବୁ ଓ ନୀହାରିକା ଦେବୀଙ୍କ ସହିତ ମୁଁ ଅନଗୁଳ ଆସିଲି। ସେଠାରେ ପୂଜ୍ୟା ମାଳତୀ ଦେବୀଙ୍କ ସହିତ ଆମେ ସାକ୍ଷାତ କଲୁ ଓ ତାଙ୍କଠାରୁ କେତେକ ତଥ୍ୟ ସେ ସଂଗ୍ରହ କଲେ। ସେତେବେଳେ ଅନଗୁଳଠାରେ ଅବସ୍ଥାନ କରୁଥିବା ବିଶିଷ୍ଟ ଗାନ୍ଧୀବାଦୀ ଶ୍ରୀ ମଦନମୋହନ ସାହୁ ଓ ଢେଙ୍କାନାଳର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବୈଷ୍ଣବ ଚରଣ ପଟ୍ଟନାୟକଙ୍କୁ ମଧ୍ୟ ଭେଟିଥିଲୁ । ନବ ବାବୁଙ୍କ ବିଷୟରେ ଅନେକ ପ୍ରଶ୍ନ ସେମାନଙ୍କୁ ନୀହାରିକା ଦେବୀ ପଚାରିଥିଲେ ଓ ସେମାନଙ୍କ ପାଖରୁ ତଥ୍ୟ ସଂଗ୍ରହ କରିଥିଲେ । ଅନ୍ୟ ଏକ ଅବସରରେ କଟକରେ ମୋ ସଙ୍ଗେ ଯାଇ ସେ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା, ଶ୍ରୀ ଶରତଚନ୍ଦ୍ର ମହାରଣା ଓ ଶ୍ରୀ ମନମୋହନ ଚୌଧୁରୀଙ୍କ ସହିତ ସାକ୍ଷାତ କରିଥିଲେ । ନବ ବାବୁଙ୍କ ଉପରେ ଥିସିସ୍ ଲେଖିବାକୁ ସେ ନିଷ୍ଠାପର ଉଦ୍ୟମ କରୁଥିଲେ । ଜଣେ ଅଧ୍ୟାପିକା ଭାବରେ ଗବେଷଣା ପ୍ରତି ତାଙ୍କ ଭିତରେ ଆଗ୍ରହ

ରହିଥିଲା । ପାରିବାରିକ ଜଞ୍ଜାଳ ଭିତରେ ଥାଇ ମଧ୍ୟ ଏକ ବୌଦ୍ଧିକ ଅଭୀପ୍ସା ସେ ପୋଷଣ କରିଥିଲେ । ନିଜର ସମୟ ଓ ସୁବିଧାକୁ ସେ ଉଚ୍ଚତର ଗବେଷଣା ଓ ଅନ୍ୱେଷଣ ଦିଗରେ ନିୟୋଜିତ କରୁଥିଲେ । ପାରିବାରିକ ଦାୟିତ୍ୱ ସହ କର୍ମକ୍ଷେତ୍ରର କର୍ତ୍ତବ୍ୟକୁ ମଧ୍ୟ ସେ ସୁଚାରୁରୂପେ ତୁଲାଉଥିଲେ ।

ଏକ ଦରଦୀ ଓ ପ୍ରଜ୍ଞାଦୀପ୍ତ ଜୀବନ ଅସମୟରେ ଝରିପଡ଼ିଲା । ଅତି ଅଳ୍ପ ବୟସରୁ ସେ ରୋଗାକ୍ରାନ୍ତ ହେଲେ । ଆଧୁନିକ ଚିକିତ୍ସାର ସୁଯୋଗ ସତ୍ତ୍ୱେ ତାଙ୍କର ଜୀବନଦୀପ ନିଷ୍ପ୍ରଭ ହୋଇଗଲା । ତାଙ୍କର ସ୍ୱପ୍ନ ସ୍ୱପ୍ନରେ ରହିଗଲା । ସେ ଥିସିସ୍ ଶେଷ କରିପାରିଲେନାହିଁ । ସେହିପରି ତାଙ୍କ ଅନ୍ତରତଳର ଅନେକ ଭାବନା ମଧ୍ୟ ଅପୂରଣ ରହିଥିବ । ପିଲାଙ୍କର ଅଳିଅର୍ଦ୍ଦଳି ଓ ସ୍ୱାମୀଙ୍କର ସ୍ନେହମମତାରେ ଛନ୍ଦା ଜୀବନଟି ଏତେ ସହସା ଯେ ନିଷ୍ପ୍ରଭ ହୋଇଯିବ ଏହା କିଏ କ'ଣ କେବେ ଚିନ୍ତା କରିଥିଲା !

ମୁଁ ଯେତେଥର ତାଙ୍କ ଘରକୁ ଯାଇଛି ପ୍ରତ୍ୟେକ ଥର ତାଙ୍କର ଶ୍ରଦ୍ଧା ଓ ଅଭ୍ୟର୍ଥନା ଲାଭ କରିଛି । ତା'ରି ଭିତରେ ତାଙ୍କ ବ୍ୟକ୍ତିତ୍ୱର ଯେଉଁ ସାମାନ୍ୟ ପରିଚୟ ପାଇଛି ତାହା ଭୁଲିପାରିବିନାହିଁ । ସେହି ସମ୍ବେଦନଶୀଳ ଅନୁରାଗ ମୋ ସ୍ମୃତି ଭିତରେ ଅଲିଭା ରହିବ । ଆଜି ଜୀବନର ସକଳ ମୂଲ୍ୟବୋଧ ନିମ୍ନଗାମୀ ହେଉଥିବାବେଳେ ଜଣେଜଣେ ମଣିଷଙ୍କୁ ଦେଖିଲେ ମନରେ ଶ୍ରଦ୍ଧା ଆସେ, ଜୀବନ ପ୍ରତି ସକାରାତ୍ମକ ଦୃଷ୍ଟିଭଙ୍ଗୀଟି ଦୃଢ଼ ହୋଇଥାଏ । ଆମ ସମାଜର କ୍ଷୟଶୀଳ ପରିବେଶ ଭିତରେ ତଥାପି ମଣିଷପଣିଆ ଅଛି, ମାନବିକ ସ୍ନେହମମତା ରହିଛି– ଏହି ଆତ୍ମବିଶ୍ୱାସ ଆସିଥାଏ । ୰ ନୀହାରିକା ଦେବୀଙ୍କୁ ମନେପକାଇବା ଭିତରେ ଏହି ବିଶ୍ୱାସଟି ନିଜ ମଧ୍ୟରେ ଅତୁଟ ରହୁଛି ।

ତାଙ୍କର ଅମ୍ଳାନ ସ୍ମୃତି ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି ।

*ତର୍କ ଓ ଦର୍ଶନ ବିଭାଗ*
*ନରସିଂହ ଚୌଧୁରୀ ମହାବିଦ୍ୟାଳୟ*
*ଯାଜପୁର-୭୫୫୦୦୧*



# ଦିବଂଗତ

*ଅଧ୍ୟାପିକା ସୁଲୋଚନା ଦାସ*

ସ୍ମୃତି ଚିରକାଳ ମଧୁର । ମାତ୍ର ଏହା ଯେତେବେଳେ କରୁଣ ଓ ଗଭୀରତର ଦୁଃଖଦ ସ୍ମୃତିରେ ରୂପାନ୍ତରିତ ହୋଇଯାଏ, ତାହା ଆହୁରି ସଜଳ, ଆହୁରି ଆର୍ଦ୍ର କରିଦିଏ ମଣିଷକୁ । ମୁହୂର୍ତ୍ତକ ପାଇଁ ହେଉ ପଛେ ମଣିଷ ଭିଜିଯାଏ, ବତୁରିଯାଏ । ଅନ୍ତରର କେଉଁ ନିଭୃତତମ ପ୍ରଦେଶରେ ଉଚ୍ଛ୍ୱାସର ଢେଉଟିଏ ଉଠେ । ଉଭୟ ସ୍ମୃତିର ପ୍ରଗାଢ଼ ଅନ୍ତରଙ୍ଗତାରେ ଭାସିଭାସି ବିଗତ ଅତୀତରେ ଆଉଥରେ ପାଦ ଦିଏ ମଣିଷ । ଫେରିଯାଏ ·ସେଇ ଅଫେରନ୍ତି ସମୟକୁ ଏକଦା ଯାହା ପ୍ରାଣବନ୍ତ ଥିଲା, ଜୀବନ୍ତ ଥିଲା ।

ସେ ଦିନ ସମ୍ବଲପୁରରେ ସକାଳୁ 'ସମାଜ'ର ପୃଷ୍ଠା ଓଲଟାଉଓଲଟାଉ ଦୃଷ୍ଟି ମୋର ସ୍ଥିର ହୋଇଯାଇଥିଲା ଗୋଟିଏ ସମ୍ବାଦ ଉପରେ । ନୀହାରିକା ଆଉ ନାହାଁନ୍ତି । ଦିଲ୍ଲୀର ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ ଅଫ୍ ମେଡ଼ିକାଲ ସାଇନ୍‌ସେସ୍‌ର ଡାକ୍ତରମାନେ ନିରାଶବାଣୀ ଶୁଣାଇଦେଇଥିଲେ । ସର୍ବଗ୍ରାସୀ କରାଳମୃତ୍ୟୁର ଅନ୍ଧକାର ଗହ୍ୱର ଭିତରକୁ ସେ ଟାଣି ହୋଇଯାଇଥିଲେ । କେହି ତାଙ୍କୁ ରକ୍ଷା କରିପାରିନଥିଲେ । ଚିକିତ୍ସା, ଗୁଣିଗାରିଡ଼ି, ଟୁଣୁକାଟୁଣୁକି, ପୂଜାଅର୍ଚ୍ଚନା କିଛି ତାଙ୍କୁ ଅଟକାଇପାରିଲାନାହିଁ । ସ୍ୱାମୀଙ୍କର ଅସୁମାରି ପ୍ରେମ, ପିଲାମାନଙ୍କର ବ୍ୟାକୁଳତା, ବାପାମା'ଙ୍କ ଆଖିର ଅସରନ୍ତି ଲୁହ, ଶାଶୁଶ୍ୱଶୁର-ସାଙ୍ଗସାଥୀ-ଜ୍ଞାତିକୁଟୁମ୍ବମାନଙ୍କର ଅକୁଣ୍ଠ ସଦିଚ୍ଛା ସବୁକିଛି ନିଷ୍ଫଳ ଅରଣ୍ୟରୋଦନରେ ପରିଣତ ହେଲା । କେହି ସେ ନିଦାରୁଣ ମୃତ୍ୟୁର ପଥରୋଧ କରିପାରିଲେନାହିଁ ।

ଏତେ ଆକସ୍ମିକ ଓ ଅଭାବିତ ଥିଲା ସମ୍ବାଦଟି ଯେ ପ୍ରଥମେ ବିଶ୍ୱାସ କରିହେଲାନାହିଁ । ଆଉଥରେ ଆମୂଳଚୂଳ ସମ୍ବାଦଟି ପଢ଼ିନେଲି । ସତରେ କ'ଣ ନୀହାରିକା ସମସ୍ତଙ୍କୁ ଛାଡ଼ି ସେହି ଅଜଣା ପଥର ଯାତ୍ରୀ ହୋଇଗଲେ ! ଜୀବନଟା ସତରେ କେଡ଼େ ଭଙ୍ଗୁର ! ଆଜି ଥିବା ମଣିଷଟି କାଲିକି ନାହିଁ । ମଣିଷର ସବୁ ବୁଦ୍ଧିବିଦ୍ୟା, ଜ୍ଞାନଗରିମା, ସାଧନାତପସ୍ୟା ସେଠି ମିଥ୍ୟା ହୋଇଯାଏ । ସବୁ

ଅହଂକାର ତୁଚ୍ଛ ହୋଇଯାଏ । ନିମିଷକ ଭିତରେ ଗୋଟିଏ ପ୍ରାଣବନ୍ତ ସତ୍ତା ରୂପାନ୍ତରିତ ହୋଇଯାଏ ସ୍ମୃତିରେ !

ନୀହାରିକାଙ୍କ କଥା ଭାରି ମନେପଡ଼ିଲା । ତାଙ୍କ ମୁହଁ, ତାଙ୍କ କଥା, ତାଙ୍କ ହସ, ତାଙ୍କ ଚାହାଣୀ ସବୁକିଛି ମୂର୍ତ୍ତିମନ୍ତ ହୋଇ ଭାସିଉଠିଲା ମୋ ସ୍ମୃତିପଟରେ । ବାରମ୍ବାର ମନେପଡ଼ିଲା ତାଙ୍କ ସହିତ ବିତିଥିବା କେତୋଟି ମଧୁର ମୁହୂର୍ତ୍ତ । ଛାତିଟା ଭାରିଭାରି ଲାଗିଲା । ଆଖିଟା ଜକେଇ ଆସିଲା । ତାଙ୍କ ସହିତ ସଂପର୍କ ଏତେ ବେଶୀ ନହେଲେବି, ସେ ମୋର ବେଶ୍ ଜଣାଶୁଣା ଥିଲେ । ମୋ ସାନଭଉଣୀର ସାଙ୍ଗ ସେ ଥିଲେ । ଜଣକୁ ବୁଝିବା ପାଇଁ, ଅନୁଭବ କରିବା ପାଇଁ କ'ଣ ଗୁଡ଼ାଏ ଦେଖାଚାହାଁ ନିହାତି ଦରକାର ?

ସାନଭଉଣୀ ସାଙ୍ଗରେ ଯାଇଛି ତାଙ୍କ ଘରକୁ । ସାନଭଉଣୀ ଦୃଷ୍ଟିରେ ଦେଖିଛି ତାଙ୍କୁ । ତାଙ୍କଠାରୁ ଆତିଥ୍ୟ ଗ୍ରହଣ କରିଛି । ମୋ ଘରକୁ ବି ସେ ଆସିଛନ୍ତି । ବହୁବାର ଦେଖାସାକ୍ଷାତ । ଭାରି ସରଳ, ଅମାୟିକ ଝିଅଟିଏ । ବେଶପୋଷାକ, କଥାବାର୍ତ୍ତା, ଚାଲିଚଳଣ କେଉଁଥିରେ ସାମାନ୍ୟତମ ଅହଂକାରର ସ୍ପର୍ଶ ନାହିଁ । ସ୍ମିତହସରେ ବେଶ୍ ଆଦରରେ ସେ ପାଛୋଟି ନିଅନ୍ତି ଆମକୁ । ଆତିଥ୍ୟ ପ୍ରଦର୍ଶନରେ ସେମିତି କିଛି ଆଡ୍ମ୍ବରିତା ନଥାଏ । ବରଂ ଅଧିକ ଆତ୍ମୀୟତା ଥାଏ ସେଥିରେ । ଭାରି ସ୍ନେହୀ ମଣିଷଟିଏ । ବୋଧହୁଏ ଭଲଭଲ ଜିନିଷ ଦେଖି ଆମେ ଯେମିତି ଲୋଭାତୁର ହୋଇଉଠୁ, ମୃତ୍ୟୁ ବି ସେମିତି ଭଲମଣିଷମାନଙ୍କୁ ଭାରି ଲୋଭ କରେ । ନିୟତିର କି ବିଚିତ୍ର ସ୍ୱଭାବ !

ଏତେ ଅଳ୍ପ ବୟସରେ ନୀହାରିକା ଚାଲିଯିବେ ବୋଲି କିଏ ଭାବିଥିଲା ? ବିଦାୟୀ ମଣିଷର ଦୁଃଖ ନାହିଁ, କିନ୍ତୁ ଏଠି ଛାଡ଼ିଦେଇ ଯାଉଥିବା ମଣିଷମାନଙ୍କର ଅସୁମାରି ଦୁଃଖ । ନୀହାରିକା ଜାଣିଲେନାହିଁ ତାଙ୍କ ପଛରେ କିଏ କେତେ ଅଶ୍ରୁତର୍ପଣ କଲେ, କିଏ କେତେ ଦୁଃଖ କଲେ । ସ୍ୱାମୀ ତାଙ୍କର କେତେ ବ୍ୟାକୁଳ ହୋଇ ଅହରହ ଝୁରୁଛନ୍ତି । ମା' ଛେଉଣ୍ଡ ପିଲାମାନେ କିପରି ଦିନ ବିତାଉଛନ୍ତି। ଅଥଚ ସେଇମାନଙ୍କୁ ନେଇ ସେ କେତେ ସ୍ୱପ୍ନ ଦେଖୁନଥିଲେ ଦିନେ ! ତାଙ୍କର ସବୁ ସ୍ୱପ୍ନ ଯେ ଏମିତି ଅଧୁରା ରହିଯିବ, କେହି କ'ଣ ଦିନେ କଳ୍ପନା କରିଥିଲା ?

ଢେଙ୍କାନାଳ ମହିଳା ମହାବିଦ୍ୟାଳୟରେ ଯୋଗଦେବା ପରେ ନୀହାରିକା-ସ୍ୱାମୀଙ୍କ ସହିତ ପରିଚୟ ହୁଏ । ନାରାୟଣ ବାବୁ ଭାରି ଲାଜକୁଳା ଲୋକ ।

ସେଥିପାଇଁ ବୋଧହୁଏ ଆଗରୁ ଯେତେଥର ଯାଇଛି, କେବେ ତାଙ୍କୁ ଭେଟିନଥିଲି । ତାଙ୍କୁ ଦେଖି ମୋର ମନେହେଲା, ସତେ ଯେପରି ସେ ପତ୍ନୀବିୟୋଗର ଅତଳତଳ-ସ୍ପର୍ଶୀ ଗଭୀର ଦୁଃଖର ଆବର୍ତ୍ତରୁ ଏବେ ବି ମୁକ୍ତ ହୋଇ ବାହାରିଆସିପାରି ନାହାଁନ୍ତି । କେତେ ବା ବୟସ ତାଙ୍କର ! ଜୀବନର ଅବଶିଷ୍ଟ ଦୀର୍ଘପଥ ସେ ଏକାଏକା କେମିତି ଚାଲିବେ ? କେମିତି ସେ ଏକାଏକା ନୀହାରିକାଙ୍କ ରକ୍ତମାଂସରେ ଗଢ଼ା ପିଲାମାନଙ୍କୁ ମଣିଷ କରି ଦୁନିଆ ଦାଣ୍ଡରେ ଠିଆ କରେଇବେ ? ନିଜ ଦେହ-ମନ-ପ୍ରାଣର ଆଦିଗନ୍ତ ଶୂନ୍ୟତାକୁ ସେ କେମିତି ପୂରଣ କରିବେ ? ନୀହାରିକାଙ୍କର ଦିବଂଗତ ଆତ୍ମା କ'ଣ ସ୍ୱର୍ଗରେ ଥାଇ ଏ ଦୁଃଖ ସହ୍ୟ କରିପାରୁଥିବ ? କେଜାଣି !

ନୀହାରିକାଙ୍କ ଆତ୍ମାର ସଦ୍‌ଗତି ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି । ତାଙ୍କ ଅମରଆତ୍ମା ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ନିବେଦନ କରୁଛି । ଈଶ୍ୱର ନାରାୟଣ ବାବୁଙ୍କ ଜୀବନର ଚଲାପଥକୁ ସହଜସୁଗମ କରନ୍ତୁ । ତାଙ୍କୁ ଅତୁଟ ମନୋବଳ ଦିଅନ୍ତୁ । ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ସହାୟ ହୁଅନ୍ତୁ । ଦୁଃଖର ଗୋଟିଏ ବର୍ଷ ଅତିକ୍ରମିଯିବାକୁ ସେ ବସିଲେଣି । ଆଗାମୀ ବର୍ଷଗୁଡ଼ିକରେ ସେ ସୁଖଶାନ୍ତିରେ ଭରା କର୍ମମୟ ଜୀବନଯାପନ କରନ୍ତୁ ।

*ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ*
*ଢେଙ୍କାନାଳ ମହିଳା ମହାବିଦ୍ୟାଳୟ*
*ଢେଙ୍କାନାଳ-୭୫୯୦୦୧*





# ସ୍ମୃତି ନୁହେଁ– ଅନୁଭୂତି

*ଡକ୍ଟର ପତିତପାବନ ବାନାର୍ଜୀ*

ମଣିଷ ଜୀବନରେ ବନ୍ଧୁ ମିଳନ୍ତି ଅଳ୍ପ । ସେମାନଙ୍କ ମଧ୍ୟରେ ଅତିଅଳ୍ପ ଅନ୍ତରଙ୍ଗ ବନ୍ଧୁମାନଙ୍କର ସଂଖ୍ୟା । ସେହି ସ୍ୱଳ୍ପ ଅନ୍ତରଙ୍ଗ ବନ୍ଧୁମାନଙ୍କ ମଧ୍ୟରୁ ମୋ' ପାଇଁ ଅଧ୍ୟାପକ ଶ୍ରୀ ନାରାୟଣ ମହାନ୍ତି ଅନ୍ୟତମ । ବିଗତ ବର୍ଷ କେତୋଟିରେ ପ୍ରାୟ ପ୍ରତ୍ୟହ ତାଙ୍କ ସହ କର୍ମକ୍ଷେତ୍ରକୁ ଗମନ-ପ୍ରତ୍ୟାବର୍ତ୍ତନାଦି କରିଛି । ସେ କେବଳ ଦର୍ଶନ ବିଭାଗର ଜଣେ ଅଧ୍ୟାପକ ନୁହଁନ୍ତି, ଜଣେ ନିଷ୍ଠାପର ଦର୍ଶନଶାସ୍ତ୍ରବିତ୍ ଏବଂ ସ୍ଥିତପ୍ରଜ୍ଞ ବ୍ୟକ୍ତି ବୋଲି ସହକର୍ମୀମାନେ ସମସ୍ତେ ତାଙ୍କୁ ଖୁବ୍ ଭଲପା'ନ୍ତି । ସତ୍ୟ ଏବଂ ନ୍ୟାୟ ପାଇଁ ଯୁଦ୍ଧରେ ସେ ସତତ ଦୃଢ଼ ଏବଂ ସ୍ଥିର । ପୂଜ୍ୟପୂଜାର ବିବିଧ ଅନୁଷ୍ଠାନ ସହ ସେ ସଂପୃକ୍ତ । ଓଡ଼ିଶା ସରକାରୀ କଲେଜ ଶିକ୍ଷକ ସଂଘର ସେ ଯୁଗ୍ମ ସଂପାଦକ ଦାୟିତ୍ୱ ତୁଲାଇଥିଲେ । ଗତ କେତେବର୍ଷଧରି ଅଧ୍ୟାପକମାନଙ୍କ ପାଇଁ ଏକ ବିଶାଳ ସଂଗ୍ରାମରେ ସେ ଯେଉଁଭଳି ସେନାପତିତ୍ୱ କରୁଛନ୍ତି ତଦ୍ୱାରା ସେ ସମସ୍ତଙ୍କ ନିକଟରେ ଅତୀବ ଶ୍ରଦ୍ଧାଭାଜନ ହୋଇଛନ୍ତି । ତାଙ୍କର ଅମାୟିକ ବ୍ୟବହାରଦ୍ୱାରା ତାଙ୍କ ସଂପର୍କରେ ଆସିଥିବା ଯେକୌଣସି ବ୍ୟକ୍ତି ନିଶ୍ଚିତ ଭାବରେ ମୁଗ୍ଧ ହେବେ ।

ଏଭଳି ଜଣେ ବହୁମୁଖୀ ବ୍ୟକ୍ତିତ୍ୱବିଶିଷ୍ଟ ସର୍ବଜନକଲ୍ୟାଣକାମୀ ବନ୍ଧୁଙ୍କ ଜୀବନରେ ଏପରି ଏକ ଦାରୁଣ ଆଘାତ ଏମିତି ଅସମୟରେ ଆସି ପହଞ୍ଚିବ, ଏହା ଥିଲା ସମସ୍ତଙ୍କ କଳ୍ପନାର ଉର୍ଦ୍ଧ୍ୱରେ । ବନ୍ଧୁଙ୍କ ପତ୍ନୀ ନୀହାରିକା ଦାସ ଥିଲେ କଟକ ସିଟି କଲେଜର ଇତିହାସ ବିଭାଗର ଅଧ୍ୟାପିକା ତଥା ମୁଖ୍ୟ । ଅନେକ ସମୟରେ ବନ୍ଧୁଙ୍କର ବାସଭବନ କଟକ ଝାଞ୍ଜିରୀମଙ୍ଗଳା ନିକଟବର୍ତ୍ତୀ 'ନଦିଆ ନିବାସ'ରେ ତାଙ୍କ ସହ ମୋର ସାକ୍ଷାତ ହୋଇଛି । ଦେଖା ହେଲାମାତ୍ରେ ହସିଦିଅନ୍ତି – ପଚାରନ୍ତି, "ସାର୍, ଆଉ କ'ଣ ଖବର ?" ଦୁଇଟି ପୁତ୍ର, ସ୍ୱାମୀଙ୍କ ସହ ସରଳ, ନିରାଡ଼ମ୍ବର ଜୀବନ ବିତାଇବାରେ ଅଭ୍ୟସ୍ତ । ଘରେ ସମସ୍ତେ ଏକତ୍ରଥିବାରୁ ବନ୍ଧୁ ନାରାୟଣ ବାବୁଙ୍କର ପରିବାରଟି ବେଶ୍ ବଡ଼ । ବନ୍ଧୁ ହେଉଛନ୍ତି ଘରର ଜ୍ୟେଷ୍ଠପୁତ୍ର । ରାମଙ୍କ ଆଦର୍ଶରେ ସୀତା ଅନୁପ୍ରାଣିତ ହେବାପରି

ବନ୍ଧୁପତ୍ନୀ ପରିବାରର ନୌକା ବାହିବାରେ ଅସୀମ ତ୍ୟାଗ, ଧୈର୍ଯ୍ୟ ତଥା ଆନ୍ତରିକତା ପ୍ରଦର୍ଶନ କରିଛନ୍ତି ।

ତା୧୪।୧୨।୧୯୯୪ରିଖ- ରାତ୍ରି ଏଗାରଟା ହେବ; ହଠାତ୍ ଫୋନ୍ ଯୋଗେ ବାର୍ତ୍ତା ପାଇଲି ଅଧ୍ୟାପିକା ନୀହାରିକା ଦାସ ଆଉ ନାହାଁନ୍ତି । ପ୍ରଥମେ ନିଜ କାନକୁ ବିଶ୍ୱାସ କରିହେଲାନାହିଁ । ବନ୍ଧୁଙ୍କ ଶ୍ୟାଳକ ନିଜର ପରିଚୟ ଦେଇ ପ୍ରାୟ କାନ୍ଦିକାନ୍ଦି କହୁଥିଲେ । ମନେହେଲା ମୋର ହୃତ୍‌ପିଣ୍ଡର ସ୍ପନ୍ଦନ ବହୁତ ବଢ଼ିଯାଇଛି । ମାନିନେବାକୁ ହିଁ ହେଲା । ପାର୍ଥିବ ଜୀବନରେ ମୃତ୍ୟୁ ହିଁ ଏକମାତ୍ର ନିଛକ ସତ୍ୟ । କାହାପାଇଁ କେତେବେଳେ କେମିତି ଆସିବ ସେ ହିଁ କେବଳ କହିପାରିବ ।

ମୃତ୍ୟୁର କେତେକ ଦିନ ପୂର୍ବରୁ ସେ ପୀଡ଼ିତା ଥିଲେ । ବନ୍ଧୁ ନାରାୟଣ ବାବୁ ତାଙ୍କର ଆରୋଗ୍ୟ ପାଇଁ ଚିକିତ୍ସା ଦିଗରେ କିଛି ବାକିରଖି ନାହାଁନ୍ତି । କଟକରେ ସମସ୍ତ ପ୍ରକାର ଚିକିତ୍ସା ପରେ ଦିଲ୍ଲୀର ଏ.ଆଇ.ଆଇ.ଏମ୍.ଏସ୍.କୁ ନେଇ, ସେଠାରୁ ଲକ୍ଷ୍ନୌର ପ୍ରସିଦ୍ଧ ହସ୍ପିଟାଲକୁ ସ୍ଥାନାନ୍ତରିତ କରି ସମସ୍ତ ବ୍ୟବସ୍ଥା କରାଇଲେ । କୋଲାଜେନ୍ ଡିଜ୍‌ଅର୍ଡ଼ରର ଚିକିତ୍ସା ପାଇଁ ସେଠାକାର ହସ୍ପିଟାଲ ଭାରତପ୍ରସିଦ୍ଧ । ସେଠାରୁ ଏକପ୍ରକାର ସୁସ୍ଥତାର ସନ୍ଦେଶ ନେଇ ସେ ଫେରିଆସିଲେ । ଆମେ ସମସ୍ତେ ଖୁସି ହେଲୁ – ଯାହାହେଉ ଏଣିକି ସଂପୂର୍ଣ୍ଣ ସୁସ୍ଥ ହୋଇଯିବେ । ସେ ନିଜେ ମଧ୍ୟ ପୁନଶ୍ଚ କର୍ମକ୍ଷେତ୍ରରେ ଯୋଗଦାନ କରିବାକୁ ଇଚ୍ଛାପ୍ରକାଶ କଲେ । କିନ୍ତୁ ବିଧିର ବିଧାନ ଥିଲା ଅନ୍ୟ ପ୍ରକାର ।

ଅନ୍ତ୍ୟେଷ୍ଟି ସଂସ୍କାର ପରେ ଦିନେ ବନ୍ଧୁଙ୍କ ଗ୍ରାମକୁ ଯାଇଥିଲି– କିଶୋରନଗର-ମଲ୍ଲୀପୁର । ମହାନଦୀ କୂଳରେ ଆମ୍ବତୋଟା ବେଷ୍ଟିତ ଗ୍ରାମଟି । 'ଜ୍ଞାନମଣ୍ଡଳ'ର ସୁପ୍ରସିଦ୍ଧ ସଂପାଦକ ୰ ବିନୋଦ କାନୁନ୍‌ଗୋଙ୍କ ଘରକୁ ଲାଗିଛି ବନ୍ଧୁଙ୍କର ଘର । ଧାନ କଟା ହୋଇ ଖଳାକୁ ଆସୁଥାଏ । ସମସ୍ତେ କାର୍ଯ୍ୟରେ ବ୍ୟସ୍ତ । ବନ୍ଧୁଙ୍କର ସାନପୁଅଟି ଘରଆଗରେ ଖେଳୁଥିବାର ଦେଖିଲି । ସେ ନିର୍ବିକାର । କ'ଣ ଘଟିଛି ବୁଝିବା ସତେଯେପରି ତା'ର କାମ ନୁହେଁ । ସେ ଖେଳୁଛି । ତାକୁ ଦେଖି ଆଖି ଛଳଛଳ ହୋଇଗଲା । ବଡ଼ପୁଅଟିକୁ ଦେଖିଲି । ସରବତ ଆଣିଦେଲା । ତାକୁ ଦେଖି ବନ୍ଧୁ ମୋତେ କହିଥିବା ଛୋଟ ଘଟଣାଟିଏ ମନେପଡ଼ିଲା । ବନ୍ଧୁପତ୍ନୀ କଟକର ଗଡିରାଉତ ପାଟଣାସ୍ଥିତ ଆବାସିକ ବିଦ୍ୟାଳୟରେ ତା'ର ଆଡ୍‌ମିସନ୍ କରାଇଥିଲେ । ଦିନେ ସେଠାକାର ଜଣେ

ସାଙ୍ଗପିଲା ତାକୁ ପରିହାସରେ କହିଲା, "ହେ ଶୁଣ୍ । ତୁ' ଏଠିକୁ କାହିଁକି ଆସିଛୁ, ମୁଁ ଜାଣିଛି । ତୋ ମା' ମରିଯାଇଛନ୍ତି ।" ଏହା ଶୁଣି ସେ ଉତ୍ତର ଦେଲା, "ମୋ ମା' କଟକରେ ଅଛନ୍ତି । ତୁ କାହିଁକି ମିଛ କହୁଛୁ ?" ଏହାପରେ ଦିନେ ବନ୍ଧୁ ପୁଅକୁ ଦେଖା କରିବାକୁ ଯିବାରୁ ସେ ଏଇକଥା ଜଣାଇ କହିଲା, "ମା'ଙ୍କଠାରୁ ଗୋଟିଏ ଚିଠି ଲେଖାଇଆଣିବ । ମୁଁ ସେ ଦୁଷ୍ଟପିଲାକୁ ଦେଖାଇବି ।" ବନ୍ଧୁ ତାହା ହିଁ କଲେ । ସେ ପିଲାଟି ଚିଠି ଦେଖି ନିଜର ଦୋଷ ସ୍ୱୀକାର କରିଥିଲା ।

ବନ୍ଧୁପତ୍ନୀ ସ୍ୱର୍ଗାରୋହଣ କଲେ । ସତ୍କାର ହେବ ଗାଁରେ । ମୁଖାଗ୍ନି ଦେବ ବଡ଼ପୁଅ । ଗାଡ଼ି ନେଇ ତାକୁ ସ୍କୁଲରୁ ଆଣିବା ପାଇଁ ଗଲେ । ସେ ଶୋଇପଡ଼ିଥିଲା । ଘରକୁ ଯିବାକଥା ଶୁଣି ଛୋଟପିଲାଟି କେତେ ଖୁସିରେ ନାଚିଗଲା । ପୁଅ ଜାଣେ ମା' ଅଛନ୍ତି କଟକରେ । ମାତ୍ର ଗାଡ଼ି ଗାଁଆଡ଼କୁ ଯିବାରୁ ବ୍ୟସ୍ତ ହୋଇ ଗାଁକୁ ଯିବାର କାରଣ ପଚାରିଲା । ସେତେବେଳେ କିଏବା କି ଉତ୍ତର ଦେବେ ତାକୁ ? କ'ଣ ବା କହି ବୁଝାଇବେ ? ପୂର୍ବୋକ୍ତ ଘଟଣାଟି ତା' ପାଇଁ ଯେ ଏକ ନାଟକୀୟ ବିଦ୍ରୂପ ହେବ, ଏହା କିଏ କଳ୍ପନା କରିଥିଲା ? କେହି କଳ୍ପନା ନକଲେ ମଧ ତା'ର ଆଦରଣୀୟା ମା' ଅଧାପିକା ନୀହାରିକା ଦାସ ହୁଏତ ଏହା ଦୂରରୁ ଦେଖିପାରିଥିଲେ । ତାଙ୍କ ପରେ ପୁଅ କିପରି ଏକାକୀ ରହିପାରିବ ସତେକିବା ସେହି ପୂର୍ବ-ଅଭ୍ୟାସ ପାଇଁ ସେ ପୁଅକୁ ଆବାସିକ ବିଦ୍ୟାଳୟରେ ଛାଡ଼ିଥିଲେ !!

ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା– ତାଙ୍କର ଆତ୍ମା ଶାନ୍ତିରେ ରହୁ । ମାତୃ-ଶୋକ-ସନ୍ତପ୍ତ ଶିଶୁଦୁଇଟି ଆୟୁଷ୍ମାନ୍, ବିଦ୍ୱାନ୍ ତଥା ବୁଦ୍ଧିମାନ୍ ହୁଅନ୍ତୁ । ବନ୍ଧୁ ନାରାୟଣ ବାବୁଙ୍କୁ ଏହି ଦାରୁଣ ଦୁଃଖ ସହିବା ପାଇଁ ଈଶ୍ୱର ଶକ୍ତି ଦିଅନ୍ତୁ ।

*ସଂସ୍କୃତ ବିଭାଗ*
*ଢେଙ୍କାନାଳ ମହିଳା ମହାବିଦ୍ୟାଳୟ*
*ଢେଙ୍କାନାଳ-୭୫୯୦୦୧*



# ଆରମ୍ଭରୁ ଶେଷଯାଏ

*ଅଧ୍ୟାପକ ଅଶୋକ କୁମାର ରାୟ*

ନୀହାରିକାର ଶ୍ରାଦ୍ଧରେ ଯୋଗଦେବା ପାଇଁ ମୁଁ ମୋର ବନ୍ଧୁ ନିରଞ୍ଜନ ସହିତ ଯେତେବେଳେ କିଶୋରନଗରରେ ପହଞ୍ଚିଲି, ନାରାୟଣ ବାବୁ କହିଲେ, "ଅଶୋକ ବାବୁ, ଜୀବନଟା ପୂରାପୂରି ଓଲଟପାଲଟ ହୋଇଗଲା ।" ତା' ପରେ ବହୁତ କଥା ହେଲା । ମୁଁ ସାନ୍ତ୍ୱନା ଦେବାକୁ ଚେଷ୍ଟା କରିନି । ଆ..ହା, ଚୁ..ଚୁ ବି କରିନି । କେବଳ ଚୁପ୍ କରି ସବୁ କଥା ଶୁଣିଛି । ଆସିଲାବେଳେ ନାରାୟଣ ବାବୁ କହିଲେ, "ଅଶୋକ ବାବୁ, ଆପଣ ଆମ ଜୀବନର ଆରମ୍ଭଦିନ ଏଇଠି ଉପସ୍ଥିତ ଥିଲେ ଏବଂ ଆଜି ପୁଣି ଯେତେବେଳେ ସବୁ ଶେଷ ହୋଇଗଲା..."

ହଁ, ମୁଁ ତାଙ୍କ ଦାମ୍ପତ୍ୟ ଜୀବନର ଆରମ୍ଭରୁ ଶେଷଯାଏ ସେମାନଙ୍କୁ ଦେଖିଛି । ନୀହାରିକା ସହିତ କଥା ହୋଇଛି । ତା' ମୁହଁର ହସ ଦେଖିଛି । କେମିତି ଗୋଟେ ଆପଣାର କରିନେବାର ହସ । ଛଳନା ନାହିଁ । ଉଛୁଳି ପଡ଼େନାହିଁ । ସବୁକିଛି ସ୍ୱାଭାବିକ ।

ଚାହୁଁଚାହୁଁ ବର୍ଷେ ବିତିବାକୁ ବସିଲା । ନାରାୟଣ ବାବୁଙ୍କ ଓଲଟପାଲଟ ଜୀବନଟା ବର୍ଷେ ଛଟପଟ ହେଲା । ଆହୁରି ବହୁତ ବର୍ଷ ଆଗକୁ ଅଛି । ପିଲାଦୁଇଟା ମା' ସ୍ନେହରୁ ବାଦ୍ ପଡ଼ିଗଲେ । ନାରାୟଣ ବାବୁଙ୍କ ଉପରେ ବହୁତ ଦାୟିତ୍ୱ । ମୁଁ ପିଲାଦୁଇଟାଙ୍କର ଆରମ୍ଭ ଦେଖିଛି । ଭଗବାନ୍‌ଙ୍କୁ ଡାକୁଛି ମୋର ଶେଷଯାଏ ମୁଁ ସେମାନଙ୍କ ମୁହଁରେ ହସ ଦେଖେ । ସେହି ଛଳନାହୀନ, ଆପଣାର କରିନେବାର ହସ । ନୀହାରିକାର ହସ ।

*ତର୍କ ଓ ଦର୍ଶନ ବିଭାଗ*
*ରେଭେନ୍‌ସା ପ୍ରାତଃ ମହାବିଦ୍ୟାଳୟ*
*କଟକ-୭୫୩୦୦୩*



# ଶ୍ରୀମତୀ ଦାସ ଥିଲେ ଏକ ସଂପୂର୍ଣ୍ଣ ବ୍ୟକ୍ତିତ୍ୱ

*ଅଧ୍ୟାପକ ଲକ୍ଷ୍ମଣ କୁମାର ଚୌଧୁରୀ*

ଏବେ ବି ଚିନ୍ତା କଲେ ବିଶ୍ୱାସ କରିହୁଏନା ଯେ ମୋର ପ୍ରିୟ ବନ୍ଧୁ ଅଧ୍ୟାପକ ଶ୍ରୀ ନାରାୟଣ ମହାନ୍ତିଙ୍କ ଧର୍ମପତ୍ନୀ ଅଧ୍ୟାପିକା ଶ୍ରୀମତୀ ନୀହାରିକା ଦାସ ଆଉ ଏ ଧରାପୃଷ୍ଠରେ ନାହାଁନ୍ତି । ଶ୍ରୀମତୀ ଦାସଙ୍କ ହୃଦ୍‌ରୋଗଜନିତ ଅକାଳ ବିୟୋଗର ସମ୍ବାଦ ପାଇଲି ଗତ ୧୯୯୪ ମସିହା ଡିସେମ୍ବର ୨୬ ତାରିଖରେ । ସେ ସମୟରେ ମୁଁ ଏକ ରିଫ୍ରେସର୍ କୋର୍ସରେ ହାଇଦ୍ରାବାଦ ବିଶ୍ୱବିଦ୍ୟାଳୟରେ ରହୁଥିଲି । ଅଧ୍ୟାପିକା ଦାସଙ୍କ ଦେହାନ୍ତ ହୋଇଥିଲା ଡିସେମ୍ବର ୧୪ ତାରିଖରେ । କିନ୍ତୁ ମୁଁ ଏ ଦାରୁଣ ଦୁଃସମ୍ବାଦ ପାଇଲି ମୋର ବନ୍ଧୁ ଶ୍ରୀ ମୁରଲୀଧର ଜେନାଙ୍କ ଚିଠିରୁ ଡିସେମ୍ବର ୨୬ ତାରିଖରେ । ଚିଠିଟିର ଏ ସମ୍ବାଦଟି ଯେ ସଂପୂର୍ଣ୍ଣ ନିର୍ଭୁଲ୍, ଏହା ଜାଣି ମଧ୍ୟ ହଠାତ୍ ଏହାକୁ ବିଶ୍ୱାସ କରିବାଟା ସହଜ ହୋଇପାରୁନଥିଲା । ମନର ଗଭୀର ଦୁଃଖକୁ ଚାପିରଖି ଭଗବାନ୍‌ଙ୍କୁ ପ୍ରାର୍ଥନା କରିଥିଲି ଯେ ବନ୍ଧୁ ନାରାୟଣ ବାବୁ ଏଭଳି ଶକ୍ତ ଆଘାତକୁ ସହିଯିବାକୁ ସମର୍ଥ ହୁଅନ୍ତୁ ।

ଅଧ୍ୟାପିକା ଶ୍ରୀମତୀ ଦାସଙ୍କ ସହିତ ନାରାୟଣ ବାବୁ ମୋର ପରିଚୟ କରାଇଦେଇଥିଲେ ୧୯୮୭ ମସିହାରେ । ସେ ସମୟରେ ନାରାୟଣ ବାବୁ ଓ ମୁଁ ବଲାଙ୍ଗୀରର ସରକାରୀ ମହିଳା ମହାବିଦ୍ୟାଳୟରେ ସହକର୍ମୀ ଭାବେ କାର୍ଯ୍ୟ କରୁଥିଲୁ । ଦୀର୍ଘ ଆଠବର୍ଷ ମଧ୍ୟରେ ମୋର ବ୍ୟକ୍ତିଗତ କାର୍ଯ୍ୟ ଓ ଆମର ବୃତ୍ତିଗତ ସମସ୍ୟା ନେଇ ଅନେକଥର ନାରାୟଣ ବାବୁଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କ କଟକସ୍ଥିତ ବାସଭବନକୁ ଯାଇଛି ଓ ଏହି ଅବସରରେ ଶ୍ରୀମତୀ ଦାସଙ୍କ ସହିତ ସାକ୍ଷାତ ହୋଇଛି ।

ବାସ୍ତବିକ ଅଧ୍ୟାପିକା ଦାସ ତାଙ୍କର ଆତ୍ମବଡ଼ିମାଶୂନ୍ୟ ସରଳ ଓ ନିଷ୍କପଟ ମନରେ ଓ ହସହସ ମୁହଁରେ ଯେଉଁ ଆତିଥ୍ୟ ଓ ସୌଜନ୍ୟ ପ୍ରଦର୍ଶନ କରନ୍ତି, ତାହାର ତୁଳନା ଦୁର୍ଲଭ । ତରୁଣ ଅଧ୍ୟାପକମାନଙ୍କର ବୃତ୍ତିଗତ ସମସ୍ୟାର ସମାଧାନରେ ନାରାୟଣ ବାବୁ ନେତୃତ୍ୱ ଦେଉଥିବାରୁ ବହୁତ ସମୟରେ ତାଙ୍କ କଟକସ୍ଥିତ ବାସଭବନକୁ ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ଅଧ୍ୟାପକମାନେ ଆସିଥାନ୍ତି ।

ନାରାୟଣ ବାବୁଙ୍କ ସହଧର୍ମିଣୀ ଭାବେ ତାଙ୍କର ବନ୍ଧୁମାନଙ୍କୁ ଯଥୋଚିତ ସମ୍ମାନ, ଆଦର ଓ ଆତିଥ୍ୟ ପ୍ରଦର୍ଶନ କରିବାର ନିଖୁଣ ଦୃଷ୍ଟାନ୍ତ ଅନ୍ୟତ୍ର ଦେଖିବା ଏତେ ସହଜ ନୁହେଁ । ସମାଜର ଜଣେ ଉଚ୍ଚଶିକ୍ଷିତା ଓ ବିଶେଷ ଭାବରେ କଟକ ସିଟି କଲେଜ ଇତିହାସ ବିଭାଗର ମୁଖ୍ୟ ଅଧ୍ୟାପିକା ଭାବରେ ତାଙ୍କର ନିଜସ୍ୱ ପରିଚୟ ଥିଲେ ମଧ୍ୟ ତାଙ୍କଠାରେ ସାମାନ୍ୟ ଟିକିଏ ଅହଂଭାବର କିଞ୍ଚିତ ସୂଚନା କେବେ ଦେଖିବାକୁ ପାଇନାହିଁ ।

ଉଚ୍ଚଶିକ୍ଷା ଲାଭ ସହିତ ଉଚ୍ଚସଂସ୍କାର (high culture) ଯେ ଆପେଆପେ ପ୍ରାପ୍ତ ହୋଇଥାଏ ସେମିତି ଭାବିବା ଠିକ୍ ନୁହେଁ । ବହୁ ଉଚ୍ଚଶିକ୍ଷିତ ବ୍ୟକ୍ତିଙ୍କ ନିକଟରେ ସାଧାରଣ ମାନବିକତା ଓ ସଂସ୍କାରର ଅଭାବ ଥାଏ । ସେହିଭଳି ମହାବିଦ୍ୟାଳୟ ବା ବିଶ୍ୱବିଦ୍ୟାଳୟ ସ୍ତରର ଶିକ୍ଷାଲାଭ କରିପାରିନଥିବା ବହୁବ୍ୟକ୍ତି ମଧ୍ୟ ଉଚ୍ଚମାନର ବ୍ୟକ୍ତିତ୍ୱ ଓ ସଂସ୍କାରର ଅଧିକାରୀ ହୋଇଥାନ୍ତି । କିନ୍ତୁ ଶ୍ରୀମତୀ ଦାସ ଯେ କେବଳ ଉଚ୍ଚଶିକ୍ଷିତା ଥିଲେ ତାହା ନୁହେଁ, ସେ ଏକାଧାରରେ ମଧ୍ୟ ଜଣେ ଉଚ୍ଚମନା ଓ ଉଚ୍ଚସଂସ୍କାରସଂପନ୍ନା ଏକ ସଂପୂର୍ଣ୍ଣ ବ୍ୟକ୍ତିତ୍ୱ ଥିଲେ । "She was really a highly educated, a broad minded and a cultured lady– a complete personality."

ତାଙ୍କର ପ୍ରଥମ ଶ୍ରାଦ୍ଧବାର୍ଷିକୀ ଅବସରରେ ମୋର ଈଶ୍ୱରଙ୍କ ନିକଟରେ ବିନମ୍ର ପ୍ରାର୍ଥନା ଯେ ଶ୍ରୀମତୀ ଦାସଙ୍କ ଆତ୍ମାର ସଦ୍‌ଗତି ହେଉ ଏବଂ ମୋର ବନ୍ଧୁ ନାରାୟଣ ବାବୁ ଓ ତାଙ୍କର ଦୁଇପୁଅ ଶ୍ରୀମତୀ ଦାସଙ୍କ ଇଚ୍ଛା ପୂର୍ଣ୍ଣ କରିବାରେ ସଫଳତା ହାସଲ କରନ୍ତୁ ।

*ଅର୍ଥନୀତି ବିଭାଗ*
*ନରସିଂହ ଚୌଧୁରୀ ମହାବିଦ୍ୟାଳୟ*
*ଯାଜପୁର- ୭୫୫୦୦୧*



# ଶ୍ରଦ୍ଧା-ସୁମନ

*ଅଧ୍ୟାପକ ପ୍ରଫୁଲ୍ଲ କୁମାର ମାନସିଂହ*

ହର୍ଷ-ବିଷାଦ, ଅଶ୍ରୁ-ଆନନ୍ଦର ମିଶ୍ରରାଗରେ ଏ ଜୀବନ ଅନନ୍ୟ ଓ ମହାର୍ଘ । ପୁଣି ଅମ୍ଳ-କଷାୟ-ମଧୁର ଅନୁଭୂତିର ସମାହାରରେ ନିତ୍ୟ-ବୃନ୍ଦାବନ । ଅଲକ୍ଷ୍ୟରେ ଅନେକ ଅନୁଭୂତି ମୂର୍ତ୍ତିମନ୍ତ ହୋଇଉଠେ ଏ ଜୀବନରେ । ସେତେବେଳେ କେତେ ଜୀବନ୍ତ, କେତେ ଅନ୍ତରଙ୍ଗ ମୁହୂର୍ତ୍ତର ସ୍ମୃତି ଜୀବନକୁ ତରଙ୍ଗାୟିତ କରିଦିଅନ୍ତି । ଜୀବନ ଲୋଭନୀୟ ହୋଇଉଠେ । ଅଳୀକ ସଂସାର ମଧ୍ୟରେ ବିପୁଳ ସମ୍ଭାବନାର ଅଭିଜ୍ଞାନ ଏ ଜୀବନକୁ ଶାଶ୍ୱତ ଓ ଚିରନ୍ତନ କରିଦିଏ । ଯଥାର୍ଥରେ ମୃତ୍ୟୁଞ୍ଜୟ ହୋଇଯାଏ ଜୀବନ, କାଳକାଳକୁ ।

ଗୁଣ ଅବିଗୁଣର ଲୀଳା ବିଗ୍ରହ ଏଇ ଜୀବନର ପ୍ରତିଟି ପଦପାତରେ ଅନେକ ନୂତନତା, ଅନେକ ଅଭିନନ୍ଦନର ନୂପୁର ଝଙ୍କାର । ଯେତେ ଆକଟ କଲେ ବି ଅମାନିଆ ବନ୍ୟା ପରି ଜୀବନ-ନଦୀକୁ ପ୍ଲାବିତ କରିଦିଅନ୍ତି ଅକସ୍ମାତ୍ । ଦୁଇକୂଳ ଲଂଘନ କରି ଜୀବନକୁ ଆବୋରିବସିଲେ ମୁଁ ନିରୁପାୟ ହୋଇଉଠେ । ସମସ୍ତ ଦେହଳୀ ଡେଇଁ ଅନ୍ତରଙ୍ଗ ମଣିଷଟି ଥରେ ପ୍ରବେଶ କରିଆସିଲେ ଆତ୍ମୀୟତାର ପେଲବ ସ୍ପର୍ଶରେ ମୁଁ ଅଭିଭୂତ ହୋଇଉଠେ । ଜୀବନର ଏ ଅଲିଭା ଦାଗ ଯେମିତି ଚିରନ୍ତନ ଅମ୍ଳାନ ହୋଇ ରହିଯାଏ, ତାହା ମୁଁ ଅନୁଭବ କରେ । ଗୋଟିଏ ଅନନ୍ତ ଜୀବନର ଆଲିଙ୍ଗନକୁ ଏଡ଼େଇପାରୁନଥିବା ଜୀବନ ମୁଁ । କେମିତି ତା'ର ସ୍ନେହ, ମମତା, ଆନନ୍ଦ ଓ ବିଷାଦକୁ ଅସ୍ୱୀକାର କରିବି ! କିପରି ବା ତା'ର ମହିମାମୟ-କ୍ରାନ୍ତିକାରୀ-ସୃଜନଶୀଳ ଭାବଭଙ୍ଗୀର ସ୍ୱାକ୍ଷରକୁ ଲିଭାଇଦେଇପାରିବି ! ମୁଁ ନାଚାର ହୋଇଉଠେ । ଆଉ ଜୀବନର ଅନ୍ତରଙ୍ଗତାରେ ବାନ୍ଧି ହୋଇଯାଏ । ସ୍ୱୀକାର କରେ, ଏହା ହିଁ ଜୀବନର ଅନିର୍ବଚନୀୟ—ମାଧୁରୀ, ବେଦବାଣୀ ପରି ଶାଶ୍ୱତ ଏବଂ ମହନୀୟ ।

ଯେଉଁମାନଙ୍କ ଅଲିଭା ସ୍ମୃତିରେ ମୋର ଦୁଇଆଖି ଅଶ୍ରୁସଜଳ, ଯେଉଁମାନଙ୍କ ଅମୃତ ସଂସ୍ପର୍ଶ ଏ ଜୀବନରେ ଅନ୍ତଃସଲିଳା ଫଲ୍‌ଗୁ ପରି ପ୍ରବାହିତ, ସେଇମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ବନ୍ଧୁପତ୍ନୀ ସ୍ୱର୍ଗତା ନୀହାରିକା ଦାସ । ତାଙ୍କର ଅକାଳ

ବିୟୋଗରେ ମୁଁ ମର୍ମାହତ, ଯାହା ଭାଷାରେ ପ୍ରକାଶ କରି ହେବନି ବା କୌଣସି ମାନଦଣ୍ଡପରେ ମାପି ହେବନି । କେବଳ ଅନୁଭବୀ ହିଁ ଅନୁଭବ କରିପାରିବ, ଅନ୍ତରର ନିଭୃତ କୋଣରେ । ଏଇ ପବିତ୍ର ପ୍ରଥମ ଶ୍ରାଦ୍ଧବାର୍ଷିକୀ ଉପଲକ୍ଷେ ଲେଖନୀମୁନରେ ତାଙ୍କର ସ୍ମୃତିଚାରଣ କରିବା ମୋ ପକ୍ଷେ କେବଳ ବ୍ୟର୍ଥ ପ୍ରୟାସ ମାତ୍ର ।

ବନ୍ଧୁ ଅଧ୍ୟାପକ ନାରାୟଣ ମହାନ୍ତି ଓ ବନ୍ଧୁପତ୍ନୀ ଅଧ୍ୟାପିକା ନୀହାରିକା ଦାସଙ୍କ ସହିତ ଆତ୍ମୀୟତା ଯଥାର୍ଥରେ ଭାଷାତୀତ । ଜୀବନର ଧୂସର ବଳୟ ମଧ୍ୟରେ ଘୂରିଘୂରି ମୁଁ ଯେତେବେଳେ ଅଣନିଶ୍ୱାସୀ ହୋଇପଡୁଥିଲି, ସେତିକିବେଳେ ବନ୍ଧୁ ନାରାୟଣ ମହାନ୍ତିଙ୍କର ସମବେଦନା ଓ ସହଯୋଗ ଆମର ବନ୍ଧୁତ୍ୱର ନିବିଡ଼ ବନ୍ଧନକୁ ନିବିଡ଼ତର କରିଥିଲା । ଏବେବି ସେ ଦିନଗୁଡ଼ିକ ସୁସଞ୍ଚ ଆଲିମ୍ପନ ପରି ମନ-କ୍ୟାନ୍‌ଭାସ୍‌ରେ ଝଟକିଉଠନ୍ତି । ସମୟ ପ୍ରବାହରେ ଯେତେବେଳେ ମୁଁ କଟକର ଝାଞ୍ଜିରୀମଙ୍ଗଳାସ୍ଥ ନଦିଆ ନିବାସ ସହିତ ପରିଚିତ ହେଲି, ସେତେବେଳେ ଅଜାଣତରେ ମୁଁ ମହାନ୍ତି-ପରିବାରର ଜଣେ ସଦସ୍ୟ ହୋଇସାରିଥିଲି । ସ୍ୱତଃ ବନ୍ଧୁ ନାରାୟଣ ମହାନ୍ତି ଓ ବନ୍ଧୁପତ୍ନୀ ନୀହାରିକା ଦାସଙ୍କ ବ୍ୟତୀତ ବାପୁ, ଲିଙ୍କନ୍, ମୟୂରୀ ପ୍ରଭୃତିଙ୍କର ଆପଣାର ହୋଇଯାଇଥିଲି ।

ସହପାଠୀ ବନ୍ଧୁ ନାରାୟଣ ମହାନ୍ତି । ଦୁହିଁଙ୍କର ଅଧ୍ୟାପକ ଚାକିରିରେ ପ୍ରବେଶ ଓ କ୍ରମେ ନିବିଡ଼ ଆତ୍ମୀୟତା । ଚାକିରି ଜୀବନର ଅନେକ ଦିନ ପରେ ବନ୍ଧୁପତ୍ନୀଙ୍କ ସହ ସାକ୍ଷାତ—ପରିଚୟ । କ୍ରମେ ନଦିଆ ନିବାସକୁ ମୋର ପରିଚିତ ନିବାସ ବୋଲି ଗ୍ରହଣ କରିନେଲି । ମହାନ୍ତି-ପରିବାର ସହ ମୋର ସମ୍ପର୍କ ଅତ୍ୟନ୍ତ ବ୍ୟକ୍ତିଗତ ଓ ନିବିଡ଼ ହୋଇଉଠିଲା । ଏହି ମମତାବୋଧ ଭାବପ୍ରାବଲ୍ୟ ପାଇଁ ବନ୍ଧୁପତ୍ନୀ ଯେ ପ୍ରଚ୍ଛନ୍ନ ପ୍ରେରଣା ହୋଇଥିଲେ ଏହା ନକହିବା ଭଲ । ତାଙ୍କର ସରଳ ବ୍ୟବହାର, ନିଷ୍କପଟ ଆତ୍ମୀୟତା ଓ ମାନବିକ ସମ୍ବେଦନଶୀଳତା ମୋତେ ମୁଗ୍ଧ କରିଥିଲା । ଛାତ୍ର ଜୀବନର ଅନେକ ସହପାଠୀ ବନ୍ଧୁ ଏବେବି ବିଭିନ୍ନ ପଦପଦବୀରେ ଅଧୀରୂଢ଼ । ମାତ୍ର କାହାରି ପରିବାର ସହ ମୁଁ ଏତେ ନିକଟତର ହୋଇ ନାହିଁ, ଯାହା ସ୍ୱର୍ଗତା ଶ୍ରୀମତୀ ଦାସଙ୍କ ପରିବାର ସହ ହୋଇପାରିଛି । ତାଙ୍କର ଅଯାଚିତ ସ୍ନେହ ଓ ସହୃଦୟତାକୁ କେଉଁ ଭାଷାରେ ମୁଁ ବର୍ଣ୍ଣନା କରିବି ? କେବେ ଯଦି ଗୋଟିଏ ନିଃଶବ୍ଦ ମୁହୂର୍ତ୍ତ ମିଳେ, ଅନନ୍ତ ଆକାଶର ସ୍ତବ୍ଧତା ପରି ତାଙ୍କ ଅମାୟିକ କରୁଣାପ୍ରବଣ ହୃଦୟ ମୋ ଆଗରେ ଝଟକିଉଠେ ।

ଜ୍ୟୋତ୍ସ୍ନାପୁଲକିତ ରାତି ପରି ଅତି ମନୋରମ ଅଥଚ ହସହସ ତାଙ୍କ ବ୍ୟକ୍ତିତ୍ୱ । ଭାବନାର ବିଳାସଭୂମିରେ ଅନ୍ୟକୁ ଆପଣାର କରିବାର ଅକୁଣ୍ଠ ଆବେଗକୁ ଅନେକଥର ଲକ୍ଷ୍ୟ କରି ବିସ୍ମିତ ଆତ୍ମହରା ହୋଇଥିବା ମଣିଷ ମୁଁ । ମୁଁ ଭାବେ ସେ ବିଧାତାଙ୍କର ଏକ ଆଦର୍ଶ କୃତି ହୋଇ ଏ ମର୍ତ୍ତ୍ୟକୁ ଓହ୍ଲାଇଆସିଥିଲେ ଯେମିତି । ତେଣୁ ଅନ୍ତଃଭୂମିରେ ତାଙ୍କ ମୃତ୍ୟୁର ସ୍ୱୀକୃତି ନାହିଁ, ଅଛି ଅମରତ୍ୱର ବିଶେଷ ଘୋଷଣା ।

ଅନେକଥର ବିସ୍ମିତ ହୋଇଛି ବନ୍ଧୁପତ୍ନୀ ଓ ବନ୍ଧୁଙ୍କ ପାରିବାରିକ ଜୀବନ ଓ ଚାକିରି ଜୀବନର ବହୁ ଯନ୍ତ୍ରଣା-ମଧୁର ଘଟଣାକୁ ଲକ୍ଷ୍ୟ କରି । ଦୁହିଁଙ୍କର ପେଷା ଏକା – ଅଧ୍ୟାପନା । ବନ୍ଧୁ ନାରାୟଣ ବାବୁ ଶିକ୍ଷକ ସଂଗଠନର ଦାୟିତ୍ୱ ବହନ କରି ସାରାଓଡ଼ିଶା ଗସ୍ତ କରୁଥାନ୍ତି । ଚାକିରି ଜୀବନ ବାଲେଶ୍ୱରଠାରୁ ବଲାଙ୍ଗୀର ପର୍ଯ୍ୟନ୍ତ ପରିବ୍ୟାପ୍ତ ହୋଇଥିଲେ ମଧ୍ୟ ଦିନେ ପାରିବାରିକ ତ୍ରୁଟିବିଚ୍ୟୁତି ମୁଁ ଲକ୍ଷ୍ୟ କରିନାହିଁ । ସବୁ ଦାୟିତ୍ୱ ଅଧ୍ୟାପିକା ଦାସ ତୁଲାଇନେଇଥାନ୍ତି । ତାଙ୍କୁ ମୁଁ ଏକ ରକ୍ଷଣଶୀଳ ପରିବାରର କୁଳବଧୂ ଭାବରେ ଏବଂ କର୍ମଜୀବୀ ମହିଳା ଭୂମିକାରେ ଦେଖି ତାଙ୍କ ମହିମାନ୍ୱିତ ବ୍ୟକ୍ତିତ୍ୱର ଭୂୟୋସୀ ପ୍ରଶଂସା କରେ । ଶାନ୍ତି, ଶୃଙ୍ଖଳା, ସ୍ନେହ ଓ ଦାୟିତ୍ୱକୁ ଗୋଟିଏ ମାଳାରେ ଗୁନ୍ଥି, ସବୁ କ୍ଷେତ୍ରରେ ସମନ୍ୱୟ ପ୍ରତିଷ୍ଠା କରି ଜୀବନ ଅତିବାହିତ କରିବାର ଦକ୍ଷତା ତାଙ୍କରିଠାରେ ଈଶ୍ୱର ଦେଇଥିଲେ ଯେମିତି ! ଏହା କମ୍ ଗୌରବର କଥା ନୁହେଁ । ପାରିବାରିକ ଜଞ୍ଜାଳ, ପିଲାମାନଙ୍କର ଅଳିଅର୍ଦ୍ଦଳି, ପୁଣି ଚାକିରିର ପଦମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖି ଦାମ୍ପତ୍ୟ ଜୀବନକୁ ସୁଖମୟ କରିବାର ସାମର୍ଥ୍ୟ ତାଙ୍କଠାରେ କେବଳ ପରିଲକ୍ଷିତ ହେଉଥିଲା । ଆଜିର ଲାଭ-କ୍ଷତି, ମାପ-ଚୁପ ଦୁନିଆଁରେ ଶ୍ରୀମତୀ ଦାସଙ୍କ ଭଳି ଜଣେ ମହୀୟସୀ ମହିଳା ପାଇବା ନିଶ୍ଚିତ ଭାବରେ କଷ୍ଟକର ବ୍ୟାପାର । ଅଯଥା ପ୍ରଶସ୍ତିଗାନ ମୋ ଚରିତ୍ରର ବାହାରେ । ମାତ୍ର ଏକଥା ନକହିଲେ ପୂଜ୍ୟପୂଜାର ବ୍ୟତିକ୍ରମ ହେବ, ସତ୍ୟର ଅପଳାପ ହେବ, ଏଥିରେ ସନ୍ଦେହ ନାହିଁ ।

ଆଜି ଶ୍ରୀମତୀ ଦାସ ଆମ ଗହଣରେ ନାହାଁନ୍ତି । ତାଙ୍କ ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବାର ଶୁଭ ଅବସରରେ ମୁଁ ଏତିକି ମନେକରେ ଯେ ଶ୍ରୀମତୀ ଦାସ ଥିଲେ ପ୍ରକୃତି-ବଗିଚାରେ ଏକ ଫୁଲ ପରି । କମ୍ ସମୟ ପାଇଁ ପ୍ରସ୍ଫୁଟିତ ହୋଇଥିଲେ ମଧ୍ୟ ତାଙ୍କର ସୌନ୍ଦର୍ଯ୍ୟ ଓ ସୁରଭିରେ ସେ ସମସ୍ତଙ୍କୁ ମୁଗ୍ଧ କରିଯାଇଛନ୍ତି । ଜାୟା, ଜନନୀ, କୁଳବଧୂ ଭୂମିକାଠାରୁ ଇତିହାସର ଅଧ୍ୟାପିକା

ଭୂମିକା ପର୍ଯ୍ୟନ୍ତ - ଉପଯୁକ୍ତ ସମନ୍ୱୟ ରଖି ଏବଂ ପାରିବାରିକ ଜୀବନକୁ ସୁସଂହତ କରି ସେ ଏକ ଉଚ୍ଚଆଦର୍ଶର ଅଧିକାରିଣୀ ହୋଇଯାଇଛନ୍ତି । ଏବେବି ଜଳଜଳ ହୋଇ ବିଗତ ଦିନର ଘଟଣାଗୁଡ଼ିକ ମନେପଡୁଛି । ବନ୍ଧୁ ନାରାୟଣ ମହାନ୍ତି ତାଙ୍କ ବାସଭବନରେ ଥାଆନ୍ତୁ ବା ନଥାଆନ୍ତୁ, ମୁଁ ପହଞ୍ଚିବା ମାତ୍ରେ ଆରମ୍ଭ ହୋଇଯାଏ ଶ୍ରୀମତୀ ଦାସଙ୍କ ତତ୍ପରତା । କି ଅମାୟିକ ଓ ସରଳ ସେ ବ୍ୟବହାର ! କି ସଂଭ୍ରମ ତାଙ୍କର ଭାଷା ! ଏ କଥା ଚିନ୍ତା କଲାବେଳେ ମନରେ ସ୍ୱତଃ ଭାବନା ଜାତହୁଏ, ହେ ଭଗବାନ୍ କାହିଁକି ତମେ ଏ ସୁନ୍ଦର ପୁଷ୍ପଟିକୁ ତୁମ ସଂସାର ଉଦ୍ୟାନରେ ଏତେ କମ୍ ସମୟ ପାଇଁ ପ୍ରସ୍ଫୁଟିତ କରାଇଥିଲ? କାହିଁକି ଏହି ମହୀୟସୀ ମହିଳାଙ୍କୁ ତାଙ୍କର କର୍ତ୍ତବ୍ୟ ପୂର୍ଣ୍ଣ କରିବାକୁ ସମୟ ଦେଲନାହିଁ? ବିଚିତ୍ର ହେ ସ୍ରଷ୍ଟା ! ବିଚିତ୍ର ତୁମର ସୃଷ୍ଟି !

ସର୍ବଶେଷରେ ମଙ୍ଗଳମୟ ପ୍ରଭୁ ଜଗନ୍ନାଥଙ୍କ ପଦାରବିନ୍ଦରେ ଏତିକି ପ୍ରାର୍ଥନା– ବନ୍ଧୁ ନାରାୟଣ ମହାନ୍ତି ବିନାମେଘେ ବଜ୍ରପାତ ଭଳି ତାଙ୍କର ଏ ଅକସ୍ମାତ୍ ପତ୍ନୀ-ବିୟୋଗ-ଜନିତ ଦୁଃଖ ଓ ଯନ୍ତ୍ରଣାକୁ ସାମ୍ନା କରିବା ପାଇଁ, ଈଶ୍ୱର ତାଙ୍କୁ ଅଶେଷ ଧୈର୍ଯ୍ୟ ଓ ସାହସ ଦିଅନ୍ତୁ । ଏ ଜଟିଳ, ଜ୍ୱାଳାମୟ ସଂସାରରେ ସେ ସ୍ୱର୍ଗତା ନୀହାରିକାଙ୍କ ସ୍ମୃତିକୁ ପାଥେୟ କରି ତାଙ୍କର କର୍ତ୍ତବ୍ୟ ସମ୍ପାଦନରେ ସମର୍ଥ ହୁଅନ୍ତୁ । ନୀହାରିକାଙ୍କ ସୃଷ୍ଟି ପୁଷ୍ପକଳିକାଦ୍ୱୟ (ବାପୁ ଓ ଲିଙ୍କନ୍) ପ୍ରସ୍ଫୁଟିତ ହୋଇ ସେମାନଙ୍କର ସୁବାସରେ ପିତାମାତାଙ୍କର ନାମକୁ ସୁରଭିତ କରନ୍ତୁ ଏବଂ ମହାନ୍ତି-ପରିବାରର ମହାନ୍ ପରମ୍ପରାର ସେମାନେ ଉପଯୁକ୍ତ ଦାୟାଦ ହୁଅନ୍ତୁ, ଏହାହିଁ କାମନା ।

ଆଜିର ଏହି ଅବସରରେ ଶ୍ରୀମତୀ ଦାସଙ୍କର ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା କରି ସେହି ମହୀୟସୀ ମହିଳାଙ୍କ ଉଦ୍ଦେଶ୍ୟରେ ପୁଷ୍ପଗୁଚ୍ଛଟିଏ ବାଢ଼ି ବସି ମୋର ସଜଳ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

*ଅର୍ଥନୀତି ବିଭାଗ*
*ଭଦ୍ରକ କଲେଜ*
*ଭଦ୍ରକ- ୭୫୬୧୦୦*



# ଏମିତି କାହିଁକି ହୁଏ ?

*ଅଧ୍ୟାପକ ପ୍ରଭାତ ରଞ୍ଜନ ପରିଡ଼ା*

ଏମିତି କାହିଁକି ହୁଏ ? ଦିନ ନସରୁଣୁ ସନ୍ଧ୍ୟା ଆସେ ! ବସନ୍ତରେ ଅସହ୍ୟ ରୌଦ୍ରତାପର ଉତ୍ପୀଡ଼ନକୁ ଭୋଗ କରିବାକୁ ପଡ଼େ ! ବିନା ଶବ୍ଦରେ ଗଛରୁ ପତ୍ର ଖସିଯାଏ ! ଏହା ହିଁ କ'ଣ ଆମର ଭାଗ୍ୟ ! ଅବଧାରିତ ଓ ମୋଚନୀୟ । ନିଃଶବ୍ଦ ପଦପାତରେ ଦୀପ ଫୁଙ୍କିଦେବାର ମୁହୂର୍ତ୍ତକୁ ସାମ୍ନା କରିବା ହିଁ ତ ସତ୍ୟ । ଫୁଙ୍କାଳିକୁ ଭେଟିବା ପାଇଁ ବ୍ୟାକୁଳ ହେବାର ମାନେ ହିଁ ତ ବାୟା ହେବା; ଜୀବନକୁ ଅସ୍ୱୀକାର କରିବା; ସଂସାରବିରାଗୀ ହେବା । କାରଣ ଖୋଜିବାରେ ମଜି ବାଟ ହୁଡ଼ିବାକୁ ହୁଏ । ତେବେ ତାହା ଅଖୋଜା ରହିଲେ କ୍ଷତି କ'ଣ ? ତାତ୍ତ୍ୱିକତା ଭିତରେ ନଡୁବି ଆପେକ୍ଷିକତାର ସୁଅରେ ଭାସିବା ଇ'ତ ଜୀବନର ସୁଖସଂପଦକୁ ଭୋଗ କରିବା । ସେକ୍‌ସପିୟର ହୁଅନ୍ତୁ କି ରାଧାନାଥ ରାୟ ହୁଅନ୍ତୁ । ସମସ୍ତେ ତ ଏମିତି ଅନୁଭବ କରିଛନ୍ତି ଜୀବନକୁ –

All the world's a stage, and all the men and women merely players : they have their exists and their entrances...

ରାଧାନାଥ ଏୟା ହିଁ କହନ୍ତି–

କେହି ରହିନାହିଁ ରହିବ ନାହିଁଟି
ଭବ ରଙ୍ଗଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳବଳେ ।

ସଂସ୍କୃତରେ ଗୋଟିଏ ପ୍ରବଚନ ଅଛି– "ଦୁଃଖିଷୁ ଦୁଃଖୀ, ଯୁବା ଦରିଦ୍ରଃ ।" ବିଦଗ୍ଧ ସାହିତ୍ୟିକର ଭାଷାରେ କହିଲେ ହେବ– "ନୃପତି ରାଜ୍ୟ ବିହୀନ, ବାଳକ ଅନ୍ଧ ନୟନ, ଯୁବତୀ ବିହୀନ ଯୁବା, ତିନି ସମାନ ।" ତେଣୁ ଅସମୟରେ ପତ୍ନୀ-ବିଚ୍ଛେଦ-କାତର ବନ୍ଧୁ ନାରାୟଣ ବାବୁଙ୍କୁ କି ଉପଦେଶ ଦେବି ? ସାନ୍ତ୍ୱନା ଦେବା ପାଇଁ ପୃଥିବୀରେ ଭାଷା କାହିଁ ? ଈଶ୍ୱରଙ୍କ ଉପରେ ଭରସା ରଖିବା ଭିନ୍ନ ଅନ୍ୟ କିଛି ବାଟ ନାହିଁ । ପିଲାଏ ତ ମାତୃହୀନ ହେଲେ ।

ସେମାନେ ହେଲେ ସାହାଶୂନ୍ୟ । ଗଛର ହେଲେ ଛାଇ ଅଛି, କିନ୍ତୁ ତାଙ୍କ ପାଇଁ... ?

ବନ୍ଧୁପତ୍ନୀ ନୀହାରିକା ମନେପଡୁଛନ୍ତି । ହସହସ ମୁହଁ ନାଚୁଛି ଆଖିରେ । ଯେତେବେଳେ ଦେଖାହେଲେ– "ସାର୍, ପିଲାମାନଙ୍କୁ ଧରି ଆସିବେ..." ଅନାବିଳ ଆତ୍ମୀୟତା କ'ଣ ଭୁଲି ହୁଏ ?

ପରିଶେଷରେ ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରୁଛି, ବନ୍ଧୁପତ୍ନୀ ନୀହାରିକା ସ୍ୱର୍ଗରେ ରହି ମା' କଇଁଛ ନିଜର ଅଣ୍ଡାକୁ ବହୁଦୂରରୁ ଚାହିଁଲା ଭଳି ମର୍ତ୍ତ୍ୟରେ ବନ୍ଧୁ ପରିବାରକୁ ଚାହିଁଥାନ୍ତୁ । ପରମେଶ୍ୱରଙ୍କ କୃପାରୁ ମା' ଛେଉଣ୍ଡ ପିଲାଏ ବନ୍ଧୁ ନାରାୟଣ ବାବୁଙ୍କ ଢିରାରେ ସଳଖି ହୋଇ ଛିଡ଼ା ହେବାର ସାମର୍ଥ୍ୟ ଲାଭ କରନ୍ତୁ ।

*ଭୂଗୋଳ ବିଭାଗ*
*ରେଭେନ୍ସା କଲେଜ*
*କଟକ-୭୫୩୦୦୩*





# ପ୍ରତିକୂଳ ପରିସ୍ଥିତି

*ଅଧ୍ୟାପକ ସୀମାଞ୍ଚଳ ପ୍ରଧାନ*

ସମୟର ସ୍ରୋତରେ ବିଶ୍ୱର ପ୍ରତିଟି ସୃଷ୍ଟି ପ୍ରବହମାନ, କେଉଁ ଅନାଦି କାଳରୁ । ମା'ର କୋଳରେ ଶିଶୁଟିଏ ଜନ୍ମନିଏ ଏବଂ ତା'ପରେ ସମୟର ସ୍ରୋତରେ ନିଜକୁ ପ୍ରବହମାନ କରାଇଥାଏ; ଯଥା– ବାଲ୍ୟାବସ୍ଥାରୁ କୈଶୋର ଏବଂ ଯୌବନାବସ୍ଥାରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ । ପ୍ରତିଟି ମୁହୂର୍ତ୍ତରେ ତାକୁ ଅନେକ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଯଦି ସେ ତା'ର ଚତୁଃପାର୍ଶ୍ୱର ପରିବେଷ୍ଟନୀ ସହିତ ଖାପଖୁଆଇ ସଫଳତାର ସହିତ ଜୀବନର ପ୍ରତିଟି ଅବସ୍ଥାକୁ ଅତିକ୍ରମ କରେ, ପ୍ରତିଟି ଅବସ୍ଥାରେ ତା'ର ସମସ୍ତ କାର୍ଯ୍ୟ ସମ୍ପାଦନ କରେ ଏବଂ ତା'ପରେ ଇହଜଗତରୁ ବିଦାୟ ନିଏ, ତେବେ ପରିବାର ତଥା ସମାଜ ସେତେଟା ବ୍ୟଥିତ ହୋଇନଥାଏ । କିନ୍ତୁ ଯଦି ଅପରିପକ୍ୱ ଅବସ୍ଥାରେ କେହି ଶେଷ ନିଃଶ୍ୱାସ ଛାଡ଼ନ୍ତି, ତା'ହେଲେ ପରିବାର ତଥା ସମାଜ ଉପରେ ତା'ର ଗଭୀର ପ୍ରଭାବ ପଡ଼ିଥାଏ ।

ଠିକ୍ ସେହିପରି ଏକ ଅସମୟରେ କଟକ ସିଟି କଲେଜର ଇତିହାସ ବିଭାଗର ମୁଖ୍ୟ ଅଧ୍ୟାପିକା ତଥା 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା'ର ପ୍ରତିଷ୍ଠାତ୍ରୀ ସଭ୍ୟା ଶ୍ରୀମତୀ ନୀହାରିକା ଦାସ ଜୀବନର ଏକ ଅପରିଣତ ଅବସ୍ଥାରେ 'ସିଷ୍ଟମିକ୍ କ୍ଲେରୋସିସ୍' ରୋଗରେ ଆକ୍ରାନ୍ତ ହୋଇ ସାରାପରିବାର ତଥା ଶିକ୍ଷକବର୍ଗଙ୍କୁ ଶୋକସାଗରରେ ଭସାଇଦେଇ ସବୁ ଦିନ ପାଇଁ ଚାଲିଯାଇଛନ୍ତି । ଅଧ୍ୟାପିକା ଦାସଙ୍କ ବିୟୋଗରେ ବିଶେଷ କରି ତାଙ୍କର ଦୁଇ ଶିଶୁପୁତ୍ର ମାତୃସ୍ନେହରୁ ବଞ୍ଚିତ ହେଲେ । ତା' ସଙ୍ଗେ ସଙ୍ଗେ ସଂପ୍ରତି ଉଚ୍ଚଶିକ୍ଷା କ୍ଷେତ୍ରରେ ଚରମ ଅଧୋଗତି ଦେଖାଦେଇଥିବାବେଳେ ଶ୍ରୀମତୀ ଦାସଙ୍କ ଭଳି କର୍ତ୍ତବ୍ୟନିଷ୍ଠ ତଥା ଆଦର୍ଶ ଅଧ୍ୟାପିକାଙ୍କ ଅକାଳ ବିୟୋଗ ହେତୁ ସଂପୃକ୍ତ ଶିକ୍ଷା ବିଭାଗ ଏକ ଉଜ୍ଜ୍ୱଳ ରତ୍ନଙ୍କୁ ହରାଇବସିଛି କହିଲେ କିଛି ଅତ୍ୟୁକ୍ତି ହେବନାହିଁ ।

ବିଶିଷ୍ଟ ଶିକ୍ଷାବିତ୍ ତଥା 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା'ର ଯୁଗ୍ମ ସଂପାଦକ ଅଧ୍ୟାପକ ନାରାୟଣ ମହାନ୍ତିଙ୍କ ଧର୍ମପତ୍ନୀ ଥିବା ହେତୁ ଶ୍ରୀମତୀ ଦାସଙ୍କୁ

ପରିଷଦର ଅନେକ ସାଙ୍ଗଠନିକ କାର୍ଯ୍ୟ କରିବାକୁ ପଡୁଥିଲା । କଲେଜରୁ ଅଧ୍ୟାପନା ସମାପ୍ତ କରି ଗୃହକୁ ଆସି ଗୃହର ପ୍ରତିଟି କାମ ସେ ବିନା ଦ୍ୱିଧାରେ ସମ୍ପାଦନ କରୁଥିଲେ । ଶ୍ରୀମତୀ ଦାସ ଜଣେ ଅଧ୍ୟାପିକା ଥିଲେ ମଧ୍ୟ ତାଙ୍କଠାରେ କୌଣସି ଅହଂଭାବ ନଥିଲା । ତାଙ୍କ ଗୃହର ପରିବେଷ୍ଟନୀ ମଧ୍ୟରେ ପରିଷଦର କାର୍ଯ୍ୟାଳୟ ଥିବା ହେତୁ ଅନେକ ସମୟରେ ସେଠାକୁ ଛାତ୍ର ତଥା ଅଧ୍ୟାପକମାନଙ୍କର ଆଗମନ ହୋଇଥାଏ । ଶ୍ରୀମତୀ ଦାସ ସେ ସମସ୍ତଙ୍କୁ ନିଜ ପରିବାରର ଲୋକ ଭଳି ସତ୍କାର କରିଥାନ୍ତି । ତାଙ୍କର ଉଦାରତା, ମିଷ୍ଟଭାଷା, ସରଳତା ଓ ଛାତ୍ରବତ୍ସଳତା ଯୋଗୁଁ ସେ ସମସ୍ତଙ୍କର ପ୍ରିୟଭାଜନ ହୋଇପାରିଥିଲେ ।

୧୯୯୪ ମସିହା ଜାନୁଆରୀ ମାସ । ଭୋପାଳଠାରେ 'ଅଖିଳ ଭାରତୀୟ ରାଷ୍ଟ୍ରୀୟ ଶୈକ୍ଷିକ ମହାସଂଘ'ର ଅଧିବେଶନ '୧୬ ତାରିଖରେ ଅନୁଷ୍ଠିତ ହେବାର ଥାଏ । ଏହି ଅଧିବେଶନରେ ଯୋଗଦେବା ପାଇଁ 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା' ପକ୍ଷରୁ ପ୍ରତିନିଧିମାନେ ଯିବାର ଥିଲା । ମାତ୍ର ପ୍ରତିନିଧିମାନଙ୍କ ସଂଖ୍ୟା କମ୍ ହେବାରୁ ସାର୍‌ଙ୍କୁ ମୋ ନିକଟକୁ ଟେଲିଗ୍ରାମ କରିବାକୁ ପଡ଼ିଲା । ଟେଲିଗ୍ରାମ ପାଇ ମୁଁ ୧୩ ତାରିଖ ସନ୍ଧ୍ୟାରେ ସମ୍ବଲପୁର ବସ୍‌ଷ୍ଟାଣ୍ଡ ଯାଇ ଟିକେଟ୍ କରି କଟକ ଅଭିମୁଖେ ଯାତ୍ରା କଲି । କଟକରେ ମୁଁ ୧୪ ତାରିଖ ମକର ସଂକ୍ରାନ୍ତି ଭୋର ୪ଟାବେଳେ ପହଞ୍ଚିଲି । ସକାଳ ହୋଇନଥିବା ହେତୁ ମୁଁ ନଦିଆ ନିବାସ ନଯାଇ ବାଦାମବାଡ଼ିଠାରେ ଅପେକ୍ଷା କଲି । ସକାଳ ୫ଟା ହେଲା । ସୂର୍ଯ୍ୟଙ୍କ ଆଲୋକ ଧରାପୃଷ୍ଠକୁ ସ୍ୱଚ୍ଛରୂପେ ଆଲୋକିତ କରିନଥାଏ । ଏତିକିବେଳେ ମୁଁ ନଦିଆ ନିବାସ ଆଡ଼କୁ ଗୋଟିଏଗୋଟିଏ କରି ପାହୁଣ୍ଡ ବଢ଼ାଇଲି । ଶହେ ମିଟର ଦୂରରୁ ନଦିଆ ନିବାସ ଦୃଶ୍ୟମାନ ହେଲା । ଦେଖିଲି, ସାର୍ ଓ ମାଡ଼ାମ୍ ମୋର ପ୍ରତୀକ୍ଷାରେ ବାଲ୍‌କୋନି ନିକଟରେ ଦଣ୍ଡାୟମାନ ହୋଇଥାନ୍ତି । ମୋତେ ଦେଖି ସାର୍ ଓ ମାଡ଼ାମ୍ ଉଭୟେ ବହୁତ ଖୁସି ହେଲେ ଏବଂ ସେ ଦିନ ସନ୍ଧ୍ୟାରେ ସାର୍ ଓ ମୁଁ କଟକ ରେଳଷ୍ଟେସନରୁ ଭୋପାଳ ଯିବା ନିମନ୍ତେ ଟ୍ରେନ ଧରିଲୁ । ଆମର ଭୋପାଳ ଗସ୍ତ ସଫଳ ହେଲା । ଆମେ ଭୋପାଳରୁ ଫେରିବା ପରେ ମାଡ଼ାମ୍‌ଙ୍କ ଦେହ ଦିନକୁ ଦିନ ଖରାପ ହେବାରେ ଲାଗିଲା । ନାନାବିଧ ଔଷଧ ସେବନ କରିବା ସତ୍ତ୍ୱେ ସେ ରୋଗମୁକ୍ତ ହୋଇପାରିଲେନାହିଁ । ଶେଷରେ ସେ ଡିସେମ୍ବର ୧୪ ତାରିଖରେ ଆମ୍ଭମାନଙ୍କୁ ସବୁ ଦିନ ପାଇଁ ଛାଡ଼ି ଚାଲିଗଲେ । ମୁଁ ଏକ୍ସ-ମାସ୍

ଛୁଟିରେ ଗାଁରେ ଥିବା ହେତୁ ମାଡ଼ାମ୍‌ଙ୍କ ମୃତ୍ୟୁ ଖବର ଜାଣିପାରିଲିନାହିଁ । ଏକ୍ସ-ମାସ୍ ଛୁଟି ସମାପ୍ତ ହେବା ପରେ ମୁଁ ଯେତେବେଳେ ବରପାଲି ଆସିଲି, ସେତେବେଳେ ସାର୍ ମୋ ନିକଟକୁ ପଠାଇଥିବା ବାର୍ତ୍ତାରୁ ସବୁକିଛି ଜାଣିଲି । ମାଡ଼ାମ୍‌ଙ୍କର ମୃତ୍ୟୁ ଖବର ପାଇ ମୁଁ ଅତ୍ୟନ୍ତ ମର୍ମାହତ ହେଲି ଏବଂ ମକର ସଂକ୍ରାନ୍ତିର ପୂର୍ବ ସନ୍ଧ୍ୟାରେ କଟକ ଯାତ୍ରା କଲି ।

ପୂର୍ବବର୍ଷ ପରି ମୁଁ ୧୯୯୫ ମସିହା ମକର ସଂକ୍ରାନ୍ତି ଦିନ ସକାଳ ୫ଟାରେ ବାଦାମବାଡ଼ି ବସ୍‌ଷ୍ଟାଣ୍ଡରୁ ନଦିଆ ନିବାସ ଆଡ଼କୁ ମୁହାଁଇଲି । ଦୂରରୁ ମୁଁ ନଦିଆ ନିବାସର ବାଲ୍‌କୋନିକୁ ଲକ୍ଷ୍ୟ କଲି । ସାର୍ ଓ ମାଡ଼ାମ୍ ବାଲ୍‌କୋନିରେ ନଥିଲେ । ତା'ପରେ ଅତି ହତାଶ ଚିତ୍ତରେ ସାର୍‌ଙ୍କ ବେଡ଼ରୁମ୍‌କୁ ପ୍ରବେଶ କଲି । ଦେଖିଲି, ସାର୍‌ଙ୍କ ଆଖିରୁ ଧାରଧାର ହୋଇ ଅଶ୍ରୁ ବହୁଛି ।

*ତର୍କ ଓ ଦର୍ଶନ ବିଭାଗ*
*ବରପାଲି କଲେଜ*
*ବରପାଲି-୭୬୮୦୨୯*





# ମାଡ଼ାମ୍ ଚାଲିଗଲେ

*ଶ୍ରୀ ଦ୍ୱାରିକାନାଥ ନାୟକ*

୧୯୯୪ ମସିହା ଡିସେମ୍ବର ମାସ ୧୫ ତାରିଖ । ଡିଉଟି କରିବା ପାଇଁ ଲାଇବ୍ରେରିକୁ ଯାଉଥାଏ ।

ଝାଞ୍ଜିରୀମଙ୍ଗଳା ଦେଇ ଯିବା ସମୟରେ ପାଖରେ ସାର୍‌ଙ୍କ ଘର ପଡ଼େ । ମୁଁ ସମୟେସମୟେ ସାର୍‌ଙ୍କ ଘରକୁ ଯାଏ । ତାଙ୍କ ସଙ୍ଗେ ଯେକୌଣସି ବିଷୟରେ ଆଲୋଚନା ହୁଏ । ମନରେ ସାନ୍ତ୍ୱନା ଆଣେ ଏବଂ ଆସକ୍ତି ବଢ଼େ । ମୋର ଯେତେବେଳେ ଯେଉଁ କାର୍ଯ୍ୟରେ ଆବଶ୍ୟକ ପଡ଼େ, ସାର୍ ମୋତେ ସାହାଯ୍ୟ କରନ୍ତି ।

କିନ୍ତୁ ଦୁଃଖର ବିଷୟ, ସେ ଦିନ ସେଇ ବାଟ ଦେଇ ଗଲାବେଳେ ଲୋକମାନଙ୍କର ଭିଡ଼ ଲାଗିଥିଲା । ମାଡ଼ାମ୍ ଚାଲିଗଲେ– ଏଇ ଗୋଟିଏ କଥା ସମସ୍ତଙ୍କ ମୁହଁରେ ମୁଁ ଶୁଣିବାକୁ ପାଇଲି । ସେଠାରେ ଜଣେ ପିଲାକୁ ପଚାରିଲି, "ଏମାନେ ଏମିତି ଠାଆକୁ ଠାଆ କାହିଁକି ଛିଡ଼ା ହୋଇଛନ୍ତି ? କେଉଁ ମାଡ଼ାମ୍ ଚାଲିଗଲେ ?" କଥାଟା ଶୁଣି ମୁଁ ମୋ କାନକୁ ବିଶ୍ୱାସ କରିପାରିଲିନାହିଁ । ଧାଇଁଆସିଲି ତାଙ୍କ ଘର ପାଖକୁ । ପଚାରି ବୁଝିଲି । ମନ ମୋର ଦବିଗଲା । ଯିଏ ସର୍ବଦା କର୍ମରତ, ଦେହ ଅସୁସ୍ଥ ଥାଇ ମଧ ପରିଶ୍ରମକୁ ଡରନ୍ତିନାହିଁ, ଏତେ ଶୀଘ୍ର ସଂସାର ଛାଡ଼ି ଚାଲିଯିବେ, ମୁଁ କଳ୍ପନା କରିନଥିଲି । ମନଟା ମୋର ଛଟପଟ ହେଲା ଦେଖିବା ପାଇଁ । କିନ୍ତୁ ସେତେବେଳକୁ ଶ୍ୱଶୁରଙ୍କ ଘର ମଲ୍ଲୀପୁରକୁ ଚାଲିଯାଇଥାନ୍ତି । ମୁଁ କେବେ ସେ ଗାଆଁ ଦେଖିନି । କଟକଠାରୁ ୩୫କି.ମି. ହେବ । କିପରି ଯିବି, ମନଟା ବ୍ୟାକୁଳ ହୋଇଉଠିଲା । ଅନେକ ସାଙ୍ଗଙ୍କୁ ଅନୁରୋଧ କଲି । ଶେଷରେ ନିରାଶ ହେଲି ।

ହଠାତ୍ ମନେପଡ଼ିଲା କଟକ ସିଟି କଲେଜ କଥା । ନିଶ୍ଚୟ ତାଙ୍କ ଷ୍ଟାଫ୍‌ମାନେ ଯିବେ । କଲେଜ ପାଖରେ ପହଞ୍ଚି ଦେଖେ ତ ଅନୁଷ୍ଠାନର ପ୍ରିନ୍‌ସିପାଲ, ଭାଇସ୍–ପ୍ରିନ୍‌ସିପାଲ ଓ ଅନ୍ୟ କର୍ମଚାରୀଙ୍କ ଗହଣରେ ଛାତ୍ରମାନଙ୍କର

ପ୍ରବଳ ଭିଡ଼ । ଟ୍ୟାକ୍‌ସି ଓ ଟ୍ରେକରରେ ଜାଗା ନାହିଁ । ଭାଇସ୍–ପ୍ରିନ୍‌ସିପାଲଙ୍କ ନିର୍ଦ୍ଦେଶରେ ମୋତେ ଗୋଟିଏ ସିଟ୍ ଦେଲେ । ଚାଲିଲୁ ମଲ୍ଲୀପୁର ଗ୍ରାମକୁ ।

ସ୍ୱପ୍ନ ଦେଖିଲି । ମରଦେହ ତାଙ୍କ ବାରଣ୍ଡାରେ ଧଳାଚାଦର ଢଙ୍କା ହୋଇ ରଖାଯାଇଥାଏ । ଚାଦର ଉପରେ କେତେକେଣ୍ଡା ଫୁଲ । ପାଖରେ ଦୁଇପୁଅଙ୍କ ସହିତ ପରିବାରର କେତେଜଣ ଲୋକ । ଅନ୍ୟମାନେ ତାଙ୍କ ଚିତା ପାଇଁ ଯୋଗାଡ଼ରେ ବ୍ୟସ୍ତ ଥା'ନ୍ତି । ମନ ମୋର ମରିଗଲା । ଗୋଟିଏ ପିଲାକୁ କହିଲି, ମୁହଁରୁ ଧଳାଚାଦର କାଢ଼ିବା ପାଇଁ । ପିଲାଟି କାଢ଼ିଲା । ମୁଁ ଚାହିଁଲି । ଆଖି ଦୁଇଟି ବୁଜି ହୋଇଯାଇଛି, ଯେମିତି ସଂସାରରୁ ସମସ୍ତ ଆସକ୍ତି, ଆକର୍ଷଣକୁ ଦୂରେଇଦେଇ ଆଖି ବୁଜିଦେଇଛନ୍ତି । ଓଠ ଦୁଇଟି ଖୋଲା, ଯେମିତି ହସହସ ମୁହଁ ଆଉ ସରଳ ଭାଷାରେ କଥା କୁହନ୍ତି । ସ୍ୱପ୍ନ ଭାଙ୍ଗିଗଲା ।

ମନେପଡ଼ିଲା କିଛିଦିନ ତଳର କଥା । କଟକ ମ୍ୟୁନିସିପାଲ କର୍ପୋରେସନ ଲାଇବ୍ରେରି ସହିଦ ଭବନରେ ଅବସ୍ଥିତ । ମୁଁ ସେଠାରେ କାମ କରେ । ସେ ଦିନ ସାଧାରଣ ପାଠକମାନଙ୍କର ଭିଡ଼ । ମୁଁ ବହି ଇସୁ କରୁଥାଏ । ମାଡ଼ାମ୍ ଆସି ମୋତେ ଗୋଟିଏ ବହି ମାଗିଲେ । ଭାରତ ଇତିହାସ । ମୁଁ ବହିଟି ଦେଲି । ସେ ମୋତେ ବିଭିନ୍ନ ଲେଖକଙ୍କ ଲିଖିତ ବହି ମାଗିଲେ । ଏତେ ଖଣ୍ଡ ବହି ଦେଇ ହେବନାହିଁ ବୋଲି ମୁଁ ମନା କରିଦେଲି । ସେ ମୋତେ ବାଧ୍ୟ କଲେ । କହିଲେ, ମୋର ନିହାତି ଦରକାର । ସେ ମୋତେ ଯେଉଁସବୁ ବହି ମାଗିଲେ, ମୁଁ ଜାଣିଲି ସେ ନିଶ୍ଚୟ ପିଏଚ୍.ଡି. କରୁଛନ୍ତି ।

ପାଖରେ କେତେଜଣ ସିଟି କଲେଜ ଛାତ୍ର ଆସି ପହଞ୍ଚିଲେ । ସେମାନେ ସବୁ ଦିନ ପଢ଼ିବା ପାଇଁ ଆସନ୍ତି । ସେମାନେ ମାଡ଼ାମ୍‌ଙ୍କୁ ନମସ୍କାର କଲେ । ମୁଁ ପଚାରିଲି, ମାଡ଼ାମ୍ କିଏ ? ସେମାନଙ୍କଠାରୁ ଶୁଣିଲି, ମାଡ଼ାମ୍ ସିଟି କଲେଜରେ ଇତିହାସ ବିଭାଗର ଅଧ୍ୟାପିକା ଅଛନ୍ତି । ଭାରି ଛାତ୍ରବତ୍ସଳା । ଜମା ରାଗନ୍ତିନାହିଁ । ବୁଝିନପାରିଲେ ଯେତେଥର ପଚାରିଲେ ମଧ୍ୟ ବୁଝାଇଦିଅନ୍ତି । ଭାରି ସରଳ, ସୁନ୍ଦର ବ୍ୟବହାର । ମୁଁ ତାଙ୍କୁ ଆଉ କେତେଖଣ୍ଡ ବହି ଦେଲି । ମାଡ଼ାମ୍ ପଢ଼ିସାରି ମୋତେ ବହି ଫେରାଇଦେଲେ ଏବଂ ମୋ ନାଁ ପଚାରିଲେ । କଥାବାର୍ତ୍ତା ମଧ୍ୟରେ ମୋତେ ଯେଉଁ ଉପଦେଶ ଦେଲେ, ସେଥିରେ ମୁଁ ଆଜି ଅନୁପ୍ରାଣିତ ।

ତା'ପରେ ସେ ମୋତେ ସାର୍‌ଙ୍କ ସଙ୍ଗେ ପରିଚୟ କରାଇଦେଇଥିଲେ । ସାର୍‌ଙ୍କ ପାଖକୁ ମୁଁ ଯାଇ ମନରେ ସାନ୍ତ୍ୱନା ଆଣେ; ସାର୍‌ଙ୍କର ସାହାଯ୍ୟ ଓ ପରାମର୍ଶ ଲୋଡ଼େ । ସେ ମୋର ଅସୁବିଧା ଦୂର କରନ୍ତି; ମୋ ବିଷୟରେ ବୁଝନ୍ତି; ଲାଇବ୍ରେରି କଥା ପଚାରନ୍ତି । ସେହି ସାର୍‌ଙ୍କ ପତ୍ନୀ ଆଉ ଦୁନିଆରେ ନାହାଁନ୍ତି । ଆଜି ମାଡ଼ାମ୍ ମୋତେ ଲାଇବ୍ରେରି କଥା ପଚାରନ୍ତିନାହିଁ । ମୋ ବିଷୟରେ ବୁଝନ୍ତିନାହିଁ । ମୋର ଦେଖା ହୁଅନ୍ତିନାହିଁ । ତାଙ୍କ ସହିତ ଛିଡ଼ିଯାଇଛି ମମତାର ଡୋର । ମାଡ଼ାମ୍ ଚାଲିଯାଇଛନ୍ତି ଦୂରକୁ– ବହୁତ ଦୂରକୁ । ଅଶାନ୍ତ ପରିଧିର ସୀମା ଆରପାରିକୁ, ଶାନ୍ତିର କେନ୍ଦ୍ରକୁ । ସେଠି ରୋଗ ନାହିଁ, ଶୋକ ନାହିଁ, ଅଶାନ୍ତି ବି ନାହିଁ । ଆଉ ତାଙ୍କୁ କେହି ବିବ୍ରତ କରିବେନି । ଅବଶ୍ୟ ସେଠାକୁ ଗଲେ କେବେ ଆଉ କେହି ଫେରେନାହିଁ ।

ମା' ମଙ୍ଗଳାଙ୍କ ନିକଟରେ ଏତିକି ପ୍ରାର୍ଥନା–ଆମମାନଙ୍କ ଉଦ୍ୟମ ସଫଳ ହେଉ । ମାଡ଼ାମ୍‌ଙ୍କ ସ୍ମୃତିରକ୍ଷା କାର୍ଯ୍ୟରେ ବିଘ୍ନ ନଘଟୁ । ପରଲୋକରୁ ମାଡ଼ାମ୍ ଆମ ପ୍ରତି ଆଶୀର୍ବାଦ ବର୍ଷଣ କରନ୍ତୁ ।

*ମ୍ୟୁନିସିପାଲ କର୍ପୋରେସନ ଲାଇବ୍ରେରି*
*ସହିଦ ଭବନ, କଟକ–୭୫୩୦୦୧*





# ଅପହଞ୍ଚ ଏ ଚିଠି

*ଡକ୍ଟର ଚାଉରୀଚନ୍ଦ୍ର କର*

ପରମ ଆଦରଣୀୟା, ଶ୍ରଦ୍ଧେୟା ନୀହାରିକା,

ତମେ ଯେଉଁଠି ଥାଅନା କାହିଁକି ମୋର ସ୍ନେହାଶୀର୍ବାଦ ଗ୍ରହଣ କରିବ । ଏ ଚିଠି ତମେ ପାଇବ କି ନା, ସେନେଇ ମୋର ସନ୍ଦେହ ଅଛି । ତଥାପି ଏ ଚିଠି ଲେଖି ମୁଁ ତମ ଉଦ୍ଦେଶ୍ୟରେ ମୋର ଶ୍ରଦ୍ଧା-ସୁମନ ଅର୍ପଣ କରୁଛି ।

ତମେ ଆମରି ଭଳି ପିଲାମାନଙ୍କୁ ପଢ଼ାଉଥିଲ । ପବିତ୍ର ବିଦ୍ୟାୟତନକୁ ନିୟମିତ ଯାଉଥିଲ । ଦରକାରବେଳେ ତମେ ସାମୟିକ ଛୁଟି ମଧ୍ଯ ନେଉଥିଲ। ବିନା ଛୁଟିରେ ଅନୁପସ୍ଥିତ ରହିବା ଅଭ୍ୟାସ ତମର ଆଦୌ ନଥିଲା । କ'ଣ ତମର ହେଲା ଯେ ବିନା ଛୁଟିରେ ଏତେଦିନ ହେଲା ତମେ ସେଇ ପ୍ରିୟ ବିଦ୍ୟାୟତନକୁ ଆସୁନ । କଟକ ସହରରେ ତମର ଜନସେବୀ ଅଧ୍ୟାପକ ସ୍ୱାମୀ ନାରାୟଣ ବାବୁଙ୍କୁ ନେଇ କଟକଚଣ୍ଡୀ ମନ୍ଦିରକୁ ଯାଉନ । ଘରପାଖ ମଙ୍ଗଳାଙ୍କ ନିକଟକୁ ଯିବା ବି ବନ୍ଦ କରିଦେଇଛ । ତା' ହେଲେ ତମେ କ'ଣ କରୁଛ ? ଘରକାମ ତ କରୁନ । ଆଉ ତ କାହିଁ ଆମମାନଙ୍କୁ ଡାକି ପୁରି-ତରକାରି ଖୁଆଉନାହଁ ? ତା' ହେଲେ କ'ଣ ନାରାୟଣ ବାବୁଙ୍କ ଉପରେ ରାଗି ବାପଘରକୁ ଚାଲିଯାଇଛ ? ବାପଘରକୁ ଯାଇ ଲୋକସବୁ ତମକୁ ଖୋଜିଆସିଲେଣି । ସେଠି ତମେ ନାହଁ । ତମର ତ ବଦଳି ହୋଇନଥିଲା । ବରଂ, ନାରାୟଣ ବାବୁ ଘନଘନ ବଦଳି ହେଉଥିଲେ । ତମେ କଟକରେ ରହି ତାଙ୍କ ପୋଷାକପତ୍ର ସଜାଡ଼ିଦେଉଥିଲ । କଲେଜ ବାହାରିବାବେଳେ ଡାଏରି, ନୋଟ୍‌ବୁକ୍ ଆଣିଦେଉଥିଲ । ତମ ଅଞ୍ଚଳକାନି ତଳେ ରହି ସେ ଓଡ଼ିଶାରେ ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ ଗଢ଼ିବାରେ ଅନ୍ୟତମ ଉଦ୍ୟୋକ୍ତା ଥିଲେ । ତମେ ଚାକିରି କରି ବି ଘରର ପିଲାଙ୍କ ଜଞ୍ଜାଳଠାରୁ ଆରମ୍ଭ କରି ସମସ୍ତଙ୍କ କଥା ବୁଝୁଥିଲ । ମଝିରେମଝିରେ ନାରାୟଣ ବାବୁ କିପରି ଗବେଷଣା କାର୍ଯ୍ୟ ଶୀଘ୍ର ସାରିବେ ସେଥିପାଇଁ ଉତ୍ସାହ ଦେଉଥିଲ । କ'ଣ ହେଲା ଯେ ସମସ୍ତଙ୍କୁ ପର କରିଦେଇ ଏମିତି ଗୋଟେ ଜାଗାକୁ ଚାଲିଗଲ, ଲୁଚିଗଲ, ହଜିଗଲ– ତମକୁ କେହି ଆଉ ପାଉନାହାଁନ୍ତି । ତମ ଦର୍ଶନଶାସ୍ତ୍ର

ଅଧ୍ୟାପକ ସ୍ୱାମୀ କହୁଛନ୍ତି, ତମେ କୁଆଡ଼େ ଆରଜନ୍ମରେ ପୁଣି ତାଙ୍କ ସହ ମିଳିତ ହେବ । ସେ ତ ବିଶ୍ୱାସ କରନ୍ତି ଜନ୍ମାନ୍ତରବାଦ ନିୟମରେ, ପୁଣି ଭାରତୀୟ ଦର୍ଶନର ଅବିନାଶୀ ଆତ୍ମା ଉପରେ । କିନ୍ତୁ ଆମେସବୁ ଯିଏ ବାସ୍ତବତାରେ ବିଶ୍ୱାସ କରୁ–ତମର ଏ ଢଙ୍ଗ ବୁଝିପାରୁନୁ ।

ଏବେ ଆଉ ଗୋଟିଏ କଥା ମନକୁ ଆସୁଛି । ତମେ ନାରାୟଣ ବାବୁଙ୍କର ଜଣେ ବିଶିଷ୍ଟ ଶିକ୍ଷକ ଡକ୍ଟର କୃଷ୍ଣପ୍ରସାଦ ମିଶ୍ରଙ୍କୁ ଜାଣ । ସେ ନାରାୟଣ ବାବୁଙ୍କ ସହ ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦରେ ଥିଲେ । ଶୁଣୁଛି, ତମେ କୁଆଡ଼େ ତାଙ୍କୁ ନାରାୟଣ ବାବୁ କାହିଁକି ଗବେଷଣା କାର୍ଯ୍ୟ ଶୀଘ୍ର କରୁନାହାଁନ୍ତି, ସେ ବିଷୟରେ ଅଭିଯୋଗ କରିବାକୁ ତାଙ୍କ ପାଖକୁ ଯାଇଛ । ସେ ତ ସହଜେ ଗଳ୍ପ ଲେଖକ; ଏଣେ ନୀତିବାଦୀ ଦର୍ଶନର ପ୍ରସିଦ୍ଧ ପ୍ରଫେସର । ସେ ବୋଧହୁଏ ତମକୁ ଅଟକାଇ ଏ ସଂସାରରେ ନୀତିନିଷ୍ଠ ଭାବରେ କିପରି ବଞ୍ଚିବ, ସ୍ୱାମୀର କିପରି ଉନ୍ନତି କାମନା କରିବ, ଏ ସଂପର୍କରେ ବକ୍ତୃତା ଦେଉଛନ୍ତି । ସେ ମଧ୍ୟ ତମ ଭଳି ଏମିତି କିଛିଦିନ ହେଲା ହଜିଯାଇଛନ୍ତି । ତାଙ୍କ ଠିକଣା ଆମକୁ କାହାକୁ ଦେଇନାହାଁନ୍ତି । ତମକୁ ଯେମିତି ଚିଠିଟିଏ ଲେଖୁଛି, ସେଇମିତି ତାଙ୍କୁ ଲେଖିଥିଲି । ମୋ ଚିଠି ପାଇଲେ କି ନା ମୁଁ ଜାଣେନା, କିନ୍ତୁ ମୋତେ ଲାଗିଲା ଯେମିତି ସେ ମୋ ଚିଠି ପାଇଛନ୍ତି ।

ମୁଁ ଭାବୁଛି– ବେଳେବେଳେ ଅପହଞ୍ଚ ଚିଠି ବି ଠିକଣା ଜାଗାରେ ପହଞ୍ଚେ । ତମେ ଯେଉଁବର୍ଷ ଆମ ଗହଣରୁ ହଜିଯାଇଛ, କେତେ ଗୁରୁ ସେ ବର୍ଷ ତ ଚାଲିଯାଇଛନ୍ତି । ତେଣୁ ତମର ଅସୁବିଧା କ'ଣ ? ତମେ ତ ସେଠି କେତେ ବେଦ–ବେଦାନ୍ତର ବ୍ୟାଖ୍ୟା କୃଷ୍ଣ ସାର୍‌ଙ୍କଠାରୁ, ରାଜନୀତିଶାସ୍ତ୍ରର ବିଶ୍ଳେଷଣ ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶଙ୍କଠାରୁ, ଅର୍ଥନୀତିର ରସାଳ ବିଚାର ପ୍ରଫେସର ସଦାଶିବ ମିଶ୍ରଙ୍କଠାରୁ ଓ ସାହିତ୍ୟର ତର୍ଜମା ପ୍ରଫେସର କୁଞ୍ଜବିହାରୀ ଦାଶଙ୍କଠାରୁ ଶୁଣୁଥିବ । ଆଉ ସେଠି ଅସୁବିଧା ତମର କ'ଣ ? ତମେ ତ ଏଠି ଥିଲାବେଳେ ଭଲ କର୍ମସବୁ କରୁଥିଲ । ତେଣୁ ସେଠି ଭଲ ଫଳଭୋଗ କରୁଥିବ, ଏ କଥା ଆମେ ଭାବୁଛୁ । ଏହା ସତ୍ତ୍ୱେ ବେଳେବେଳେ ତମ କଥା ମନକୁ ଆସୁଛି । ସତରେ ତମେ ଆମମାନଙ୍କୁ ଛାଡ଼ି କାହିଁକି ଚାଲିଯାଇଛ, ମନଖୋଲି କହିବନି ? ପିଲାମାନେ ତମକୁ ମା' ମା' ଡାକି ଖୋଜୁଛନ୍ତି; ନାରାୟଣ ବାବୁ ନୀହାରିକା,

ନୀହାରିକା ହୁରିଛାଡୁଛନ୍ତି; କଲେଜ ଛାତ୍ରଛାତ୍ରୀଗଣ ମାଡ଼ାମ୍ କୁଆଡ଼େ ଗଲେ ପଚାରୁଛନ୍ତି । ତଥାପି ତମେ ଶୁଣୁନା କାହାରି ଡାକ !

ଆମେ କେବଳ ଶୁଣୁଛୁ, ତମେ ସେଠି ଭଲରେ ଅଛ । ତମେ କୁଆଡ଼େ ଦେବୀ ପାଲଟିଗଲଣି । ଆମେ ମଧ ତମକୁ ଫଟୋଟିଏ କରି ଫୁଲଚନ୍ଦନ ଦେଲୁଣି । ବର୍ଷରେ ଥରେ ଏଣିକି ତମର ଉତ୍ସବ ଶ୍ରଦ୍ଧାରେ ପାଳନ କରିବୁ । ତମେ ମୂକ ହେଲେ ବି ଆମକୁ ଆବଶ୍ୟକବେଳେ ଅଭୟ ଦେବ । ଏମିତି କାହିଁକି ଗୋଟେ ଧାରଣା ଆମର ହେଲାଣି। ତମେ ସେଠି କୁଆଡ଼େ ଭଲରେ ଅଛ– ଶାନ୍ତିରେ ରହିଛ । କାରଣ ଏଠି ଆମେ ତମକୁ ସୁମରି ଲୁହ ଗଡ଼ାଉଛୁ । ସଂସାରରେ ଜଣେ ହସିହସି ବିଦାୟ ନେବାବେଳେ ଅନ୍ୟମାନେ ଲୁହ ଗଡ଼ାଇଲେ, ସେ ମଣିଷର ଜୀବନ ଧନ୍ୟ ହୁଏ । ତମ ଅବସ୍ଥା ସେଇପରି । ତମେ ସତୀ, ସାଧ୍ୱୀ, ପରିବ୍ରତା–ବ୍ରତରେ ତମେ ବିଶ୍ୱାସୀ । ତମେ ହସିହସି ଚାଲିଗଲ, କିନ୍ତୁ ଆମେ ଏବେ ବି ତମକୁ ଅଶ୍ରୁଳ ନୟନରେ ଖୋଜୁଛୁ ।

ତମ ପାଖରେ ଏ ଚିଠି ପହଞ୍ଚୁ ବା ନପହଞ୍ଚୁ ତମେ ସେପାରିରେ ଶାନ୍ତିରେ ଥିବ, ଏଇ ଆଶା ନେଇ ଆମେସବୁ ବଞ୍ଚିଛୁ । ତମ ଫଟୋ ନିକଟରେ ସଳିତାଟିଏ ଜାଳି ଫୁଲଚନ୍ଦନ ଦେଉଛୁ । ତମେ ଅମରତ୍ୱ ଲାଭ କରିଛ । ତମ ଆତ୍ମା ପରମାତ୍ମାଙ୍କ ସାନ୍ନିଧ ଲାଭ କରୁ– ଏ ଆଶା ପୋଷଣ କରି ମୁଁ ରହୁଛି ।

॥ ଇତି ॥

ତୁମର ଶୁଭାନୁଧାୟୀ–ଭାଇନା
ବାଉରୀବନ୍ଧୁ

*ସ୍ନାତକୋତ୍ତର ଓଡ଼ିଆ ବିଭାଗ*
*ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ*
*ବ୍ରହ୍ମପୁର–୭୬୦୦୦୭*



# ...ଚିଠିଟିଏ : ସ୍ୱପ୍ନରୁ ଚେନାଏ

*ଅଧ୍ୟାପକ ବିଜୟ ସ୍ୱାଇଁ*

ଶୁଭେଚ୍ଛୁ ମାଡ଼ାମ୍,

ଗଉଡୁଣୀବେଡ଼ିଆର ପଥୁରିଆ ଶେଯ ଉପରେ ଠିଆ ହୋଇ ଆପଣଙ୍କୁ ଅଶେଷ ଶୁଭକାମନା ଜଣାଉଛି । ବାପୁ ଓ ଲିଙ୍କନ୍ ଦୁହେଁ ଦେହ, ମନ, ପ୍ରାଣରେ ସୁସ୍ଥ ଥାଆନ୍ତୁ । ଭବଘୂରା, ଭାବଘେରା ନାରାୟଣ ବାବୁଙ୍କୁ ମୋର ଆନ୍ତରିକତା ଜଣାଇବେ ।

ପ୍ରାୟ ପାଖାପାଖି ବରଷଟେ ବିତିଗଲାଣି । କଟକର 'ନଦିଆ ନିବାସ' କୋଠିକୁ ଏହା ଭିତରେ ଦୁଇଥର ଯାଇଛି । ଆପଣଙ୍କୁ ମନେମନେ ଖୋଜିଛି । ବାପଘରକୁ ଯାଇଛନ୍ତି ବୋଲି ଖବର ପାଏ । ମନେମନେ ଭାବେ ମାଡ଼ାମ୍ ତ 'ନଦିଆ ନିବାସ' ଛାଡ଼ି ଏତେଦିନ ବାହାରେ ରହିବା ମଣିଷ ନୁହଁନ୍ତି ! ଏଠିକାର ପରିବେଶକୁ ଜୀବନ୍ତ କରିବ କିଏ ? ନାରାୟଣ ବାବୁଙ୍କୁ ଦେଖା କରିବା ପାଇଁ ନିୟତ-ଯାତ୍ରୀମାନଙ୍କୁ ଆପ୍ୟାୟିତ କରିବ ବା କିଏ ? କାହାପାଇଁ ଚାହା, କାହାପାଇଁ ଜଳଖିଆ, କାହାପାଇଁ ଭୋଜନ ହସିହସି ପରିବେଷଣ କରିବ କିଏ ? ଘରଠୁ ବାହାରଯାଏ ଭଲମନ୍ଦ କଥା ପଚାରିବୁଝିବ କିଏ ? ନାରାୟଣ ବାବୁଙ୍କ ବ୍ୟକ୍ତିଗତ ଦପ୍ତରର ନଥିପତ୍ର ସଜାଡ଼ି ସାଇତିରଖିବ ପୁଣି କିଏ ? ଏଇମିତି ନାନାକଥା ମନକୁ ଛୁଏଁ । ନାରାୟଣ ବାବୁଙ୍କ ସହ କଥାବାର୍ତ୍ତା ସାରି ଫେରିଆସେ ।

ଆପଣ ବୋଧେ ଜାଣିଥିବେ, ଅଧାପକ ରାଜୁ ମହାନ୍ତି ଏହା ଭିତରେ ଢେଙ୍କାନାଳ ବଦଳି ହୋଇ ଆସିଲେଣି । ହେଇତ ! ମୋ'ଠୁ ଦଶହାତ ଦୂରରେ ପଥରଟା ଉପରେ ବସିପଡ଼ି, ଗୁଣୁଗୁଣୁ ହୋଇ ନକ୍‌ସା କାଟୁଛନ୍ତି । ବରଷା ଯିବା ଆଗରୁ ପାଞ୍ଚଭାୟା ଜାଗାର ଚଉହଦିରେ ନଡ଼ିଆଚାରା ରୋପିବା ପାଇଁ ଅଟକଳ କରୁଛନ୍ତି । ଗତକାଲି ରାତିସାରା ତାଙ୍କ କୁଞ୍ଜକାନ୍ତ ବସାଘରେ ଘଡ଼ିଏ, ପହଡ଼େ ଶୁଆଇଦେଲେନି । ସବୁ ଚିଠା ତିଆରି ହୋଇସାରିଛି । ବ୍ରାହ୍ମଣ, ପୁରୋହିତଠୁ ଆରମ୍ଭ କରି ଏପରିକି ଖରାଦିନେ ଗଛରେ ପାଣି ଦେବ କିଏ, ସେସବୁ ବି ଠିକ୍‌ଠାକ୍ ହୋଇଛି । କେବଳ ତିଥି, ବାର ଦେଖି ଆମେ ପାଞ୍ଚ ପରିବାର ଏକାଠି ହେଲେ, ମଙ୍ଗଳଧ୍ୱନି ଭିତରେ ସ୍ୱପ୍ନର ସୁନେଲି କିରଣରେ ଏଠିକାର ମାଟି ହସିଉଠିବ ।

ଆମେ ପାଞ୍ଚଜଣ ଏକାଠି ହେବାରେ ଅସୁବିଧା ନାହିଁ । ନଳିନାକ୍ଷ ବାବୁ, ପ୍ରଭାତ ବାବୁ ଆଉ ମୋ' ପରିବାର ଏଠି ପହଁଞ୍ଚିବାରେ ସମୟ ଲାଗିବନି । ରାଜୁ ବାବୁଙ୍କ ପରିବାର ତ ଏଇଠି । ପିଲା ଦୁଇଜଣ ନାରାୟଣ ବାବୁଙ୍କ ସହ ଚାଲିଆସିବେ । ହେଲେ ଆପଣ ଆସିବେ କିପରି ? ସେଇକଥା ନେଇ ମୋର ଏକାନ୍ତ ମୁଣ୍ଡବ୍ୟଥା । ଏମିତି ଜାଗାରେ ଆପଣ ଅଟକିଯାଇଛନ୍ତି ଯେ ସେଠାକୁ ଯିବା ପାଇଁ ପାଦଚଲା ଭଲ ରାସ୍ତାଟିଏ ବି ନାହିଁ । ନାରାୟଣ ବାବୁ କହୁଥିଲେ, ଦିଲ୍ଲୀରୁ ଫେରିଲା ପରେ ଆପଣଙ୍କ ଦେହପା' ସେତେଟା ଭଲ ରହୁନାହିଁ । ବ୍ୟସ୍ତ ହେବେନି । ନିୟମିତ ଔଷଧ ସେବନ କରି ବିଶ୍ରାମ ନେଲେ ଦିନ କେଇଟାରେ ଆପଣ ପୁଣି ଉଠିବସିବେ । ଆପଣ ଦିଲ୍ଲୀ ଯିବାର ଅଳ୍ପ କେଇଦିନ ଆଗରୁ 'ନଦିଆ ନିବାସ'ରେ ଯାହା ଦେଖା ହୋଇଥିଲା । ନଅ ତିଅଣ, ସାତ ଭଜା କରି ମଧ୍ୟାହ୍ନଭୋଜନରେ ଆପ୍ୟାୟିତ କରିଥିଲେ । ହସିହସି ଆପଣଙ୍କ ବାପାଙ୍କ ସହ ମୋର ପରିଚୟ କରାଇଦେଇଥିଲେ । କାହିଁ, ସେ ଦିନ ତ ଆପଣ ଅସୁସ୍ଥ ବୋଲି ମୁଁ ଜାଣିପାରିନଥିଲି । ଏବେ ଭାବୁଛି, ସ୍ତ୍ରୀଲୋକମାନେ କଷ୍ଟ ସହିପାରନ୍ତି, ହେଲେ ଆପଣଙ୍କ ଭଳି ସମସ୍ତ ଶାରୀରିକ ଯନ୍ତ୍ରଣାର ବୋଝ ମୁଣ୍ଡେଇ ହସିହସି କଥା କହିପାରନ୍ତିନି । ଧନ୍ୟ କହିବି ଆପଣଙ୍କୁ! ଠାକୁରେ କରନ୍ତୁ, ଆପଣ ଶୀଘ୍ର ସୁସ୍ଥ ହୁଅନ୍ତୁ । ଯେମିତି ହେଉ ଆପଣଙ୍କ ଆସିବା ବ୍ୟବସ୍ଥା କରାଯିବ । ତା' ନହେଲେ ରାଜୁ ମହାନ୍ତି ବିଚରା ମୁଣ୍ଡ ପିଟିଦେଇ, ସବୁ ନକ୍‌ସାପତ୍ର ଚିରି ମୋରି ମୁଣ୍ଡ ଉପରେ ଅଜାଡ଼ିଦେବ । ପାଞ୍ଚପାଞ୍ଚଟା ଘର କୁଆଡ଼େ ଏକା ପାଟର୍ନ୍‌ର ହେବ । ଏଇମିତି ନାନା ପ୍ରକାର ସ୍ୱପ୍ନର ପ୍ରଜାପତିମାନଙ୍କୁ ହାତରେ ଧରି ଖାଲି ଦିନ ଗଣୁଛନ୍ତି । ତାଙ୍କୁ ଏକା କରି ମୁଁ ଟିକେ ଦୂରେଇ ବସି ଚିଠି ଲେଖୁଛି ବୋଲି ମଝିରେମଝିରେ ଗୋଡ଼ି ଗୋଟିଏଗୋଟିଏ ଫିଙ୍ଗୁଛନ୍ତି । ଆଉ ଓଡ଼ିଆ ଅଧ୍ୟାପକ ବୋଲି ତିରସ୍କାର କରୁଛନ୍ତି । ତାଙ୍କର କହିବା ମତଲବ ହେଲା, ଚିଠିଟେ ଲେଖିଦିଅ । ଦିନ ଧାର୍ଯ୍ୟ କରିଦିଅ । ଆସିବା କଥା ଯେଝା ବୁଝିବେ । ଆଉ ଏତେଏତେ ଲେଖିବା କ'ଣ ଦରକାର ? ତାଙ୍କ କଥାରେ ମୋ' ମନ ମାନୁନି । ଆପଣ ଶୀଘ୍ର କଟକ ନଫେରିଲେ, ନାରାୟଣ ବାବୁଙ୍କ ଅନୁପସ୍ଥିତିରେ ଫୋନ୍‌ରେ ଖବରଅନ୍ତର ବୁଝିବ ବା କିଏ ?

ମନେପଡୁଛି, ମୋର ଯେତେବେଳେ ଭବାନୀପାଟଣା ବଦଳି ହୋଇଥାଏ– ସହଜେ ତ ନାରାୟଣ ବାବୁ ବ୍ୟସ୍ତ ହୋଇଥିଲେ; ଆଉ ଆପଣ ବି ମର୍ମାହତ ହୋଇଥିଲେ । ଲେଖିବାରେ ମୋର ଆଦୌ କୁଣ୍ଠା ନାହିଁ ଯେ, ଆମ ଘରକଥା ଆପଣଙ୍କୁ ସବୁ ଜଣା । ଢେଙ୍କାନାଳ ରହଣିକାଳରେ ନାରାୟଣ ବାବୁ ପ୍ରାୟ ପ୍ରତିଦିନ ଆମ

ବସାକୁ ଆସୁଥିଲେ । ନିଜ ଭଉଣୀ ଘରକୁ ନଯାଇ ସେ ମୋ' ସହ ସମୟ କାଟୁଥିଲେ । କେବେକେବେ ଲିଙ୍କନ୍ ସାଥିରେ ଆସୁଥିଲେ, ଆପଣ ତାକୁ ଆମ ବସାରେ ଛାଡ଼ିବାକୁ କହୁଥିଲେ । ଏତେ ଆତ୍ମୀୟତା ସହଜେ ସମ୍ଭବ ନୁହେଁ । ନାରାୟଣ ବାବୁ ବୟସରେ ଯାହା ହୁଅନ୍ତୁ ନା କାହିଁକି, ଚିନ୍ତାଧାରାରେ ଖୁବ୍ ଉଚ୍ଚକୋଟୀର ମଣିଷଟିଏ । ଦରଦୀ ବନ୍ଧୁଟିଏ । ସୁଦକ୍ଷ ପରାମର୍ଶଦାତାଟିଏ ବି ସିଏ । ଏସବୁ ସମ୍ଭବ ହୋଇପାରିଛି କେବଳ ଆପଣଙ୍କ ଭଳି ସହଧର୍ମିଣୀଟିଏ ପାଇଁ ସିନା ! ନିଜେ ଅଧ୍ୟାପନା, ଚାକିରି କଥା ବୁଝି, ପରିବାରରେ ବଡ଼ବୋହୂର ଭୂମିକା ନିର୍ବାହ କରି, ଗଲାଅଇଲା ସବୁରିଙ୍କ ମନକଥା ବୁଝି, ନାରାୟଣ ବାବୁଙ୍କ ସମସ୍ୟାସଙ୍କୁଳ ଜୀବନଯାତ୍ରାକୁ ଯେ ଆପଣ ସହଜ, ସୁନ୍ଦର କରିପାରିଛନ୍ତି–ନିଜ ଘରକୁ ଚାହିଁ ସେ କଥା କଳନା କରିହୁଏନା । ଜାଣି ଖୁସି ହେବେ ଯେ, ବଡ଼ଝିଅ ଦୁଇଜଣ ଏ ସନ କଲେଜରେ ନାମ ଲେଖାଇଛନ୍ତି । କେବଳ ସାନଟା ଯାହା ଚଗଲାମି କରୁଛି ।

ଭବାନୀପାଟଣା ନଯାଇ ଭଦ୍ରକ ଆସିଲି । ଆପଣଙ୍କ ପାଦ ଏ ଆଡ଼େ ପଡ଼ିନି । ଘରେ ଆମର ପ୍ରାୟ ଆପଣଙ୍କ କଥା ଚର୍ଚ୍ଚା ହୁଏ । ଏପରି ପାରସ୍ପରିକତାର ମୂଳହେତୁ ହିଁ ଆପଣ। ଆମେ ଏଠି ପ୍ରାୟତଃ ଭଲରେ ଅଛୁ । ମୁଁ କାଲି ଢେଙ୍କାନାଳରୁ ଭଦ୍ରକ ଫେରିବି । ଭବିଷ୍ୟତ ଯୋଜନା କରୁକରୁ ରାଜୁ ବାବୁଙ୍କ ବସାରେ ସାତରାତି ରହିଗଲି । ପୁଣି ତ ନିକଟରେ ଏକାଠି ହେବା । ଯୋଜନା ଅନୁସାରେ ଆପଣ ପାଞ୍ଚଘରଣୀଙ୍କ ମଧ୍ୟରେ ମୁଖିଆ ହେବେ । ଆପଣଙ୍କ ଇଲାକାରେ ଠିଆ ହୋଇଥିବା ଏକମାତ୍ର ଡେଙ୍ଗା, ଜଙ୍ଗଲୀଗଛ ମୂଳରେ ପାଞ୍ଚୋଟି ଶୁଭକଳସୀ ବସିବ । ଶଙ୍ଖ, ହୁଳହୁଳି ପଡ଼ିବ । ଛୋଟିଆମୋଟିଆ ଭୋଜିଟେ ହେବ । ଗଉଡୁଣୀବେଢ଼ିଆର ସମସ୍ତେ ତଥା ଆମ୍ଭମାନଙ୍କର ଶୁଭାକାଂକ୍ଷୀ, ହିତୈଷୀମାନେ ଏଇ ମାଟିଚଟାଣ ଉପରେ ପତର ପକାଇବେ । ପ୍ରସାଦ ସେବନ ପର୍ବର ଶେଷ ଧାପରେ ଆପଣ ହିଁ କ୍ଷୀରୀ ପରିବେଷଣ କରିବେ ।

ମୋର ଯେତେଦୂର ବିଶ୍ୱାସ, ଆପଣ ଏହା ଭିତରେ 'ନଦିଆ ନିବାସ'କୁ ଆସିସାରିବେଣି । ନିକଟରେ 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା'ର ପ୍ରଥମ ରାଜ୍ୟସ୍ତରୀୟ ସମ୍ମିଳନୀ କଟକରେ ଅନୁଷ୍ଠିତ ହୋଇଯାଇଛି । ବିଧିର ବିଡ଼ମ୍ବନା ଏହି ଯେ, ଆଗେ ମୁଁ ଯାଇ ପହଞ୍ଚିବା କଥା; ହେଲେ ଯାଇପାରିଲିନି । ଦୁଇଦିନ ଆଗରୁ ନାରାୟଣ ବାବୁଙ୍କୁ ମୋର ଅସୁବିଧା କଥା କହିଥିଲି । ହେଲେ ସେ ଟିକେ ମନ କଷ୍ଟ କରିଥିବେ । ଅନୁରୋଧ ରହିଲା, ଆପଣ ମୋ' ତରଫରୁ ତାଙ୍କୁ ବୁଝାଇଦେବେ ।

ସବୁ କଥା ଏକକାଳୀନ ଲେଖିବସିଲେ ଚିଠିଟା ପୁରାଣ ପାଲଟିଯିବ । ଭୟ ଏତିକି, ଅସୁସ୍ଥତା ଭିତରେ ମୋ' ଚିଠି ଆପଣଙ୍କୁ ବିରକ୍ତିକର ମନେହେବନି ତ ଆଉ ! ଏହା ଭିତରେ ଯଦି କଟକ ଫେରିନଥାନ୍ତି, ତେବେ ବି ଚିଠି ପାଇବେ— ସେ ବିଶ୍ୱାସ ମୋର ଅଛି । ନାରାୟଣ ବାବୁ କଟକରୁ ଆପଣଙ୍କ ଗାଁ ଲୋକଙ୍କ ହାତରେ ପଠାଇଦେବେ । ଧୈର୍ଯ୍ୟ ସହକାରେ ସବୁ ପଢ଼ିବେ । ତା'ହେଲେ ଲେଖକୀୟ ପ୍ରାଣ ମୋର ତୃପ୍ତି ଲଭିବ । ଆସନ୍ତା ଏକ୍ସ-ମାସ୍ ଛୁଟିରେ ଏଇ ମାଟିଅଗଣାରେ ଏକାଠି ବସି ସପନର ପ୍ରଥମ ପର୍ବ ଯାକଜମକରେ ପାଳନ କରିବା । ରାଜୁ ବାବୁଟା ଏଡ଼ିକି ଇଲିସିଆଟେ ଯେ, ସମସ୍ତ କାର୍ଯ୍ୟକ୍ରମର ଭିଡ଼ିଓ କ୍ୟାସେଟ୍ ତିଆରି ହେବ ବୋଲି ଚାରିଆଡ଼େ କହିବୁଲୁଛି । ଜୀବନ-ସଂଧ୍ୟାରେ ସେଇଟା କୁଆଡ଼େ ତାହା କପ୍‌ରେ ପକୁଡ଼ି ଭଳି ଲାଗିବ । ସବୁ ସତ ଯେ, ହେଲେ ଆପଣଙ୍କ ଉପସ୍ଥିତି ବିନା ଏସବୁ ପାଣିଚିଆ, ଫିକା ହୋଇଯିବ ।

ଶେଷରେ ଈଶ୍ୱରଙ୍କ ନିକଟରେ ଏକାଂତ ପ୍ରଣତି ବାଢ଼ୁଛି— ଆପଣ ସୁସ୍ଥ ଥାଆନ୍ତୁ । ବିନା ପ୍ରେରଣାରେ ରଥଚକ ଆଗକୁ ବଢ଼ିପାରିବନି । ନାରାୟଣ ବାବୁ ମୋ' ପରି ଅନେକଙ୍କର ଆଶାଭରସା ତଥା ସୁଖଦୁଃଖର ସାଥୀ । ଆପଣ ଆସି ଘରକଥା ବୁଝିଲେ ସେ ଆମଆଡ଼େ ସମୟ ଦେଇପାରିବେ । ରହୁଛି । ଚିଠି ପାଇ ଦି' ଧାଡ଼ି ଗାରେଇଦେବେ । ସେଇ ହେବ ଆମ ପାଇଁ ମହାକାବ୍ୟ । ଆଶା ଓ ବିଶ୍ୱାସ, ଗଉଡୁଣୀବେଢ଼ିଆର ମାଟିପ୍ରୀତି ଆମ୍ଭମାନଙ୍କୁ ନିକଟରେ, ଖୁବ୍ ନିକଟରେ ଆପଣେଇ ନେବ ।

॥ ଇତି ॥

ଆପଣଙ୍କର ସୌଜନ୍ୟମୁଗ୍ଧ

ବିଜୟ ସ୍ୱାଇଁ

*ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ*
*ଭଦ୍ରକ ପ୍ରାତଃ ମହାବିଦ୍ୟାଳୟ*
*ଭଦ୍ରକ–୭୫୬୧୦୦*



# ଅତୀତରୁ କିଛି

ଶ୍ରୀ ବରଦାକାନ୍ତ ମହାନ୍ତି

୧୯୮୨ ମସିହାର ଘଟଣା । ଅଜଣା ଲୋକଙ୍କୁ ଦେଖିବା ପାଇଁ ମନରେ ଖୁବ୍ ଆଗ୍ରହ ଜାତ ହୁଏ; ଏହା ମୋର ମଧ ହୋଇଥିଲା । ସ୍ୱର୍ଗୀୟା ନୀହାରିକା ଭାଉଜ (ମୋ ଶଳାଙ୍କର ଶଳାଭାଉଜ) ୧୯୮୨ ମସିହାରେ ତାଙ୍କ ପୁଅ ନୀହାରର ଦେହ ଖରାପ ଥିବା ହେତୁ କଟକ ବଡ଼ ମେଡ଼ିକାଲ୍‌ରେ ଥାଆନ୍ତି । ମୋର ଖୁବ୍ ଅଳ୍ପଦିନ ହେବ ବିବାହ ହୋଇଥାଏ । ମନରେ ଖୁବ୍ ଉତ୍କଣ୍ଠା ନେଇ ଚାଲିଲି ରୋଗଗ୍ରସ୍ତ ପୁଅକୁ ଦେଖିବା ପାଇଁ । ଭାଉଜଙ୍କୁ ଦେଖିନଥାଏ; ସେ ବି ମୋତେ ଚିହ୍ନିନଥାନ୍ତି । ମେଡ଼ିକାଲ୍‌ରେ ଖୋଜିଖୋଜି ପହଞ୍ଚି ନିଜ ପରିଚୟ ଦେଲି । ସେତିକିବେଳୁ ଭାଉଜ କି ମନ୍ତ୍ରରେ ମୋତେ ବନ୍ଦୀ କରିଦେଲେ କେଜାଣି ଆଜି ପର୍ଯ୍ୟନ୍ତ ବି ଚେଷ୍ଟା କରି ତାଙ୍କୁ ଭୁଲିପାରୁନି । ମେଡ଼ିକାଲ୍‌ରେ ସେ ଦିନ ଦୀର୍ଘ ଅଧଘଣ୍ଟାଏ ଧରି ଆଳାପଆଲୋଚନା କଲୁ । ଅଧ୍ୟାପିକା, ପୁଣି ଉଚ୍ଚଶିକ୍ଷିତା; ବଡ଼ଘରର ଝିଅ, ପୁଣି ବଡ଼ଘରେ ବଡ଼ବଧୂ ସାଜିଛନ୍ତି । ତା' ସତ୍ତ୍ୱେ ମନରେ ଟିକେ ବି ଗର୍ବ କି ଅହଂକାରର ସ୍ପର୍ଶ ପାଇଲିନାହିଁ । ସେ ଦିନ ତାଙ୍କ ପାଖରୁ ବିଦାୟନେଇ ଆସିଲି । ତା'ପରେ ଅନେକବାର ତାଙ୍କ ଶାଶୁଘରକୁ ଯାଇଛି । ହାତରୁ ଚା, ଜଳଖିଆ ଖାଇଛି । ସବୁବେଳେ ହସହସ ମୁହଁ, ମଧୁର କଥା, ଉତ୍ତମ ବ୍ୟବହାର । ରାସ୍ତାଘାଟରେ ଦେଖା ହୋଇଗଲେ ବି ମୋ' କଥା, ମୋ' ସ୍ତ୍ରୀ କୁନି କଥା, ପିଲାମାନଙ୍କ କଥା ପଚାରିବସନ୍ତି । ଯୋଗକୁ ତାଙ୍କ ବଡ଼ପୁଅ ନୀହାର ମୋ' ପୁଅର ସ୍କୁଲରେ ସହପାଠୀ ହୋଇଗଲା । ସ୍କୁଲକୁ ପିଲାମାନଙ୍କୁ ଛାଡ଼ିବାକୁ ଏବଂ ନେବାକୁ ଆସିବାବେଳକୁ ଅଧିକାଂଶ ଦିନ ଦେଖାହୁଏ । ଖୁବ୍ ସମୟ ଗପ ହେଉ । ବହୁତ ଉପଦେଶ ଦିଅନ୍ତି । ୧୯୯୪ ମସିହା (ଗତବର୍ଷ) ସ୍କୁଲର ବାର୍ଷିକ ଉତ୍ସବର ଡ୍ରାମାରେ ବିଷୟ ଥାଏ 'ଉଦ୍ଦାମ ସିଂହ' । ମୋ' ପୁଅ ହୋଇଥାଏ ଉଦ୍ଦାମ ସିଂହ । ତାଙ୍କ ପୁଅ ହୋଇଥାଏ ଉଦ୍ଦାମ ସିଂହର ଘାତକ । ଫଟୋସବୁ ସ୍କୁଲରୁ ଘରକୁ ପଠାଗଲା । ମୋତେ କହି ହସିହସି ଗଡ଼ିଯାଇଥିଲେ ନୀହାରିକା ଭାଉଜ ।

ମରିବାର କିଛିଦିନ ପୂର୍ବରୁ ସେହି ସ୍କୁଲ ପାଖରେ ଦେଖାହେଲା । ରିକ୍ସାରେ ବସିଥାନ୍ତି । ଭଲମନ୍ଦ କଥା ହେଲୁ । ପଚାରିଲି, "ଏତେ ନିସ୍ତେଜ ଦେଖାଯାଉଛନ୍ତି କାହିଁକି ?" ଉତ୍ତର ଆସିଲା, "ହଁ, ଦେହ ତ ଜମା ଭଲ ରହୁନି । ଏବେ ଡାକ୍ତରଙ୍କ ଚିକିତ୍ସାଧୀନ ଅଛି । କ'ଣ କରିବି, ମଣିଷ ଜୀବନ ତ !" ଆଉ ସେହି ଦିନରୁ ଦେଖା ହୋଇନାହିଁ । ସେ ଛୁଟି ନେଇ ଗଲେ ଶାଶୁଘର ଗାଁକୁ । ତା'ପରେ ଚାଲିଲେ ନିଜ ବାପଘର ଗାଁ ବୋଧପୁରକୁ । ଯେଉଁଦିନ ରାତିରେ ସେ ଦିବଂଗତା ହେଲେ, ତା'ପର ଦିନ ମୋ ଶ୍ୱଶୁରଘର ଢେଙ୍କାନାଳରୁ ଜଣେ ସାମ୍ବାଦିକ ଓ କବିବନ୍ଧୁ ମନୋରଞ୍ଜନ ନନ୍ଦ ଆସି ମୋତେ କହିଲେ, "ଗତ ରାତିରେ ପ୍ରଫୁଲ୍ଲ ଭାଇ (ମୋର ଚତୁର୍ଥ ଶଳା)ଙ୍କ ଶଳାଭାଉଜ ଅଧ୍ୟାପିକା ଶ୍ରୀମତୀ ନୀହାରିକା ଦାସ ଇହଲୀଳା ସମ୍ବରଣ କରିଛନ୍ତି ।" କଥାଟାକୁ ବିଶ୍ୱାସ କରି ହେଲାନାହିଁ । ହେଲେ କବିବନ୍ଧୁ ଜଣକ ଜୋର୍‌ଦେଇ କହିଲେ, "ମୁଁ ଗତ ରାତିରେ ଢେଙ୍କାନାଳରେ ଶୁଣିବାକୁ ପାଇଲି – ରାତି ୧୧ଟାବେଳେ ।" ଏକଥା ଶୁଣିବାବେଳକୁ ଦିନ ୧ଟା ୩୦ ମିନିଟ୍ ପାଖାପାଖି ହୋଇଥିଲା । ମନ ବ୍ୟସ୍ତ ଲାଗିଲା । ଅଫିସ୍‌ରେ ଥାଏ । ଅଫିସ୍‌ରେ କୋହ ସମ୍ବରଣ କରିପାରିଲିନି । ଅଫିସ୍ ସରିଲା । ଭାବିଥିଲି ଘଟଣାଟା ସତ କି ମିଛି ଆଗେ ବୁଝେ । ଘରକୁ ଆସି ମୋ ସହଧର୍ମିଣୀ କୁନିଠାରୁ ବୁଝିଲି ଘଟଣାଟି ସତ । କାରଣ ସେ ପିଲାମାନଙ୍କୁ ଆଣିବା ପାଇଁ ସ୍କୁଲ ଯାଇଥାଏ । ସେଠାରେ ଜଣେ ଆଇନଜ୍ଞ ବନ୍ଧୁଙ୍କ ସହଧର୍ମିଣୀଙ୍କଠାରୁ ମୋ ଧର୍ମପତ୍ନୀ ଏହା ଶୁଣିଛନ୍ତି ଏବଂ ଆହୁରି ମଧ୍ୟ ଶୁଣିଛନ୍ତି ଯେ, ସେମାନେ ପରିବାର ସହ ସକାଳୁ ନୀହାରିକା ଭାଉଜଙ୍କର ଶାଶୁଘର ମଲ୍ଲୀପୁର ଗାଁକୁ ଚାଲିଯାଇଛନ୍ତି । ଭାବିଲି ସନ୍ଧ୍ୟା ତ ହେଲାଣି । ସେଠାକୁ ଆଉ ବସ୍‌ରେ ଯାଇ ହେବନି । ତହିଁ ପରଦିନ ସକାଳୁ ଗଲେ ଶରୀର ପାଉଁଶ ହୋଇସାରିଥିବ । ତେଣୁ ଭାଉଜଙ୍କ ସ୍ୱାମୀ ନାରାୟଣ ଭାଇ (ଅଧ୍ୟାପକ ଶ୍ରୀ ନାରାୟଣ ମହାନ୍ତି)ଙ୍କ ପାଖକୁ ଦୁଃଖରେ ଟେଲିଗ୍ରାମଟିଏ କଲି । ତାହା ପରେ ଗାଁର ଫୋନ୍ ନମ୍ବର ପାଇ ମଲ୍ଲୀପୁରକୁ ଫୋନ୍ କରିଥିଲି । ହେଲେ ଭାଉଜଙ୍କ ପାଇଁ ମୋ' ମନରେ ଯେଉଁ ଦୁଃଖ ରହିଗଲା ତାହା ଆଜି ପର୍ଯ୍ୟନ୍ତ ବି ଲିଭୁନି । ତାଙ୍କ ସ୍ଥାନ ଆଉ କେହି ବି ମୋ' ପାଇଁ ପୂରଣ କରିପାରିବେ, ଏ ବିଶ୍ୱାସ ମୋର ନାହିଁ । ଶୁଣିଲି ଏକ ଶୋକ ପୁସ୍ତିକା 'ଶ୍ରଦ୍ଧାଞ୍ଜଳି' ଭାଉଜଙ୍କର

ପ୍ରଥମ ବାର୍ଷିକ ଶ୍ରାଦ୍ଧୋତ୍ସବ ଦିନ ଉନ୍ମୋଚନ କରାହେବ । ଭାଉଜଙ୍କ ପାଇଁ କିଛି କରିପାରିନଥିଲେ ବି, ତାଙ୍କୁ କିଛି ଦେଇପାରିନଥିଲେ ବି, ପୁସ୍ତିକା ପାଇଁ ଲେଖାଟିଏ ଦେଇ ତାଙ୍କ ପ୍ରତି ମୋର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି । ତାଙ୍କ ଆତ୍ମାର ସଦ୍‌ଗତି ହେଉ । ତାଙ୍କର ଦୁଇଟି ନାବାଳକ ପୁତ୍ର ସମାଜରେ ପ୍ରତିଷ୍ଠିତ ହୋଇ ତାଙ୍କର ନାମ ରଖନ୍ତୁ–ଭଗବାନ୍‌ଙ୍କ ପାଖରେ ଏତିକି ପ୍ରାର୍ଥନା କରୁଛି ।

*ସାମନ୍ତ ସାହି*
*ନୂଆ କଲୋନୀ*
*କଟକ–୭୫୩୦୦୧*





# ସୃଷ୍ଟିର ବୈଚିତ୍ର୍ୟ

*ଶ୍ରୀ ରାସବିହାରୀ ମହାନ୍ତି*

ଜାତସ୍ୟ ମରଣଂ ଧ୍ରୁବମ୍ । ଜନ୍ମ ହେଲେ ମୃତ୍ୟୁ ଅବଶ୍ୟମ୍ଭାବୀ । କବିଙ୍କର ଲେଖନୀରେ ପରିପୁଷ୍ଟ ହୁଏ– "ସର୍ବେ ନିଜନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।" "କେ ଜାଣେ କାହାର ଆଜି ମୃତ୍ୟୁକାଳ ହୋଇଯିବ ଉପସ୍ଥିତ" ଇତ୍ୟାଦି ।

ପ୍ରାଣୀଜଗତ ହେଉ ବା ଉଦ୍ଭିଦଜଗତ ହେଉ, ଏ ସମସ୍ତଙ୍କର ଜନ୍ମ ଓ ମୃତ୍ୟୁ ଘଟେ । ପ୍ରାଣୀଜଗତରେ ମନୁଷ୍ୟ ଶ୍ରେଷ୍ଠ ପ୍ରାଣୀ; କାରଣ ତା'ର କେବଳ ମନ ନୁହେଁ, ବିବେକ ମଧ୍ୟ କାର୍ଯ୍ୟ କରେ । ନିୟତିର ବିଧାନ ବଡ଼ ବିଚିତ୍ର । କୌଣସି ପ୍ରାଣୀ ଏପରିକି ଗୃହପାଳିତ ପଶୁଟିଏ ମଧ୍ୟ ଅକାଳରେ ମୃତ୍ୟୁବରଣ କଲେ ତା'ର ମାଲିକ ଅତ୍ୟଧିକ ଦୁଃଖିତ ହୋଇପଡ଼େ । ବୃଦ୍ଧାବସ୍ଥାରେ ସ୍ୱାଭାବିକ ମୃତ୍ୟୁ ଘଟିଲେ ସେ ଏତେ ପରିମାଣରେ ଦୁଃଖିତ ହୋଇନଥାଏ । ଉଦ୍ଭିଦଜଗତରେ ମଧ୍ୟ ବୃକ୍ଷଟିଏ ପୂର୍ଣ୍ଣ ବିକାଶପ୍ରାପ୍ତି ପୂର୍ବରୁ ଯଦି ନଷ୍ଟ ହୋଇଯାଏ, ତାହା ମଧ୍ୟ ଆମ ପାଇଁ ଦୁଃଖର କାରଣ ହୋଇଥାଏ ।

ମନୁଷ୍ୟର ଚାରୋଟି ଅବସ୍ଥା ଅଛି; ଯଥା– ଶୈଶବ ବା ବାଲ୍ୟାବସ୍ଥା, କୈଶୋରାବସ୍ଥା, ଯୌବନାବସ୍ଥା ଓ ବାର୍ଦ୍ଧକ୍ୟ ବା ଜରାବସ୍ଥା । ଶୈଶବ ବା ବାଲ୍ୟାବସ୍ଥାରେ ଯଦି ମୃତ୍ୟୁ ଘଟେ ଶୋକକୁ ଏଡ଼ାଇଦେଇ ହୁଏ । ସାନ୍ତ୍ୱନା ମିଳେ ଯେ, ଆସିଥିଲା ଓ ଚାଲିଗଲା । ପିତାମାତାଙ୍କର ସେ ଯଦି ଗୋଟିଏ ସନ୍ତାନ ହୋଇଥାଏ, ତେବେ ଶୋକର ମାତ୍ରା ଅଧିକ ହୁଏ । ସେହିପରି ବାର୍ଦ୍ଧକ୍ୟ ବା ଜରାବସ୍ଥାରେ ମୃତ୍ୟୁ ହେଲେ ସ୍ୱାଭାବିକ ମୃତ୍ୟୁ ହେତୁ ଶୋକର ପରିମାଣକୁ ଲାଘବ କରିହୁଏ । କିନ୍ତୁ ଯୌବନାବସ୍ଥାରେ ମୃତ୍ୟୁ ଖୁବ୍ ଯନ୍ତ୍ରଣାଦାୟକ, ବିଶେଷତଃ ପରିବାର, ପରିଜନ, ବୃଦ୍ଧ ପିତାମାତା ଓ ନିର୍ଭରଶୀଳ ସନ୍ତାନସନ୍ତତିଙ୍କ ପାଇଁ । କାରଣ ବୃଦ୍ଧ ପିତାମାତା ଓ ପରିବାରର ସଦସ୍ୟମାନେ ମୃତବ୍ୟକ୍ତିଙ୍କୁ ଭରସା କରିଥାନ୍ତି । ଶିଶୁ ଛେଉଣ୍ଡ ହୋଇ ମୃତ୍ୟୁଜନିତ ଶୋକକୁ ବହୁଦିନ ପର୍ଯ୍ୟନ୍ତ ପାସୋରିପାରନ୍ତିନାହିଁ ।

ସେହିପରି ଏକ ଶୋକାକୁଳ ଅବସ୍ଥାର ଉପଲବ୍ଧି ହେଲା ଶ୍ରଦ୍ଧେୟା ଶ୍ରୀମତୀ ନୀହାରିକା ମହାନ୍ତି (ଇଲା)ର ଅପରିଣତ ବୟସରେ ମୃତ୍ୟୁ ଯୋଗୁଁ । ଯେତେବେଳେ ସେ ଥିଲା ରୋଜଗାରକ୍ଷମ ଏବଂ ପିତାମାତା, ଶାଶୁଶ୍ୱଶୁର, ପରିବାରର ସଦସ୍ୟମାନଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ବିଶେଷ ଯତ୍ନଶୀଳା ତଥା ଶିଶୁମାନଙ୍କୁ ଗଢ଼ିତୋଳୁଥିଲା, ଠିକ୍ ସେତିକିବେଳେ ତା'ର ମୃତ୍ୟୁ ଘଟିଲା ।

ହୋମଯଜ୍ଞ, ପୂଜାପାଠ ଆଦିରେ ସର୍ବନିୟନ୍ତା ପରମେଶ୍ୱରଙ୍କୁ ପ୍ରାର୍ଥନା କରାଯାଏ–ଅକାଳମୃତ୍ୟୁ ହରଣ ସର୍ବବ୍ୟାଧି ନିବାରଣ । ସେ କ'ଣ ପୂଜାପାଠ କରୁନଥିଲା ? ପରମାତ୍ମା ପରମେଶ୍ୱରଙ୍କୁ ସକାଳ, ସନ୍ଧ୍ୟାରେ ପୂଜା ତ କରୁଥିଲା । କିନ୍ତୁ ଅକାଳମୃତ୍ୟୁକୁ କ'ଣ ହରଣ କରାଯାଇପାରିଲା କି ? ଈଶ୍ୱରଙ୍କ ଇଚ୍ଛା ଯାହା, ତା' ତ ପୂରଣ ହେଲା । କେବଳ ଏଭଳି ମୃତ୍ୟୁକୁ ମୁକାବିଲା କରିବାର ଧୈର୍ଯ୍ୟ ତା'ର ପିତାମାତା, ସ୍ୱାମୀ, ଶ୍ୱଶୁର, ସନ୍ତାନସନ୍ତତି, ପରିବାରର ସଦସ୍ୟମାନଙ୍କର ରହୁନାହିଁ । କିପରି ବା ସାନ୍ତ୍ୱନା ଏଥିପାଇଁ ଦିଆଯାଇପାରେ ? ବିଶେଷତଃ ତା'ର ୧୨ ଓ ୮ ବର୍ଷର ଦୁଇଟି ସନ୍ତାନଙ୍କ ଲାଳନପାଳନ ଚିନ୍ତା ହିଁ ବିଶେଷ ଦୁଃଖଦାୟକ । ମା'ପରି କେହି ହେଲେ ବି ଶିଶୁମାନଙ୍କୁ ସୁଖ ଦେଇପାରିବେ ଓ ମା'ର ସ୍ଥାନ ପୂରଣ କରିପାରିବେ କି ?

କୃଷ୍ଣପକ୍ଷ ସନ୍ଧ୍ୟାରେ ଆକାଶରେ ଯଦି ବାଦଲ ନଥାଏ, ନକ୍ଷତ୍ରପୁଞ୍ଜ ବିଛାଡ଼ି ହୋଇପଡ଼ିଥାନ୍ତି ନୀଳ ଆକାଶରେ । ଏହି ନକ୍ଷତ୍ରମାନେ କେଉଁଠି ଥା'ନ୍ତି ଓ ଏମାନେ କିଏ– ସ୍ୱତଃ ଜିଜ୍ଞାସା ଉଠେ ଶିଶୁମାନଙ୍କ ମନରେ । ସେମାନେ ଚନ୍ଦ୍ରକୁ ଦେଖି ଯେପରି ଉଲ୍ଲସିତ ହୋଇଉଠନ୍ତି, ନକ୍ଷତ୍ରପୁଞ୍ଜକୁ ଦେଖି ସେହିପରି ପ୍ରଶ୍ନ କରିଥାନ୍ତି । ଅବୋଧ ଶିଶୁମାନଙ୍କୁ କିପରି ବା ବୁଝାଯାଇପାରେ ଜ୍ୟୋତିର୍ବିଜ୍ଞାନକୁ ? ଏଣୁ କୋମଳମତି ଶିଶୁମାନଙ୍କୁ ସେମାନଙ୍କ ମା'ମାନେ ବୁଝାଇଦିଅନ୍ତି ଯେ, ମରିଗଲା ପରେ ମଣିଷ ନକ୍ଷତ୍ର ହୋଇ ଆକାଶରେ ପ୍ରକଟିତ ହୁଏ ।

ସେହିପରି କୃଷ୍ଣପକ୍ଷର କୌଣସି ଏକ ସନ୍ଧ୍ୟାରେ ଦୁଇବର୍ଷର ଶିଶୁ ଶେଫାଳି ତା'ର ଜେଜେଙ୍କୁ ଜିଜ୍ଞାସା କରିଥିଲା, "ଜେଜେ, ମୋ ବଡ଼ମାମା କ'ଣ ଏହି ନକ୍ଷତ୍ରମାନଙ୍କ ମଧ୍ୟରେ ଅଛନ୍ତି ? ସେ କ'ଣ ଆଉ ଫେରିବେନାହିଁ ? ଲିଙ୍କନ୍ ଭାଇ ଓ ବାପୁ ଭାଇ (ନୀହାରିକାର ଦୁଇପୁଅ)ଙ୍କର ମାମା କିଏ ହେବ ?" ଏପରି ପ୍ରଶ୍ନରେ ମନରେ କିପରି କୋହ ଜାତ ହୁଏ, ତା' ଅନୁଭବୀ କେବଳ ବୁଝେ । ସଂକ୍ଷେପରେ ତାକୁ ଜେଜେ ବୁଝାଉଥିଲେ, "ବଡ଼ମାମା ନକ୍ଷତ୍ର ହୋଇ ରହିଛନ୍ତି ।

ଲୁସି ମାମା, ଅଳକା ମାମା ଓ ତୋ' ମାମା କ'ଣ ଲିଙ୍କନ୍ ଭାଇ ଓ ବାପୁ ଭାଇଙ୍କ ମାମା ହୋଇପାରିବେନାହିଁ ।"

ଏହି ଅବୋଧ ୮ ଓ ୧୨ ବର୍ଷର ବାଳକଦ୍ୱୟଙ୍କ ପାଇଁ ମାତୃସ୍ନେହର ଅଭାବକୁ କ'ଣ କେହି ହେଲେ ପୂରଣ କରିପାରିବ ନା ଶ୍ରଦ୍ଧେୟ ନାରାୟଣ (ମଣ୍ଟୁ)ର ମାନସିକ ଯନ୍ତ୍ରଣାକୁ କେହି ଦୂର କରିପାରିବ ? ନୀହାରିକା (ଇଲା)ର ଅକାଳ-ମୃତ୍ୟୁ-ଜନିତ ଶୋକ ତାଁ'ର ପିତାମାତା, ଶାଶୁଶ୍ୱଶୁର ଓ ପରିବାରର ସଦସ୍ୟମାନଙ୍କ ମନରୁ ଶୀଘ୍ର ଅପସୃତ ହେଉ । ସର୍ବନିୟନ୍ତା ଈଶ୍ୱର ସ୍ୱର୍ଗତ ଆତ୍ମାକୁ ଶାନ୍ତି ଦିଅନ୍ତୁ– ଏହା ହିଁ ତାଙ୍କଠାରେ ଆମମାନଙ୍କର ପ୍ରାର୍ଥନା ।

*ପ୍ଲଟ୍ ନମ୍ବର-୩୬୪, ୟୁନିଟ୍-୪,*
*ଶାସ୍ତ୍ରୀ ନଗର, ଭୁବନେଶ୍ୱର*





# ଅଶ୍ରୁଳ ଶ୍ରଦ୍ଧାଞ୍ଜଳି : ଯେଉଁ ଦୁଃଖ ଭୁଲି ହୁଏନାହିଁ

*ଶ୍ରୀ ଯୋଗେନ୍ଦ୍ର କୁମାର ମହାନ୍ତି*

ମଣିଷର ଜୀବନ ତ ଦୁଃଖସୁଖର ଆଧାର । କିନ୍ତୁ ସ୍ମୃତିକୋଷ ସବୁଗୁଡ଼ିକୁ ଧରି ରଖିପାରେନାହିଁ । କେତେକ ଦାରୁଣ ଦୁଃଖ ଆଜୀବନ ଭୁଲି ହୁଏନାହିଁ । ଏହା ମଧ୍ୟ ସେହିପରି ଏକ ଯନ୍ତ୍ରଣାଜଡ଼ିତ, କଠୋର ସତ୍ୟ ନିହିତ, ଦାରୁଣ ଦୁଃଖର ମର୍ମସ୍ପର୍ଶୀ କାହାଣୀ ।

ସମ୍ବାଦପତ୍ରରେ ସେହି ଦୁଃସମ୍ବାଦ ଉପରେ ଆଖି ପଡ଼ିଲା । ବିସ୍ମୟ ଓ ଦୁଃଖରେ ଅଭିଭୂତ ହୋଇପଡ଼ିଲି । ହଠାତ୍ ସମ୍ବାଦଟିକୁ ବିଶ୍ୱାସ କରିପାରିଲିନାହିଁ । କିନ୍ତୁ ସତ୍ୟ କଠୋର ହେଲେ ମଧ୍ୟ ତାକୁ ଅସ୍ୱୀକାର କରିବାର ଶକ୍ତି କାହାରି ନାହିଁ; ଅଧ୍ୟାପକ ଶ୍ରୀ ନାରାୟଣ ମହାନ୍ତିଙ୍କର ପତ୍ନୀବିୟୋଗ... । ଏ ମୃତ୍ୟୁ ଅବାଞ୍ଛିତ, ଅପ୍ରତ୍ୟାଶିତ ଓ ଅସମୟାଗତ । ସମ୍ବାଦଟି ପଢ଼ିବା ମାତ୍ରେ ମନେହେଲା ମହାମୃତ୍ୟୁର ତାମସୀ ଛାୟା ଯେପରି ସଂସାରକୁ ଗ୍ରାସ କରିଯାଇଛି । ମୋ ସମ୍ମୁଖରେ ସମୟ ସ୍ଥିର ହୋଇଗଲା ।

ଶ୍ରୀ ନାରାୟଣ ମହାନ୍ତି ମୋର ଅତି ପ୍ରିୟ ଓ ଅନ୍ତରଙ୍ଗ ବନ୍ଧୁ । ସେ ଜଣେ ଆଦର୍ଶ ଅଧ୍ୟାପକ, ଦର୍ଶନଶାସ୍ତ୍ରବିତ୍, ସଂଗଠକ, ସମାଜସେବୀ, ସାହିତ୍ୟ ଓ ସଂସ୍କୃତିର ବାହକ । ମିଷ୍ଟଭାଷୀ ଏହି ସରଳ, ଉଦାର ଯୁବକଙ୍କର ମୁହଁରେ ଲାଗିରହିଥାଏ ଅମଉଳା ହସ । ଦୁହେଁ ବହୁଦିନ ଧରି କିଶୋରନଗର 'ନୀଳଚକ୍ର' ଶାଖାରେ କର୍ଯ୍ୟରତ ଥିଲୁ । ମୁଁ ଥିଲି ସଭାପତି ଆଉ ସେ ସଂଗଠନ ସଂପାଦକ ଥିଲେ । ଜଗନ୍ନାଥ ସଂସ୍କୃତିର ବିକାଶ ଓ ପ୍ରସାର ଦିଗରେ ତାଙ୍କର ନିଷ୍ଠାପର ଉଦ୍ୟମକୁ ମୁଁ କେବେହେଲେ ଭୁଲିପାରିବିନାହିଁ । ସେ ଏକ ଅଭିଜାତ, ସମ୍ପନ୍ନ ପରିବାରର ସନ୍ତାନ । ପିତା ଗୋପାଳ ବାବୁ ଏ ଅଞ୍ଚଳର ଜଣେ ବିଶିଷ୍ଟ ଭଦ୍ରବ୍ୟକ୍ତି ।

ନାରାୟଣ ବାବୁ କଟକ ଜିଲ୍ଲାର କିଶୋରନଗର ଥାନା ଅନ୍ତର୍ଗତ ବୋଧପୁର ଗ୍ରାମର ଏକ ଅଭିଜାତ, ସୁସଂସ୍କୃତ ପରିବାରର ସୁକନ୍ୟା ସ୍ୱର୍ଗତା ନୀହାରିକା ଦାସଙ୍କୁ ବିବାହ କରିଥିଲେ । ନୀହାରିକାଙ୍କର ପିତା ଶ୍ରୀ ରାଜକିଶୋର ଦାସ ଜଣେ ଗଣ୍ୟମାନ୍ୟ

ଆଦର୍ଶସ୍ଥାନୀୟ ବ୍ୟକ୍ତି । ନୀହାରିକା ୧୯୫୫ ମସିହା ନଭେମ୍ବର ମାସ ୧୯ ତାରିଖରେ ଏହି ପରିବାରର ପରିବେଶକୁ ଆଲୋକିତ କରି ଜନ୍ମଗ୍ରହଣ କଲେ । ପିତାଙ୍କର ନିର୍ମଳ, ତ୍ରୁଟିହୀନ ଚରିତ୍ରର ଆଦର୍ଶଦ୍ୱାରା ସେ ବାଲ୍ୟକାଳରୁ ପ୍ରଭାବିତ ହୋଇଥିଲେ । ନୀହାରିକାଙ୍କର ମାମୁ ଓଡ଼ିଶା ରାଜ୍ୟ ଅନଗ୍ରସର ଜାତି ଆୟୋଗର ଅଧ୍ୟକ୍ଷ ତଥା ଓଡ଼ିଶା ହାଇକୋର୍ଟର ପ୍ରାକ୍ତନ ବିଚାରପତି ମାନ୍ୟବର ଶ୍ରୀ ପ୍ରଫୁଲ୍ଲ କିଶୋର ମହାନ୍ତିଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ ଗଠନରେ ଯଥେଷ୍ଟ ସହାୟକ ହୋଇଥିଲା ।

କଥାରେ ଅଛି, ତୁଳସୀ ଦୁଇପତ୍ରରୁ ବାସେ । ସେହିପରି ନୀହାରିକା ବାଲ୍ୟକାଳରୁ ତାଙ୍କର ଅମଳିନ ପ୍ରତିଭା ଓ ପବିତ୍ର ଚରିତ୍ରର ପରିଚୟ ଦେଇଥିଲେ । ସେ ନାନପୁରସ୍ଥିତ ସାଧୁ ଚରଣ ବିଦ୍ୟାପୀଠରୁ ୧୯୭୧ ମସିହାରେ ମାଟ୍ରିକ୍ ପରୀକ୍ଷାରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ଜଗତ୍‌ସିଂହପୁରର ଏସ୍.ଭି.ଏମ୍. କଲେଜରୁ ୧୯୭୩ ମସିହାରେ ପ୍ରଥମ ବର୍ଷ ଡିଗ୍ରୀ (ବିଜ୍ଞାନ) ପରୀକ୍ଷାରେ ସମ୍ମାନର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ ।

ଛାତ୍ରୀ ଥିବା ଅବସ୍ଥାରେ ସେ ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ କାର୍ଯ୍ୟରେ ଅଂଶଗ୍ରହଣ କରି ଯଥେଷ୍ଟ ସୁନାମ ଅର୍ଜନ କରିଥିଲେ । କୌଣସି ଛାତ୍ରଛାତ୍ରୀଙ୍କର ଅଭାବଅସୁବିଧା ଦୂର କରିବା ପାଇଁ ସେ ନିଃସଙ୍କୋଚରେ ଆଗେଇଆସୁଥିଲେ । ସେଥିନିମନ୍ତେ ତାଙ୍କୁ ଯଥେଷ୍ଟ ତ୍ୟାଗ ସ୍ୱୀକାର କରିବାକୁ ପଡୁଥିଲା । ଏଥିପାଇଁ ସେ ଥିଲେ ଛାତ୍ରଛାତ୍ରୀମାନଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ରୀ । ନିଜର ଜୀବନକୁ ସଂକୀର୍ଣ୍ଣ ପରିସର ଭିତରେ ଆବଦ୍ଧ ନରଖି ବିଶ୍ୱଜୀବନ ସ୍ରୋତରେ ଭସାଇଦେବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ୧୯୭୫ ମସିହାରେ ନୀହାରିକା ଦାସ ଏସ୍.ଭି.ଏମ୍. କଲେଜରୁ ବି.ଏ. (ଅନର୍ସ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୧୯୭୭ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. (ଇତିହାସ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେ ୧୯୭୯ ମସିହାରେ ରାଧାନାଥ ଟ୍ରେନିଂ କଲେଜ, କଟକରୁ ବି.ଇଡି. ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇଥିଲେ । ଅଧ୍ୟୟନରେ ନିଷ୍ଠା, ସେବାପରାୟଣ ମନୋଭାବ ଓ ଉତ୍ତମ ଆଚରଣ ହେତୁ ସେ ଛାତ୍ରଛାତ୍ରୀ ତଥା ଶିକ୍ଷକଶିକ୍ଷୟିତ୍ରୀମାନଙ୍କର ସମ୍ମାନ ଓ ଆଦରର ପାତ୍ରୀ ଥିଲେ ।

ଏହିଠାରେ ଅଧ୍ୟୟନ ଶେଷ କରି ନୀହାରିକା ଦାସ କର୍ମମୟ ଜୀବନରେ ପ୍ରବେଶ କଲେ । କଟକ ସିଟି କଲେଜରେ ଇତିହାସ ବିଭାଗର ଅଧ୍ୟାପିକା ରୂପେ ୧୯୭୯ ମସିହାରେ ହିଁ ତାଙ୍କୁ ନିଯୁକ୍ତି ମିଳିଲା । ନିଜର ନିଷ୍କଳଙ୍କ ଚରିତ୍ର, ମଧୁର

ବ୍ୟବହାର, ବିକାଶମୁଖୀ ବ୍ୟକ୍ତିତ୍ୱ ଓ ଗଠନମୂଳକ କାର୍ଯ୍ୟ ପାଇଁ ସେ ସମସ୍ତଙ୍କଠାରୁ ଶ୍ରଦ୍ଧା ଓ ସମ୍ମାନ ଲାଭ କରିଥିଲେ । ଉଚ୍ଚ ଶିକ୍ଷାୟତନଗୁଡ଼ିକରେ ଗୋଷ୍ଠୀକନ୍ଦଳଠାରୁ ଦୂରରେ ରହି କିପରି ସୁଚାରୁରୂପେ ଅଧ୍ୟାପନା କରାଯାଇପାରେ ସେ ତାହା ନିଜ ଜୀବନରେ ପ୍ରମାଣିତ କରିଦେଇ ଯାଇଛନ୍ତି ।

ନିଜର ଉତ୍କୃଷ୍ଟ ଅଧାପନା ପାଇଁ ନୀହାରିକା ଦାସ ଉଚ୍ଚପ୍ରଶଂସିତ ହେଉଥିଲେ । ନିଜକୁ କେବଳ ଅଧାପନା ଭିତରେ ଆବଦ୍ଧ ରଖି ସେ ସନ୍ତୁଷ୍ଟ ରହିପାରିନଥିଲେ । ତାଙ୍କର ଅନୁସନ୍ଧିତ୍ସୁ ବ୍ୟକ୍ତିତ୍ୱ ବିଭିନ୍ନ ବିକାଶମୁଖୀ ଦିଗ ଖୋଜିବୁଲୁଥିଲା । ସେ ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀଙ୍କର ଜୀବନ ଓ ସମୟ ସଂପର୍କରେ ଉତ୍କଳ ବିଶ୍ୱବିଦ୍ୟାଳୟ ଇତିହାସ ବିଭାଗର ପ୍ରାଧାପକ ଡକ୍ଟର ପ୍ରସନ୍ନ କୁମାର ମିଶ୍ରଙ୍କର ତତ୍ତ୍ୱାବଧାନରେ ପିଏଚ୍.ଡି. ପାଇବା ପାଇଁ ଗବେଷଣା କରୁଥିଲେ । ସେ ନବକୃଷ୍ଣ ଚୌଧୁରୀଙ୍କୁ ରାଷ୍ଟ୍ରବାଦୀ ଚିନ୍ତାଧାରାର ଜଣେ ମହାନ୍ ପୁରୁଷ ରୂପେ ଦର୍ଶାଇବା ପାଇଁ ଚେଷ୍ଟା କରୁଥିଲେ । ଏହି ଗବେଷଣାକୁ ମୌଳିକ ରୂପ ଦେବା ପାଇଁ ସେ ଅକ୍ଳାନ୍ତ ପରିଶ୍ରମ କରି ରାଜ୍ୟସାରା ଘୂରିବୁଲିଥିଲେ । କିନ୍ତୁ ବହୁଶ୍ରମ ଅର୍ଜିତ ଏହି ମୂଲ୍ୟବାନ ତଥ୍ୟଗୁଡ଼ିକ ଲୋକଲୋଚନକୁ ଆସିବା ପୂର୍ବରୁ ତାଙ୍କର ଅକାଳ ବିୟୋଗ ଘଟିଥିଲା ।

କେବଳ ଏତିକି ନୁହେଁ, ତାଙ୍କର ସ୍ୱାମୀ ଅଧାପକ ଶ୍ରୀ ନାରାୟଣ ମହାନ୍ତି ଓଡ଼ିଶା ସରକାରୀ କଲେଜ ଶିକ୍ଷକ ସଂଘର ଯୁଗ୍ମ-ସଂପାଦକ ଥିବା ସମୟରେ ସେ ତାଙ୍କୁ ଆଡ୍‌ହକ ଅଧାପକମାନଙ୍କର ଚାକିରି ନିୟମିତ କରିବା ଏବଂ ପରେ ସମ୍ବଲପୁରସ୍ଥ ଗଙ୍ଗାଧର ମେହେର କଲେଜରେ ଦର୍ଶନଶାସ୍ତ୍ରରେ ସ୍ନାତକୋତ୍ତର ଶ୍ରେଣୀ ଖୋଲିବା ତଥା ଅଧାପକମାନଙ୍କୁ ସିନିୟର ସ୍କେଲ୍‌ରେ ଅବସ୍ଥାପିତ କରିବାବେଳେ ଆଡ୍‌ହକ ଚାକିରିକାଳ ଗଣନା କରିବା ଆଦି କାର୍ଯ୍ୟରେ ସକ୍ରିୟ ସହଯୋଗ କରୁଥିଲେ । ରାଷ୍ଟ୍ରବାଦୀ ଚିନ୍ତାଧାରାରେ ବିଶ୍ୱାସ କରୁଥିବା ଅଧାପକମାନଙ୍କୁ ଗୋଟିଏ ଅନୁଷ୍ଠାନ ମାଧ୍ୟମରେ ଏକତ୍ର କରିବା ପାଇଁ ଚାଲିଥିବା ଉଦ୍ୟମରେ ସେ ସକ୍ରିୟ ଭାଗନେଇଥିଲେ । ଏହି ଉଦ୍ୟମର ଫଳ ସ୍ୱରୂପ 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା' ଜନ୍ମ ନେଲା । ଏହାର ଏଗାରଜଣ ପ୍ରତିଷ୍ଠାତା ସଦସ୍ୟଙ୍କ ମଧ୍ୟରେ ଅଧାପିକା ନୀହାରିକା ଦାସ ଥିଲେ ଅନ୍ୟତମ ।

ରୋଗଶଯ୍ୟାରେ ଥାଇ ମଧ୍ୟ ସେ ନିଜର ଶାରୀରିକ କଷ୍ଟକୁ ଭ୍ରୂକ୍ଷେପ ନକରି ଗତ ଡିସେମ୍ବର ମାସ ୧୮ ତାରିଖରେ ହେବାକୁ ଥିବା ପରିଷଦର ଆଞ୍ଚଳିକ ସମ୍ମିଳନୀର ଆୟୋଜନରେ ଭାଗନେଇଥିଲେ । ଓଡ଼ିଶାରୁ ସଂକୀର୍ଣ୍ଣ ଆଞ୍ଚଳିକ ମନୋଭାବ ଦୂର

କରିବା ଦିଗରେ କାର୍ଯ୍ୟ କରୁଥିବା 'ସ୍ୱର୍ଗୀୟ ନିକୁଞ୍ଜ ବିହାରୀ ସିଂହ ସ୍ମୃତି ସଂସଦ' ଓ ଜ୍ଞାନମଣ୍ଡଳର ପ୍ରତିଷ୍ଠାତା ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋଙ୍କ ସ୍ମୃତିରକ୍ଷା ପାଇଁ ଗଠିତ 'ଆଞ୍ଚଳିକ ବିନୋଦ କାନୁନ୍‌ଗୋ ସ୍ମୃତି ସଂସଦ' ଆଦି ଅନୁଷ୍ଠାନର କାର୍ଯ୍ୟକ୍ରମରେ ସେ ନିୟମିତ ସକ୍ରିୟ ଅଂଶଗ୍ରହଣ କରୁଥିଲେ ।

ତାଙ୍କର ସ୍ୱାମୀ ଶ୍ରୀ ନାରାୟଣ ମହାନ୍ତି ଏବେ ସରକାରୀ ମହିଳା କଲେଜ, ଢେଙ୍କାନାଳରେ ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ ଅଛନ୍ତି । ସେ ଜଣେ ବରିଷ୍ଠ ସଂଗଠକ ରୂପେ ବିଦିତ । ଅଧ୍ୟାପିକା ନୀହାରିକା ଦାସଙ୍କର ଜ୍ୟେଷ୍ଠପୁତ୍ର ନୀହାର ରଞ୍ଜନ ମହାନ୍ତି (୧୨ ବର୍ଷ) ସରସ୍ୱତୀ ବିଦ୍ୟା ମନ୍ଦିର (ଆବାସିକ), ଗତିରାଉତ ପାଟଣାରେ ଷଷ୍ଠ ଶ୍ରେଣୀରେ ଅଧ୍ୟୟନ କରୁଛନ୍ତି । କନିଷ୍ଠପୁତ୍ର ନିର୍ଲିପ୍ତ ରଞ୍ଜନ ମହାନ୍ତି (୮ ବର୍ଷ) ସରସ୍ୱତୀ ଶିଶୁ ମନ୍ଦିର, ହରିପୁରରେ ତୃତୀୟ ଶ୍ରେଣୀରେ ଅଧ୍ୟୟନରତ ।

ସିଷ୍ଟମିକ୍ କ୍ଲେରୋସିସ୍ ନାମକ ଏକ ଘାତକ ରୋଗରେ ନୀହାରିକା ଦାସ ହଠାତ୍ ଆକ୍ରାନ୍ତ ହୋଇପଡ଼ିଲେ । ସ୍ୱାମୀ ଓ ବାପା ତାଙ୍କର ପ୍ରାଣରକ୍ଷା ପାଇଁ ଯଥାସାଧ୍ୟ ଉଦ୍ୟମ କରିଥିଲେ । ଲକ୍ଷାଧିକ ଟଙ୍କା ବ୍ୟୟରେ ନୂଆଦିଲ୍ଲୀସ୍ଥିତ ଅଖିଳ ଭାରତୀୟ ଆୟୁର୍ବିଜ୍ଞାନ ସଂସ୍ଥା ଓ ଲକ୍ଷ୍ନୌସ୍ଥିତ ସଞ୍ଜୟ ଗାନ୍ଧୀ ପି.ଜି. ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ୍ ସାଇନ୍‌ସେସ୍‌ରେ ତାଙ୍କର ଚିକିତ୍ସା କରାଗଲା । ଗତ ନଭେମ୍ବର ମାସ ଶେଷ ସପ୍ତାହରେ ଫେରିଆସି ସେ ବୋଧପୁରସ୍ଥିତ ସ୍ୱଗୃହରେ ରହୁଥିଲେ । କିନ୍ତୁ ଡିସେମ୍ବର ମାସ ୧୪ ତାରିଖ ସନ୍ଧ୍ୟାରେ ସମସ୍ତଙ୍କୁ ଶୋକସାଗରରେ ଭସାଇଦେଇ ସେ ସ୍ୱର୍ଗାରୋହଣ କଲେ ।

ଅଧ୍ୟାପିକା ନୀହାରିକା ଦାସ ଏକାଧାରରେ ଆଦର୍ଶ ଆଧ୍ୟାପିକା, ମିଷ୍ଟଭାଷିଣୀ, ପ୍ରିୟଦର୍ଶିନୀ, ସୁଗୃହିଣୀ, ସୁସଂଗଠିକା, ବିଦୁଷୀ, ମହୀୟସୀ ମହିଳା ଥିଲେ । ତାଙ୍କର ମୃତ୍ୟୁ ପ୍ରିୟଜନମାନଙ୍କ ହୃଦୟରେ ଯେଉଁ ଦାରୁଣ ଦୁଃଖର ଛାୟାପାତ କରିଛି, ସେ ଶୋକର ଛାୟାକୁ କୌଣସି ଆଶ୍ୱାସନା ଦୂର କରିପାରିବନାହିଁ ।

ମକର ସଂକ୍ରାନ୍ତି
ତା ୧୪.୦୧.୯୫ରିଖ

*ଗ୍ରାମ- ହୁଲିପୁର*
*ପୋ.ଅ.- କିଶୋର ନଗର*
*ଜିଲ୍ଲା- କଟକ*
*ପିନ୍-୭୫୪୧୩୧*



# ମନେପଡ଼େ

*ଶ୍ରୀମତୀ ନମିତା ପଣ୍ଡା*

୧୯୮୯ ମସିହା ଡିସେମ୍ବର ମାସ ୧୮ ତାରିଖ । ପୂର୍ବନିର୍ଦ୍ଧାରିତ କାର୍ଯ୍ୟସୂଚୀ ଅନୁସାରେ ଅଧ୍ୟାପକ ନାରାୟଣ ମହାନ୍ତି ତାଙ୍କର ଧର୍ମପତ୍ନୀ ଅଧ୍ୟାପିକା ନୀହାରିକା ଦାସଙ୍କ ସହ ଆସି ଯଥାସମୟରେ ଆମ ଘରେ ପହଞ୍ଚିଥିଲେ । ତାଙ୍କର ତାରାଚାନ୍ଦପାଟଣା ଘରଠାରୁ ଆମର ପିଠାପୁର ଘରର ଦୂରତା ବେଶି ନଥିଲା । ସବୁ ଦିନ ପରି ସେଦିନ ମଧ୍ୟ ଅଧ୍ୟାପକ ମହାନ୍ତି ତାଙ୍କ ସାଇକେଲ ଧରି ଘରୁ ବାହାରିଥିଲେ । ସେ ସାଇକେଲ ଗଡ଼ାଇଗଡ଼ାଇ ଏବଂ ପତ୍ନୀ ତାଙ୍କ ସହ ଚାଲିଚାଲି ଆମ ଘରକୁ ଆସିଥିଲେ । ସେମାନେ ପହଞ୍ଚିଲାବେଳକୁ ମୁଁ ଯିବାକୁ ପ୍ରସ୍ତୁତ ହୋଇସାରିଥିଲି । ଆମେ ତିନିଜଣଯାକ ଛକ ପର୍ଯ୍ୟନ୍ତ ଚାଲିଚାଲି ଆସିଥିଲୁ । ସେଠାରୁ ଅଧ୍ୟାପିକା ଦାସ ଓ ମୁଁ ରିକ୍ସା ଧରିଥିଲୁ ଏବଂ ନାରାୟଣ ବାବୁ ରିକ୍ସା ପଛେପଛେ ସାଇକେଲ ଚଳାଇ ଆସିଥିଲେ । ଆମେ ହାଇକୋର୍ଟରେ ପହଞ୍ଚିଲାବେଳକୁ ନାରାୟଣ ବାବୁଙ୍କ ସାନଭାଇ ଆଡ଼ଭୋକେଟ ଦେବଦତ୍ତ ମହାନ୍ତି ଆମକୁ ଅପେକ୍ଷା କରି ରହିଥିଲେ । ସେ ସଙ୍ଗେସଙ୍ଗେ ଆମକୁ ଓଥ୍ କମିଶନରଙ୍କ ପାଖକୁ ନେଇଯାଇଥିଲେ । ସେଠାରେ ମୁଁ ଶପଥପତ୍ର (ଆଫିଡ଼େଭିଟ୍) ପାଠ କରି ତହିଁରେ ସ୍ୱାକ୍ଷର କରିଥିଲି । ଅଧ୍ୟାପିକା ଦାସ ମୋ ପାଖରେ ଛିଡ଼ା ହୋଇଥିଲେ । ଏହା ପରେ ଆମେମାନେ ଘରକୁ ଫେରିଆସିଥିଲୁ ।

ଏକ ଜନସ୍ୱାର୍ଥ ମାମଲା (ପି.ଆଇ.ଏଲ୍.) ଦାଖଲ କରିବା ପାଇଁ ଆଫିଡ଼େଭିଟ୍ କରିବାକୁ ମୁଁ ସେଦିନ ହାଇକୋର୍ଟକୁ ଯାଇଥିଲି । ସମ୍ବଲପୁରର ସୁପ୍ରସିଦ୍ଧ ଶିକ୍ଷାନୁଷ୍ଠାନ ଗଙ୍ଗାଧର ମେହେର କଲେଜରେ ଦର୍ଶନଶାସ୍ତ୍ରରେ ସ୍ନାତକୋତ୍ତର ଶ୍ରେଣୀ ଖୋଲିବା ପାଇଁ ପ୍ରାର୍ଥନା କରି ଏହି ମକଦ୍ଦମା ଦାଏର କରାଯାଇଥିଲା । ଶ୍ରୀ ସୁରେଶ ପୂଜାରୀ, ଶ୍ରୀମତୀ ସୈରିନ୍ଧ୍ରୀ ନାୟକ, କୁମାରୀ ପ୍ରମିଳା ବହିଦାର, ଶ୍ରୀ ଜଗଦୀଶ ପଣ୍ଡା ଓ ମୁଁ ମାମଲା ଦାଖଲ କରିଥିଲୁ । ଆମ ପକ୍ଷରୁ ଆଡ଼ଭୋକେଟ ଅଶୋକ ମହାନ୍ତି, ଶିଶିର ଦାସ ଓ ଦେବଦତ୍ତ ମହାନ୍ତି

ଲଢୁଥିଲେ । ମାନ୍ୟବର ହାଇକୋର୍ଟ ଛାତ୍ରମାନଙ୍କ ତରଫରୁ ଦାଖଲ ହୋଇଥିବା ଅନୁରୂପ ମକଦ୍ଦମା ସହ ଏହାର ଏକତ୍ର ଶୁଣାଣି କରିଥିଲେ । ୧୯୯୦ ଅଗଷ୍ଟ ୩ ତାରିଖରେ ହାଇକୋର୍ଟ ଏକ ସପ୍ତାହ ମଧ୍ୟରେ ଚୂଡ଼ାନ୍ତ ନିଷ୍ପତ୍ତି ନେବାକୁ ରାଜ୍ୟ ସରକାରଙ୍କୁ ନିର୍ଦ୍ଦେଶ ଦେଇଥିଲେ । ତତ୍‌କାଳୀନ ଶିକ୍ଷା ଓ ଯୁବସେବା ବିଭାଗର ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝି ଛାତ୍ର ଓ ଅଭିଭାବକମାନଙ୍କର ଦାବି ତଥା ମାନ୍ୟବର ହାଇକୋର୍ଟଙ୍କ ଆଦେଶକୁ ଗମ୍ଭୀରତାର ସହ ନେଇଥିଲେ । ସୌଭାଗ୍ୟର କଥା, ଶେଷରେ ରାଜ୍ୟ ସରକାରଙ୍କ ନିଷ୍ପତ୍ତି ଅନୁସାରେ ମେହେର କଲେଜରେ ୧୯୯୦-୯୧ ଶିକ୍ଷାବର୍ଷରୁ ଦର୍ଶନଶାସ୍ତ୍ରରେ ଏମ୍.ଏ. ଶ୍ରେଣୀ ଖୋଲିଥିଲା ।

ସେପ୍ଟେମ୍ବର ୧୧ ତାରିଖରେ ଅଧ୍ୟାପକ ମହାନ୍ତି ପତ୍ନୀ ଅଧ୍ୟାପିକା ଦାସଙ୍କ ସହ ଆମ ଘରକୁ ଆସି ମୋତେ ବଧାଇ ଜଣାଇଥିଲେ । ତାଙ୍କର ସୌଜନ୍ୟ ବା ଶିଷ୍ଟତାର ମୁଁ ସେଦିନ ଭୂୟସୀ ପ୍ରଶଂସା କରିଥିଲି । ପ୍ରକୃତପକ୍ଷେ, ଦର୍ଶନ ଅଧ୍ୟାପକ ଶ୍ରୀ ମହାନ୍ତି ହିଁ ମେହେର କଲେଜରେ ଦର୍ଶନଶାସ୍ତ୍ରରେ ସ୍ନାତକୋତ୍ତର ଶ୍ରେଣୀ ଖୋଲିବା ପାଇଁ ଚାଲିଥିବା ଅଭିଯାନର ନେତୃତ୍ୱ ନେଇ ତାହାକୁ ପରିଚାଳନା କରୁଥିଲେ । ଦର୍ଶନଶିକ୍ଷାର ପ୍ରସାର ହିଁ ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । ଅଧ୍ୟାପିକା ନୀହାରିକା ଦାସ ସ୍ୱାମୀଙ୍କ ସହ ଯେକୌଣସି କାର୍ଯ୍ୟରେ କାୟା ସହ ଛାୟା ପରି ରହୁଥିଲେ । ବାସ୍ତବରେ ଏପରି ଏକମନ ଏକପ୍ରାଣ ହୋଇ କାର୍ଯ୍ୟ କରୁଥିବା ପତିପତ୍ନୀ ମୁଁ କ୍ୱଚିତ୍ ଦେଖିଛି ।

ନୀହାରିକା ଦେବୀ ରାଜାବଗିଚାସ୍ଥିତ କଟକ ସିଟି କଲେଜରେ ଇତିହାସ ବିଭାଗର ଅଧ୍ୟାପିକା ତଥା ମୁଖ୍ୟ ଥିଲେ । ସେ ରାଜ୍ୟ ସରକାରଙ୍କଠାରୁ ପୂର୍ଣ୍ଣ ଅନୁଦାନ ପାଉଥିଲେ । କର୍ତ୍ତବ୍ୟନିଷ୍ଠା ତଥା ଉତ୍ତମ ବ୍ୟବହାର ଯୋଗୁଁ ସେ ଛାତ୍ର, ଅଧ୍ୟାପକ ଓ ଅଭିଭାବକଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହେଉଥିଲେ । ସେ ପିଏଚ୍.ଡ଼ି. ଡିଗ୍ରୀ ପାଇବା ପାଇଁ ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀଙ୍କର ଜୀବନ ଓ ସମୟ ସମ୍ପର୍କରେ ଗବେଷଣା କରୁଥିଲେ । ସର୍ବୋପରି ସେ ଜଣେ ନିପୁଣା ଗୃହିଣୀ ଥିଲେ । ଅତିଥିସତ୍କାର ତାଙ୍କ ଗାର୍ହସ୍ଥ୍ୟ ଜୀବନର ଏକ ବିଶେଷ ଅଙ୍ଗ ଥିଲା । ନୀହାରିକା ଦେବୀ ଏକ ପ୍ରତିଷ୍ଠିତ ପରିବାରରୁ ଆସିଥିଲେ । ଓଡ଼ିଶା ହାଇକୋର୍ଟର ପୂର୍ବତନ କାର୍ଯ୍ୟକାରୀ ମୁଖ୍ୟ ବିଚାରପତି ସ୍ୱର୍ଗତ ପ୍ରଫୁଲ୍ଲ କିଶୋର ମହାନ୍ତି ତାଙ୍କର ମାମୁ ଥିଲେ ।

ଅଧ୍ୟାପିକା ନୀହାରିକା ଦାସ ସିଷ୍ଟମିକ୍ କ୍ଲେରୋସିସ୍ ନାମକ ଏକ ଘାତକ ରୋଗରେ ଆକ୍ରାନ୍ତ ହୋଇପଡ଼ିଥିଲେ । ପ୍ରଥମେ କଟକସ୍ଥିତ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ଓ ହାସପାତାଳ, ତା'ପରେ ନୂଆଦିଲ୍ଲୀସ୍ଥିତ ଅଖିଳ ଭାରତୀୟ ଆୟୁର୍ବିଜ୍ଞାନ ସଂସ୍ଥା ଓ ଶେଷରେ ଲକ୍ଷ୍ନୌସ୍ଥିତ ସଞ୍ଜୟ ଗାନ୍ଧୀ ପି.ଜି. ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍‌ସେସ୍‌ରେ ତାଙ୍କର ଚିକିତ୍ସା କରାଯାଇଥିଲା । କିନ୍ତୁ ୧୯୯୪ ଡିସେମ୍ବର ୧୪ ତାରିଖରେ ମାତ୍ର ୩୯ ବର୍ଷ ବୟସରେ ଆମ ସମସ୍ତଙ୍କୁ ଶୋକସାଗରରେ ଭସାଇଦେଇ ସେ ସ୍ୱର୍ଗାରୋହଣ କରିଥିଲେ । ତାଙ୍କର ମୃତ୍ୟୁ ଆଜିକୁ ୨୦ ବର୍ଷ ହୋଇଥିଲେ ବି ଆମମାନଙ୍କ ସ୍ମୃତିପଟରୁ ସେ ଲିଭିନାହାନ୍ତି କି ଲିଭିବେନାହିଁ ।

*ପୂର୍ବତନ ଅଧ୍ୟକ୍ଷା*
*ରାଜ୍ୟ ମହିଳା କମିଶନ*





# To A Candle
# That Burnt For Every One's Delight

*Prof. Sailendra Narayan Tripathy*

*"In small proportions we just beauties see*
*In short measures life may perfect be"*

*- Ben Jonson*

You were a bud who never opened
You were a rainbow who spread
across our sky
You were like a dewdrop
who evaporated before the sunlight came
You were here to spread God's message of joy
You were a cuckoo who,
brought suggestions of spring

You brought happiness to the world
You bled for the joy of others
You promised a better world

And you vanished before
the night was lifted
For most of us your kindness meant so much
But today the life is dowdy
Our only strength is your care,
attention and feeling
The memories you have given to us
would linger in our battered heart
forever and ever

Wherever you are
Dear Sister !
Smile through Life's hidden terror

*Department of English*
*Khallikota College*
*Berhampur*
*Dist- Ganjam*
*PIN – 760 001*



# Niharika- As I Knew Her

*Prof. Srinibas Rath*

That was 14 December, 1994. At about 10.30 P.M. I received a telephonic message from Kamal (Kamal Mohanty, Lecturer in History of my college). It was a bolt from the blue. Niharika was no more. It was unbelievable. Nobody in the college was prepared to accept it. But the reality put everybody into their senses. Niharika has gone since a year but left her memories behind. This is an humble attempt to recollect her memories.

My association with Niharika was for a very short period. I knew her before my joining this college in October, 1992. The first occasion when I met her was during the Central Valuation in May, 1992 at S.B. Women's College. She was an assistant examiner on my table. I was very much impressed with her sobriety and sincerity.

Later on when I joined Cuttack City College, I found her a teacher with perfection. Her attitude towards her students and colleagues was very informal and cordial. I have never heard her talking ill of or complaining against any of her associates. She believed in respecting her seniors and loving all those who were younger to her. She never inflicted pain on anybody at a personal level. Because of her good behaviour she was liked by all, both students and the staff. In spite of her illness, she never missed any of her classes. She used to come for the class punctually and left the college immediately after her classes were over. A committed teacher, a responsible housewife and a loving mother, she was a personality with all perfections. I have no words to console Narayan Babu and his two children. May God bless them.

May Her Soul Rest in Peace.

*Cuttack City College*
*Rajabagicha*
*Cuttack – 753009*



# The Sorrowful Death of a Loving Mother

*Prof. Akshaya Kumar Dash*

Death is a mystery and a must. We can't challenge it. It is beyond human control. Long life is desired by all. Nobody likes to die young. A successful life is measured by noble deeds and not by years. Even then premature death is too painful to tolerate. Its shining example is late Mrs. Niharika Das.

It was the 15th December 1994, a Thursday. I was doing invigilation in the college test examination. I heard that Mr. Narayan Mohanty had telephoned me. Then what I heard from one of our local teachers was too painful to describe in words. I could not believe my ears. It was the death news of Mrs. Niharika Das. I was completely taken aback. Because she had just returned from Delhi and Lucknow after successful treatment. One of my students from the Mallipur village informed that she had passed away the previous night, i.e. on the 14.12.94. I immediately set out for Mallipur on bike. I could not find words to console Narayan Sir and his family members. Tears rolled down from their eyes like an ever-flowing stream. Really, this death was uncommon and quite heart-breaking.

We are all born in such a world where everything is transient. The human heart is a temple of the living God. Niharika Madam was not only the H.O.D. of History of Cuttack City College, Rajabagicha, Cuttack, she was a messenger of truth, peace and tolerance. She was not at all worried about her ailment. She was always cheerful and amiable. She was under treatment of Dr. Radhanath Rath, specialist in medicine. Sometimes I had to bring an advance ticket for her. She was suffering from Systemic Sclerosis. Yet she was active till the last moment of her life. She was the eldest and the only daughter of her parents. I had gone twice to Bodhapur accompanied by Narayan Sir and was deeply impressed by their hospitality. Niharika Madam was maintaining a proper balance between her job and her domestic life. One day, while teaching her two sons at home, she told me, "Akshaya ! your sir is always busy with his association work. He is least concerned about family affairs..."

I had seen her for the last time at the railway station when she was going to New Delhi accompanied by her father, brother and

Narayan Sir for treatment. All other family members were present at the station. Tapan Sir and many other well-wishers were also present there. I saluted her and she smiled in her usual manner. Little did I know then that it was my last meeting with her. Her death news was published in almost all the newspapers of our State. When I distributed the cards for her *Ekadashaha* in Cuttack, I received sympathetic words at each and every body's door. Her feminine virtues were admirable and scarcely noticed in the demoralized world of today.

Mrs. Nihariak Das was an ideal teacher. All the members of staff and students liked her. She was one of the founding members of teaching staff of Cuttack City College. Her sudden death has affected the whole college. This year when I was evaluating C.H.S.E. English papers in S.B. Women's College, Cuttack, Runi Madam of Cuttack City College was also an assistant examiner on our table. We both had an occasion to discuss her and she said, "Niharika Apa was very sincere in duty and careful about others, but she neglected herself". Runi Madam became a bit emotional and said, "We won't allow any outside Lecturer to join in her post". She was a woman of childlike simplicity, student-like obedience and mother-like affection. Even the servants in their house praised her for her generosity. I have seen her kneeling down to salute Dr. Dhaneswar Mohapatra, an eminent educationist of our State, at her residence. She was quite liberal while evaluating examination papers. She also has registered for Ph.D. degree. But like an unfortunate bud she was nipped by providence rather prematurely. In different critical situations of my life, I have consulated with her and received assurance from her. Her life is a lesson for me. Her absence has left a vacuum in my life.

Niharika Madam, Lecturer in History as she was, has gone into the pages of History. May God bless her and may her soul ascend heaven. I pray to God for the prosperity of her two sons, Bapu and Lincoln. Though she is dead, she will forever live in the hearts of all her colleagues and students. We will cherish her memory with love and reverence.

*Kishore Nagar College*
*Kishore Nagar*
*Dist- Cuttack*
*PIN – 754131*



# The joys and sorrows of living in a joint family

*Late Niharika Das*

The Latin word 'Familia' from which the word family is derived means a household and is truly applicable to a joint family in India. Living together under the same roof with grandparents, their sons and grandsons with their wives and children is indeed a unique experience for the woman living in Indian society.

In such a family the earnings of every adult member go into a common fund from which all expenses are met. The grandfather has the final say in all matters relating to the family while his wife is the lady of the house. There is a common kitchen and there is no question of even newly married couples having separate arrangements for either cooking their food or eating by themselves. There is total and genuine respect for all elders and firm discipline is maintained.

Joint families like the autonomous village communities and the caste system have been a distinctive feature of the Indian social structure for centuries. Since all the members have joint sharers in the common property of the family, inheritance is fixed by survivorship and the principle of primogeniture with the eldest son succeeding to the property of his father on the latter's demise. Women seldom enjoy equality of status. In fact, they are all too preoccupied with domestic duties and chores to think of rights and privileges.

However, the joint family system has been rapidly breaking up in India as a result of increasing individualistic and independent attitudes of grown-up children. Of course, in a joint family there is little scope for individual creativity or enterprise which may well be one of the chief reasons for its disintegration. It is characterized by too much of suppression, implicit and blind obedience to the elder members' dictates even when these commands are irrational and discriminatory in nature and impact. A joint family allows for no dissent or discussion. It is all command on one side and obedience on the other.

In no aspect of life does the joint family allow any kind of individual freedom. Life is silent and rigidly bound by family discipline. The women hardly have any liberty to move out of the house or dress as they please or even establish friendship with other women of their

age group. The caste system imposed further restrictions. Everyone, whether male or female was bound by the customs, traditions and the culture to which the elders were habituated. There is little opportunity for the development of individual personality. Life is dull and boring with no variety which is rightly regarded as the spice of life.

However, there certainly is security, both social and economic, for all the members. No single member has to bother about either food or shelter - problems which cause a great deal of worry to people living separately and entirely on their own limited resources. Even expenditure during illness is met from the common kitty. But this does not always ensure happiness.

In the olden days most married couples had a fairly large number of children, with the naive belief that there would be shelter and food for every additional pair of hands. The fires of the common kitchen would be kept burning all the day through.

Though crowded joint family establishments are badly ventilated and very often old-fashioned and much too congested, yet there seems to have been a certain charm in being a member of such a family. The small, separate homes of couples choosing to live away from their parents often look like 'empty shells' when both husband and wife are away at work.

The traditional joint family system did not allow its women to take up employment elsewhere except on the family's jointly-owned farm or enterprise. But the scenario has changed with the times, with women taking up employment to supplement the family income. In a joint family there is no incentive for the women to supplement either the father's or the husband's income as it would hardly alleviate the family's standards.

Under such a system one has to suffer silently. No voices are raised and no protests ever made. Thus the joint family system stifled individual talent. Therefore, one can safely conclude that though the system was compatible with our agrarian past and may have served the society well, yet it is unsuitable to contemporary socio-economic conditions. Hence, as was inevitable, the system is breaking up under the mounting pressures of modern life and times and wherever it exists, it does so, on borrowed time.

*Nadia Nivas*
*Jhanjiri Mangala*
*Cuttack – 753 009*



# ଶେଷ ଚିଠି

ବୋଧପୁର
ତା ।୧୨।୯୪ ରିଖ

ବାପୁନ୍,

ସ୍ନେହ ନେବୁ । ମୋ ଦେହ ଭଲ ଅଛି । ତୁ ବ୍ୟସ୍ତ ହେବୁନି । ତୋ ପରୀକ୍ଷା ସରିଲେ ବାପାଙ୍କୁ କହିବି ଆଣିବେ । ମନଦେଇ ପଢ଼ାପଢ଼ି କରୁଥିବୁ । ମୁଁ ବର୍ତ୍ତମାନ ୩୦ ତାରିଖ ପର୍ଯ୍ୟନ୍ତ ମାମୁଘରେ ଅଛି । ଲିଙ୍କନ୍ ପରୀକ୍ଷା ଦବାକୁ କଟକ ଯାଉଛି । ତୋର କ'ଣ ଦରକାର ବାପାଙ୍କୁ କହିବୁ । ଶୀତ ଦିନ । ବେଶି ଗାଧୋଇବୁ ନାହିଁ । ମଶାରି ପକାଇ ଶୋଇବୁ । ଆଶା କରେ ଭଲରେ ଥିବୁ । ରହିଲି ।

॥ ଇତି ॥
ତୋର
ମା'

(ଏହି ଚିଠିଟି ସ୍ୱର୍ଗୀୟା ଅଧ୍ୟାପିକା ନୀହାରିକା ଦାସ ମୃତ୍ୟୁର ଅଳ୍ପଦିନ ଆଗରୁ ସରସ୍ୱତୀ ବିଦ୍ୟା ମନ୍ଦିର (ଆବାସିକ), ଗତିରାଉତ ପାଟଣାରେ ରହି ୬ଷ୍ଠ ଶ୍ରେଣୀରେ ପଢୁଥିବା ତାଙ୍କର ବଡ଼ପୁଅ ପାଖକୁ ଲେଖିଥିଲେ ।)

# ପରିଶିଷ୍ଟ (୧)

*ସ୍ୱର୍ଗୀୟା ଅଧ୍ୟାପିକା ନୀହାରିକା ଦାସଙ୍କ ମୃତ୍ୟୁ ଖବର ପାଇ ତାଙ୍କର ବାସଭବନ 'ନଦିଆ ନିବାସ' ଏବଂ ତାଙ୍କର ଗ୍ରାମ ମଲ୍ଲୀପୁରକୁ ଆସି ତଥା ତାକ ଯୋଗେ ଶୋକ ପ୍ରକାଶ କରିଥିବା ଅଗଣିତ ଶୁଭାକାଂକ୍ଷୀଙ୍କ ମଧ୍ୟରେ ଥିଲେ–*

(୧) ଡଃ ଅମିୟ କୁମାର ମହାନ୍ତି, ଅଧ୍ୟାପକ, ଇତିହାସ ବିଭାଗ, ସରକାରୀ ବିଜ୍ଞାନ କଲେଜ, ଛତ୍ରପୁର।

(୨) ଶ୍ରୀ ଅମିୟ ପ୍ରସାଦ ସ୍ୱାଇଁ, ସା.- ମୁଗୁରିଆ, ପୋ. ଅ.- ଧାରିବିରି, ଜିଲ୍ଲା-କଟକ ।

(୩) ଡଃ ଅମୂଲ୍ୟ କୁମାର ପଣ୍ଡା, ପ୍ରଫେସର, ପ୍ରାଣୀ ବିଜ୍ଞାନ ବିଭାଗ, ରେଭେନ୍‌ସା କଲେଜ, କଟକ ।

(୪) ଡଃ ଅମୂଲ୍ୟକୃଷ୍ଣ ମିଶ୍ର, ୧୯୦-ଖାରବେଳ ନଗର, ଭୁବନେଶ୍ୱର ।

(୫) ଶ୍ରୀ ଅରୁଣ କୁମାର ବୋଷ, ସା./ପୋ.ଅ.-ଶିର୍ଲୋ ନବଗ୍ରାମ, ଜିଲ୍ଲା-କଟକ ।

(୬) ଶ୍ରୀ ଅଶୋକ କୁମାର ରାୟ, ଅଧ୍ୟାପକ, ଦର୍ଶନ ବିଭାଗ, ରେଭେନ୍‌ସା (ପ୍ରାତଃ) କଲେଜ, କଟକ ।

(୭) ଶ୍ରୀ ଅକ୍ଷୟ କୁମାର ଦାଶ, ଅଧ୍ୟାପକ, ଇଂରାଜୀ ବିଭାଗ, କିଶୋର ନଗର କଲେଜ, କିଶୋର ନଗର, ଜିଲ୍ଲା-କଟକ ।

(୮) ଶ୍ରୀ ଈଶ୍ୱର ଚନ୍ଦ୍ର ସାହାଣୀ, ବରିଷ୍ଠ ରଞ୍ଜନରଶ୍ମି ପ୍ରାଯୁକ୍ତିକ, ରାଷ୍ଟ୍ରୀୟ ପୁନର୍ବାସ ପ୍ରଶିକ୍ଷଣ ଏବଂ ଅନୁସନ୍ଧାନ ସଂସ୍ଥା, ଓଲଟପୁର, ଜିଲ୍ଲା-କଟକ ।

(୯) ଶ୍ରୀ ଏକାଦଶୀଆ ବାରିକ, ଶାନ୍ତି ପଡ଼ା, ବଲାଙ୍ଗୀର ।

(୧୦) ଶ୍ରୀ ଏ.ଜି. ଦଣ୍ଡପାଣି, ସହକାରୀ ପ୍ରଫେସର, ଫିଜିଓଥେରାପି ବିଭାଗ, ରାଷ୍ଟ୍ରୀୟ ପୁନର୍ବାସ ପ୍ରଶିକ୍ଷଣ ଏବଂ ଅନୁସନ୍ଧାନ ସଂସ୍ଥା, ଓଲଟପୁର, ଜିଲ୍ଲା-କଟକ ।

(୧୧) ଜଷ୍ଟିସ୍ କାଳୀପ୍ରସନ୍ନ ଆଚାର୍ଯ୍ୟ, ସା./ପୋ.ଅ.- କାଳିକାପୁର, ଭାୟା-କିଶୋର ନଗର, ଜିଲ୍ଲା-କଟକ ।

(୧୨) ଶ୍ରୀ କାହ୍ନୁ ଚରଣ ସେଠୀ, ଅଧ୍ୟାପକ, ସଂସ୍କୃତ ବିଭାଗ, ପଞ୍ଚାୟତ କଲେଜ, ବରଗଡ଼ ।

(୧୩) ଶ୍ରୀ କାହ୍ନୁ ଚରଣ ସ୍ୱାଇଁ, ଅଧ୍ୟାପକ, ବାଣିଜ୍ୟ ବିଭାଗ, ଢେଙ୍କାନାଳ କଲେଜ, ଢେଙ୍କାନାଳ ।

(୧୪) ଶ୍ରୀ କୁଞ୍ଜ ବିହାରୀ ମହାଲିକ, ଆଖୁଚାଷ ସହାୟକ, ଶକ୍ତି ସୁଗାର୍ସ ଲିମିଟେଡ୍, ଜଗତ୍‌ସିଂହପୁର ।

(୧୫) ଡଃ ଗଣେଶ ପ୍ରସାଦ ଦାସ, ପ୍ରାଧ୍ୟାପକ,ଦର୍ଶନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର ।

(୧୬) ଡଃ ଗୟାଧର ଦାଶ, ଅଧ୍ୟାପକ, ଦର୍ଶନ ବିଭାଗ, ଧରଣୀଧର କଲେଜ, କେନ୍ଦୁଝର ।

(୧୭) ଶ୍ରୀ ଗିରିଜା ପ୍ରସନ୍ନ ଦାସ, ପ୍ରାଧ୍ୟାପକ, ଦର୍ଶନ ବିଭାଗ, ଭଦ୍ରକ କଲେଜ, ଭଦ୍ରକ ।

(୧୮) ଡଃ ଗିରୀଶବାଳା ମହାନ୍ତି, ସଦସ୍ୟା, ଓଡ଼ିଶା ରାଜ୍ୟ କର୍ମଚାରୀ ପ୍ରବରଣ ଆୟୋଗ, କଟକ ।

(୧୯) ଶ୍ରୀ ଗୌର ଗୋପାଳ ଗିରି, ଅଧ୍ୟାପକ, ବାଣିଜ୍ୟ ବିଭାଗ, ରେଭେନ୍‌ସା କଲେଜ, କଟକ ।

(୨୦) ଶ୍ରୀ ଗୌରୀଶଙ୍କର ରଥ, କ୍ରୟବିକ୍ରୟ ଅଧିକାରୀ, ଜଗନ୍ନାଥ ତନ୍ତୁବାୟ ସହଯୋଗୀ ସୂତା କଳ, ନୂଆପାଟଣା, ଜିଲ୍ଲା-କଟକ ।

(୨୧) ଶ୍ରୀ ଜଗନ୍ନାଥ ପ୍ରସାଦ ଚୌଧୁରୀ, ଆଡ଼ଭୋକେଟ, ଓଡ଼ିଶା ହାଇକୋର୍ଟ, କଟକ ।

(୨୨) ଶ୍ରୀ ଜଗବନ୍ଧୁ ଦୋରା, ବରିଷ୍ଠ ସହାୟକ, ରାଷ୍ଟ୍ରୀୟ ପୁନର୍ବାସ ପ୍ରଶିକ୍ଷଣ ଏବଂ ଅନୁସନ୍ଧାନ ସଂସ୍ଥା, ଓଲଟପୁର, ଜିଲ୍ଲା-କଟକ ।

(୨୩) ଶ୍ରୀ ଜୟଚନ୍ଦ୍ର ସାହୁ, ଅଧ୍ୟାପକ, ଗଣିତ ବିଭାଗ, ରାଜେନ୍ଦ୍ର କଲେଜ, ବଲାଙ୍ଗୀର ।

(୨୪) ଶ୍ରୀ ଜ୍ୟୋତିଷ ଚନ୍ଦ୍ର ସାହୁ, 'ଆକାଶ', ଦୋଳମୁଣ୍ଡାଇ, କଟକ ।

(୨୫) ଶ୍ରୀ ତପନକାନ୍ତି ପଟ୍ଟନାୟକ, ଅଧ୍ୟାପକ, ଇଂରାଜୀ ବିଭାଗ, ସରକାରୀ ମହିଳା କଲେଜ, ପୁରୀ ।

(୨୬) ଡଃ ତାରିଣୀ ସେନ୍ ବାରିକ, ଅଧ୍ୟାପକ, ରାଜନୀତି ବିଜ୍ଞାନ ବିଭାଗ, ଏସ୍.ଜି. ମହିଳା କଲେଜ, ରାଉରକେଲା ।

(୨୭) ଶ୍ରୀ ଦୟାନିଧି ପାଢ଼ୀ, ଅଧ୍ୟାପକ, ଇତିହାସ ବିଭାଗ, ଫକୀର ମୋହନ କଲେଜ, ବାଲେଶ୍ୱର ।

(୨୮) ଶ୍ରୀ ଦାମୋଦର ମହାନ୍ତି, ପଲ୍ଲୀ କୁଟୀର, ଝାଞ୍ଜିରୀ ମଙ୍ଗଳା, କଟକ ।

(୨୯) ଶ୍ରୀ ଦିଗମ୍ବର ଦାଶ, ମାନସିଂହ ପାଟଣା, କଟକ ।

(୩୦) ଶ୍ରୀ ଦିନେଶ ପ୍ରସାଦ ପଟ୍ଟନାୟକ, ପ୍ରାଧ୍ୟାପକ, ଇଂରାଜୀ ବିଭାଗ, ରେଭେନ୍‌ସା କଲେଜ, କଟକ ।

(୩୧) ଶ୍ରୀ ଦେବୀ ପ୍ରସାଦ ଦାସ, ଢୋଲ୍ରା (ମଝି ସାହି), କଟକ ।

(୩୨) ଶ୍ରୀ ଦ୍ୱାରିକାନାଥ ନାୟକ, ମହାନଗର ନିଗମ ପାଠାଗାର, ସହିଦ ଭବନ, କଟକ ।

(୩୩) ଶ୍ରୀ ଧନେଶ୍ୱର ସାହୁ, ପ୍ରାଧ୍ୟାପକ, ଦର୍ଶନ ବିଭାଗ, ଏନ୍.ସି. କଲେଜ, ଯାଜପୁର ।

(୩୪) ଡଃ ନଟବର ଶତପଥୀ, ପ୍ରାଧ୍ୟାପକ, ଓଡ଼ିଆ ବିଭାଗ, ରେଭେନ୍‌ସା କଲେଜ, କଟକ ।

(୩୫) ଶ୍ରୀ ନରେନ୍ଦ୍ରନାଥ ପଶୁପାଳକ, ଅଧ୍ୟାପକ, ରସାୟନ ବିଜ୍ଞାନ ବିଭାଗ, ଭଦ୍ରକ କଲେଜ, ଭଦ୍ରକ ।

(୩୬) ଡଃ ନଳିନାକ୍ଷ ପ୍ରସାଦ ଦାଶ, ଅଧ୍ୟାପକ, ଉଦ୍ଭିଦ ବିଜ୍ଞାନ ବିଭାଗ, ଏନ୍.ସି. କଲେଜ, ଯାଜପୁର ।

(୩୭) ଶ୍ରୀ ନିରଞ୍ଜନ ମହାନ୍ତି, ଅଧ୍ୟାପକ, ଦର୍ଶନ ବିଭାଗ, ଖ୍ରୀଷ୍ଟ କଲେଜ, କଟକ ।

(୩୮) ଶ୍ରୀ ନୀଳକଣ୍ଠ ମିଶ୍ର, ଅଧ୍ୟାପକ, ଉଦ୍ଭିଦ ବିଜ୍ଞାନ ବିଭାଗ, ଖଲ୍ଲିକୋଟ କଲେଜ, ବ୍ରହ୍ମପୁର ।

(୩୯) ଶ୍ରୀ ନୃସିଂହ ଚରଣ ସାମଲ, ପ୍ରାଧ୍ୟାପକ, ପଦାର୍ଥ ବିଜ୍ଞାନ ବିଭାଗ, ଖ୍ରୀଷ୍ଟ କଲେଜ, କଟକ ।

(୪୦) ଡଃ ନେତ୍ରାନନ୍ଦ ମଲ୍ଲ, ପ୍ରଫେସର, ଦର୍ଶନ ବିଭାଗ, ଉତ୍ତର-ପୂର୍ବ ପାର୍ବତ୍ୟ ବିଶ୍ୱବିଦ୍ୟାଳୟ, ସିଲଂ, ମେଘାଳୟ ।

(୪୧) ଡଃ ପତିତପାବନ ବାନାର୍ଜୀ, ଅଧ୍ୟାପକ, ସଂସ୍କୃତ ବିଭାଗ, ସରକାରୀ ମହିଳା କଲେଜ, ଢେଙ୍କାନାଳ ।

(୪୨) ଶ୍ରୀ ପର୍ଶୁରାମ ରାୟସିଂହ, ଅଧ୍ୟାପକ, ଶିକ୍ଷା ବିଭାଗ, ରାଧାନାଥ ଉଚ୍ଚତର ଶିକ୍ଷା ଅନୁଧ୍ୟାନ ପ୍ରତିଷ୍ଠାନ, କଟକ ।

(୪୩) ଶ୍ରୀ ପୀତବାସ ନାୟକ, ରାଣୀହାଟ (ମାଳି ସାହି), କଟକ ।

(୪୪) ଶ୍ରୀ ପ୍ରକାଶ ରଞ୍ଜନ ବାରିକ, ଆଡ୍‌ଭୋକେଟ, ଓଡ଼ିଶା ହାଇକୋର୍ଟ, କଟକ ।

(୪୫) ଶ୍ରୀ ପ୍ରଦୀପ୍ତ କୁମାର ମହାନ୍ତି, ଆଡ୍‌ଭୋକେଟ, ଓଡ଼ିଶା ହାଇକୋର୍ଟ, କଟକ ।

(୪୬) ଶ୍ରୀ ପ୍ରଦୀପ୍ତ ରାଉତରାୟ, 'ରାଉତରାୟ ଭବନ', ରାଣୀହାଟ (ଶଗଡ଼ିଆ ସାହି), କଟକ ।
(୪୭) ଶ୍ରୀ ପ୍ରଫୁଲ୍ଲ କୁମାର ମାନସିଂହ, ଅଧ୍ୟାପକ, ଅର୍ଥନୀତି ବିଭାଗ, ଭଦ୍ରକ କଲେଜ, ଭଦ୍ରକ ।
(୪୮) ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର , ଅଧ୍ୟାପକ, ଦର୍ଶନ ବିଭାଗ, ଏସ୍.ସି.ଏସ୍. କଲେଜ, ପୁରୀ ।
(୪୯) ବାବାଜୀ ପ୍ରଭାକର ଦାଶ, ବାସୁଦେବ ମଠ, ନିମାପଡ଼ା, ଜିଲ୍ଲା-ପୁରୀ ।
(୫୦) ଶ୍ରୀ ପ୍ରଭାକର ଦାସ, ଅଧ୍ୟାପକ, ରସାୟନ ବିଜ୍ଞାନ ବିଭାଗ, ଏମ୍.ପି.ସି. କଲେଜ, ବାରିପଦା ।
(୫୧) ଶ୍ରୀ ପ୍ରଭାତ ରଞ୍ଜନ ପରିଡ଼ା, ଅଧ୍ୟାପକ, ଭୂଗୋଳ ବିଭାଗ, ଏସ୍.କେ. ସି. ଜି. କଲେଜ, ପାରଳାଖେମୁଣ୍ଡି ।
(୫୨) ଶ୍ରୀ ପ୍ରଭାସ କୁମାର ସାହୁ, କ୍ୟାସିୟର, ରାଷ୍ଟ୍ରୀୟ ପୁନର୍ବାସ ପ୍ରଶିକ୍ଷଣ ଏବଂ ଅନୁସନ୍ଧାନ ସଂସ୍ଥା, ଓଲଟପୁର, ଜିଲ୍ଲା-କଟକ ।
(୫୩) ଶ୍ରୀ ପ୍ରଭାସ କୁମାର ସିଂହ, ଭଟିଗାଆଁ (ବରପାଲି), ଜିଲ୍ଲା-ବରଗଡ଼ ।
(୫୪) ଶ୍ରୀ ପ୍ରମୋଦ କୁମାର ପଣ୍ଡା, ତହସିଲଦାର, କିଶୋର ନଗର, ଜିଲ୍ଲା-କଟକ ।
(୫୫) ଶ୍ରୀ ପ୍ରଶାନ୍ତ କୁମାର ରାଉତ, ସା.-ରାମଚନ୍ଦ୍ରପୁର, ପୋ.ଅ.-କିଶୋର ନଗର, ଜିଲ୍ଲା-କଟକ ।
(୫୬) ଶ୍ରୀ ପ୍ରଶାନ୍ତ ଦାସ, ୧୦୮୦-ମହାନଦୀ ବିହାର, କଟକ ।
(୫୭) ଶ୍ରୀ ପ୍ରଶାନ୍ତ ମହାନ୍ତି, ମୁଖ୍ୟ ସଂପାଦକ, 'ଟିକି ଦୁନିଆ', କନିକା ରୋଡ଼, କଟକ ।
(୫୮) ଶ୍ରୀ ଫକୀର ମୋହନ ନାୟକ, ଅଧ୍ୟାପକ, ଦର୍ଶନ ବିଭାଗ, ଏମ୍.ପି.ସି. (ପ୍ରାତଃ) କଲେଜ, ବାରିପଦା ।
(୫୯) ଶ୍ରୀ ବସନ୍ତ କୁମାର ଦାସ, ଅଧ୍ୟାପକ, ଭୂତତ୍ତ୍ୱ ବିଭାଗ, ଖଲ୍ଲିକୋଟ କଲେଜ, ବ୍ରହ୍ମପୁର ।
(୬୦) ଶ୍ରୀ ବାବୁଲି ଚରଣ ସ୍ୱାଇଁ, ଭାରତୀୟ ଷ୍ଟେଟ୍ ବ୍ୟାଙ୍କ, ଚାରିବାଟିଆ, ଜିଲ୍ଲା-କଟକ ।
(୬୧) ଶ୍ରୀ ବିଜୟ କୁମାର ମହାପାତ୍ର, ଅଧ୍ୟାପକ, ଇଂରାଜୀ ବିଭାଗ, ଏନ୍.ସି. କଲେଜ, ଯାଜପୁର ।

(୬୨) ଡଃ ବିଜୟ କୁମାର ମିଶ୍ର, ଅଧ୍ୟାପକ, ଭୂଗୋଳ ବିଭାଗ, ରେଭେନ୍‌ସା କଲେଜ, କଟକ ।

(୬୩) ଡଃ ବିଜୟ ସ୍ୱାଇଁ, ଅଧ୍ୟାପକ, ଓଡ଼ିଆ ବିଭାଗ, ଭଦ୍ରକ (ପ୍ରାତଃ)କଲେଜ, ଭଦ୍ରକ ।

(୬୪) ଶ୍ରୀ ବିଜୟାନନ୍ଦ ମହାନ୍ତି, ସା./ ପୋ.ଅ-ରଘୁନାଥପୁର, ଜିଲ୍ଲା-ଜଗତ୍‌ସିଂହପୁର ।

(୬୫) ଶ୍ରୀ ବିପିନ କୁମାର ଚୌଧୁରୀ, ସା.- ପୋଡ଼ାବର, ପୋ.ଅ.-ଜଗତ୍‌ପୁର, ଜିଲ୍ଲା - କଟକ ।

(୬୬) ଶ୍ରୀ ବିମଳ ଚନ୍ଦ୍ର ମିଶ୍ର, ଅଧ୍ୟାପକ, ବାଣିଜ୍ୟ ବିଭାଗ, ଏସ୍.ସି.ଏସ୍. କଲେଜ, ପୁରୀ ।

(୬୭) ଶ୍ରୀ ବିଷ୍ଣୁ ଚରଣ ସାହୁ, ଅଧ୍ୟାପକ, ଉଦ୍ଭିଦ ବିଜ୍ଞାନ ବିଭାଗ, ରେଭେନ୍‌ସା କଲେଜ, କଟକ ।

(୬୮) ଶ୍ରୀ ବୀର କିଶୋର ବେହେରା, କନିଷ୍ଠ ସହାୟକ, ରାଷ୍ଟ୍ରୀୟ ପୁନର୍ବାସ ପ୍ରଶିକ୍ଷଣ ଏବଂ ଅନୁସନ୍ଧାନ ସଂସ୍ଥା, ଓଲଟପୁର, ଜିଲ୍ଲା-କଟକ ।

(୬୯) ଶ୍ରୀ ବଂଶୀଦାସ ବୋଷ, ମଙ୍ଗଳାବାଗ (ମଲ୍ଲୀ ସାହି), କଟକ ।

(୭୦) ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା, ଆଡ଼ଭୋକେଟ, ଓଡ଼ିଶା ହାଇକୋର୍ଟ, କଟକ ।

(୭୧) ଶ୍ରୀ ଭାସ୍କର ଚନ୍ଦ୍ର ଖଟାଇ, ପ୍ରାଧ୍ୟାପକ, ଓଡ଼ିଆ ବିଭାଗ, ଖ୍ରୀଷ୍ଟ କଲେଜ, କଟକ ।

(୭୨) ଶ୍ରୀ ମଦନ ଗୋପାଳ ପରିଡ଼ା, ସା.-ମେରିପୁର, ପୋ.ଅ.-ବାସୁଦେବପୁର, ଜିଲ୍ଲା-କଟକ ।

(୭୩) ଶ୍ରୀ ମନୋରଞ୍ଜନ ପଟ୍ଟନାୟକ, ଅଧ୍ୟାପକ, ଭୂଗୋଳ ବିଭାଗ, ରେଭେନ୍‌ସା କଲେଜ, କଟକ ।

(୭୪) ଡଃ ମିହିର ଦାସ, ଉପ-ନିର୍ଦ୍ଦେଶକ, ମାଧ୍ୟମିକ ଶିକ୍ଷା ନିର୍ଦ୍ଦେଶାଳୟ, ଭୁବନେଶ୍ୱର ।

(୭୫) ଶ୍ରୀ ମୁରଲୀଧର ଜେନା, ଅଧ୍ୟାପକ, ବାଣିଜ୍ୟ ବିଭାଗ, ଏନ୍.ସି. କଲେଜ, ଯାଜପୁର ।

(୭୬) ଶ୍ରୀ ଯଦୁନାଥ ପ୍ରଧାନ, ଅଧ୍ୟାପକ, ଓଡ଼ିଆ ବିଭାଗ, ଏନ୍.ସି. କଲେଜ, ଯାଜପୁର ।

(୭୭) ଶ୍ରୀ ଯୋଗେନ୍ଦ୍ର କୁମାର ମହାନ୍ତି, ସା.-ହୁଲିପୁର, ପୋ.ଅ.-କିଶୋର ନଗର, ଜିଲ୍ଲା-କଟକ ।

(୭୮) ଡାଃ ରମାନାଥ ମିଶ୍ର, ସହଯୋଗୀ ପ୍ରଫେସର, ଇମ୍ୟୁନୋଲୋଜି ବିଭାଗ, ସଂଜୟ ଗାନ୍ଧୀ ସ୍ନାତକୋତ୍ତର ଆୟୁର୍ବିଜ୍ଞାନ ସଂସ୍ଥା, ଲକ୍ଷ୍ନୌ, ଉତ୍ତର ପ୍ରଦେଶ ।

(୭୯) ଶ୍ରୀ ରମେଶ ଚନ୍ଦ୍ର ଭୂୟାଁ, ପ୍ରଫେସର ପଡ଼ା, କଟକ ।

(୮୦) ଶ୍ରୀ ରମେଶ ଚନ୍ଦ୍ର ସ୍ୱାଇଁ, ସା.-କୂଳ ସମିତଙ୍ଗା, ପୋ.ଅ.-ସମିତଙ୍ଗା, ଭାୟା-କିଶୋର ନଗର, ଜିଲ୍ଲା-କଟକ ।

(୮୧) ପଣ୍ଡିତ ରତ୍ନାକର ମହାପାତ୍ର, ସାଆନ୍ତ ସାହି, କଟକ ।

(୮୨) ଶ୍ରୀ ରବି ନାରାୟଣ ଦାସ, ଫିଜିଓଥେରାପିଷ୍ଟ, ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ହାସପାତାଳ, କଟକ ।

(୮୩) ଡଃ ରବି ନାରାୟଣ ମହାନ୍ତି, ଅଧ୍ୟାପକ, ସମାଜ ବିଜ୍ଞାନ ବିଭାଗ, ଫକୀର ମୋହନ କଲେଜ, ବାଲେଶ୍ୱର ।

(୮୪) ଶ୍ରୀ ରବି ପ୍ରସାଦ ମିଶ୍ର, ଅଧ୍ୟାପକ, ସଂସ୍କୃତ ବିଭାଗ, ଧରଣୀଧର କଲେଜ, କେନ୍ଦୁଝର ।

(୮୫) ଶ୍ରୀ ରବୀନ୍ଦ୍ରନାଥ ସାହୁ, 'ବନମାଳୀ ଭବନ', ଖାନ୍‌ନଗର, କଟକ ।

(୮୬) ଶ୍ରୀ ରାଜବଲ୍ଲଭ ମହାନ୍ତି, ଅଧ୍ୟାପକ, ଉଦ୍ଭିଦ ବିଜ୍ଞାନ ବିଭାଗ, ଖଲ୍ଲିକୋଟ କଲେଜ, ବ୍ରହ୍ମପୁର ।

(୮୭) ଶ୍ରୀ ରାଧାକାନ୍ତ ସାହୁ, ସା./ପୋ.ଅ.-ଖେଣ୍ଟାଳ, ଜିଲ୍ଲା-କଟକ ।

(୮୮) ଶ୍ରୀ ରାଧାମୋହନ ସାହୁ, ମାନସିଂହ ପାଟଣା, କଟକ ।

(୮୯) ଶ୍ରୀ ରାମଚନ୍ଦ୍ର ପଣ୍ଡା, 'ନ୍ୟୁଜ୍ ଏଣ୍ଡ୍ ଭ୍ୟୁଜ୍', କଲେଜ ଛକ, କଟକ ।

(୯୦) ଶ୍ରୀ ରାମଚନ୍ଦ୍ର ସାମନ୍ତରାୟ, ପ୍ରାଧ୍ୟାପକ, ଦର୍ଶନ ବିଭାଗ, ଫକୀର ମୋହନ କଲେଜ, ବାଲେଶ୍ୱର ।

(୯୧) ଶ୍ରୀମତୀ ଗୀତା ପଟ୍ଟନାୟକ, ଅଧ୍ୟାପିକା, ଶିକ୍ଷା ବିଭାଗ, ରାଧାନାଥ ଉଚ୍ଚତର ଶିକ୍ଷା ଅନୁଧ୍ୟାନ ପ୍ରତିଷ୍ଠାନ, କଟକ ।

(୯୨) ଶ୍ରୀ ଶଚୀନ୍ଦ୍ର ରାଉଳ, ଅଧ୍ୟାପକ, ଦର୍ଶନ ବିଭାଗ, ଏନ୍.ସି କଲେଜ, ଯାଜପୁର ।

(୯୩) ଶ୍ରୀ ଶରତ ଚନ୍ଦ୍ର ମହାପାତ୍ର, ଅଧ୍ୟାପକ, ଦର୍ଶନ ବିଭାଗ, କିଶୋର ନଗର କଲେଜ, କିଶୋର ନଗର, ଜିଲ୍ଲା-କଟକ ।

(୯୪) ଶ୍ରୀ ଶିବ ପ୍ରସାଦ ନନ୍ଦ, ଅଧ୍ୟାପକ, ଇତିହାସ ବିଭାଗ, ସରକାରୀ କଲେଜ, ଭାବନୀପାଟଣା ।

(୯୫) ଶ୍ରୀ ଶିବେନ୍ ଚନ୍ଦ୍ର ରାୟ, ଦୂରଦର୍ଶନ କେନ୍ଦ୍ର, ତୁଳସୀପୁର, କଟକ ।

(୯୬) ଶ୍ରୀ ଶିଶିର ଦାସ, ଆଡ଼ଭୋକେଟ, ଓଡ଼ିଶା ହାଇକୋର୍ଟ, କଟକ ।

(୯୭) ଶ୍ରୀ ଶିଶିର ନାରାୟଣ ଷଡ଼ଙ୍ଗୀ, ୨୫୬ - ବାପୁଜୀ ନଗର, ଭୁବନେଶ୍ୱର ।

(୯୮) ଡଃ ଶ୍ୟାମସୁନ୍ଦର ମିଶ୍ର, ଝାଞ୍ଜିରୀ ମଙ୍ଗଳା (ମିଶ୍ର ଲେନ୍), କଟକ ।

(୯୯) ଶ୍ରୀ ଶ୍ରୀନିବାସ ମହାପାତ୍ର, ବରିଷ୍ଠ ଶିକ୍ଷୀ, ରାଷ୍ଟ୍ରୀୟ ପୁନର୍ବାସ ପ୍ରଶିକ୍ଷଣ ଏବଂ ଅନୁସନ୍ଧାନ ସଂସ୍ଥା, ଓଲଟପୁର, ଜିଲ୍ଲା-କଟକ ।

(୧୦୦) ଶ୍ରୀ ଶ୍ରୀନିବାସ ରଥ, ଅଧ୍ୟକ୍ଷ ଏବଂ ଶିକ୍ଷକ ଓ ଅଣ-ଶିକ୍ଷକ କର୍ମଚାରୀ ତଥା ଛାତ୍ରବୃନ୍ଦ, କଟକ ସିଟି କଲେଜ, ରାଜାବଗିଚା, କଟକ ।

(୧୦୧) ଶ୍ରୀ ସତ୍ୟବ୍ରତ ମହାନ୍ତି, ସହକାରୀ ଯନ୍ତ୍ରୀ (ଜଳସେଚନ), ମଣିଜଙ୍ଗା, ଜିଲ୍ଲା– ଜଗତ୍‌ସିଂହପୁର ।

(୧୦୨) ଶ୍ରୀ ସୀମାଞ୍ଚଳ ପ୍ରଧାନ, ଅଧ୍ୟାପକ, ଦର୍ଶନ ବିଭାଗ, ବରପାଲି କଲେଜ, ବରପାଲି ।

(୧୦୩) ଶ୍ରୀ ସୁଧୀର କୁମାର ତ୍ରିପାଠୀ, ସାଧୁ ସାହି, ରଘୁନାଥପୁର, ଜିଲ୍ଲା– ଜଗତ୍‌ସିଂହପୁର ।

(୧୦୪) ଶ୍ରୀମତୀ ସୁପ୍ରଭା ପଟ୍ଟନାୟକ, ଗ୍ରନ୍ଥାଗାରିକା, ସରକାରୀ ମହିଳା କଲେଜ, ବଲାଙ୍ଗୀର ।

(୧୦୫) ଶ୍ରୀ ସୁବ୍ରତ କୁମାର ସାହୁ, ଅଧ୍ୟାପକ, ପଦାର୍ଥ ବିଜ୍ଞାନ ବିଭାଗ, ଏସ୍.ଜି. ମହିଳା କଲେଜ, ରାଉରକେଲା ।

(୧୦୬) ଶ୍ରୀ ସୁଶାନ୍ତ ମହାପାତ୍ର, ବକ୍ସିବାଟୀ ରୋଡ଼, କଟକ ।

(୧୦୭) ସେଖ ଫିରଦୌଷ ଅଲି, ସା.– ପୋଖରୀହୁଡ଼ା, ପୋ.ଅ.– କିଶୋର ନଗର, ଜିଲ୍ଲା– କଟକ ।

(୧୦୮) ଡଃ ସେଖ ମୋବିନୁଲ୍ଲା, ଅଧ୍ୟାପକ, ଉର୍ଦ୍ଦୁ ବିଭାଗ, ଏନ୍.ସି. କଲେଜ, ଯାଜପୁର ।

(୧୦୯) ଡଃ ସୌଦାମିନୀ ପଟ୍ଟନାୟକ, ଅଧ୍ୟାପିକା, ଓଡ଼ିଆ ବିଭାଗ, ସରକାରୀ ମହିଳା କଲେଜ, ବଲାଙ୍ଗୀର ।

(୧୧୦) କ୍ୟାପ୍‌ଟେନ୍ ସନ୍ଧ୍ୟା ସେନ୍‌ଗୁପ୍ତ, ଅଧ୍ୟକ୍ଷା ଏବଂ ଶିକ୍ଷକ ଓ ଅଣ-ଶିକ୍ଷକ କର୍ମଚାରୀବୃନ୍ଦ, ସରକାରୀ ମହିଳା କଲେଜ, ଢେଙ୍କାନାଳ ।

(୧୧୧) ଡଃ ହରିଶ୍ଚନ୍ଦ୍ର ସାହୁ, ଅଧ୍ୟାପକ, ଦର୍ଶନ ବିଭାଗ, ରେଭେନ୍‌ସା କଲେଜ, କଟକ ।

(୧୧୨) ଶ୍ରୀ ହରେକୃଷ୍ଣ ସାହୁ, 'ନିଉ କମଳ ଷ୍ଟୋର', ରାଣୀହାଟ, କଟକ ।

(୧୧୩) ଶ୍ରୀ ହୃଦାନନ୍ଦ ସାହୁ, ଅଧ୍ୟାପକ, ଦର୍ଶନ ବିଭାଗ, ରମାଦେବୀ ମହିଳା କଲେଜ, ଭୁବନେଶ୍ୱର ।

(୧୧୪) ଶ୍ରୀ ହୃଷୀକେଶ ମଲ୍ଲିକ, ସମ୍ପାଦକ, ଶିଶୁ ସାହିତ୍ୟ ସମିତି, ୨/୩, ୫ ଆର୍ (ଏଫ୍), ୟୁନିଟ୍-୯, ଭୁବନେଶ୍ୱର ।

(୧୧୫) ୟାକୁବ୍ ଅଲି, ବରିଷ୍ଠ ଅସ୍ତ୍ରୋପଚାରଶାଳା ପ୍ରାଯୁକ୍ତିକ, ରାଷ୍ଟ୍ରୀୟ ପୁନର୍ବାସ ପ୍ରଶିକ୍ଷଣ ଏବଂ ଅନୁସନ୍ଧାନ ସଂସ୍ଥା, ଓଲଟପୁର, ଜିଲ୍ଲା–କଟକ ।

(୧୧୬) ଶ୍ରୀ ଲଲାଟ କେଶରୀ ପାଣି, ଅଧ୍ୟାପକ, ବାଣିଜ୍ୟ ବିଭାଗ, ଏନ୍.ସି. କଲେଜ, ଯାଜପୁର ।

(୧୧୭) ଶ୍ରୀ ଲକ୍ଷ୍ମଣ କୁମାର ଚୌଧୁରୀ, ଅଧ୍ୟାପକ, ଅର୍ଥନୀତି ବିଭାଗ, ଏନ୍.ସି. କଲେଜ, ଯାଜପୁର ପ୍ରମୁଖ ।



# ପରିଶିଷ୍ଟ (୨)

'ଅଧ୍ୟାପିକା ନୀହାରିକା ଦାସ ସ୍ମୃତି ନ୍ୟାସ'ର ନ୍ୟାସୀମାନେ ହେଲେ –

୧) ଡକ୍ଟର ଧନେଶ୍ୱର ମହାପାତ୍ର
୨) ଡକ୍ଟର ଶ୍ୟାମସୁନ୍ଦର ମିଶ୍ର
୩) ଶ୍ରୀ ଜ୍ୟୋତିଷ ଚନ୍ଦ୍ର ପଟ୍ଟନାୟକ
୪) ଇଂ. ଡକ୍ଟର ଉମେଶ ଚନ୍ଦ୍ର ପଟ୍ଟନାୟକ
୫) ଡକ୍ଟର ପାବକ କାନୁନ୍‌ଗୋ
୬) ଡକ୍ଟର ବାଉରୀବନ୍ଧୁ କର
୭) ପ୍ରାଧ୍ୟାପକ ରମାକାନ୍ତ ରାୟ
୮) ଡକ୍ଟର ପବିତ୍ର କୁମାର ରଥ
୯) ଶ୍ରୀ ଦେବଦତ୍ତ ମହାନ୍ତି
୧୦) ଶ୍ରୀ ରାଧାମୋହନ ମହାନ୍ତି
୧୧) ଡକ୍ଟର ସୁଶାନ୍ତ କୁମାର ଦାସ
୧୨) ଅଧ୍ୟାପକ ନାରାୟଣ ମହାନ୍ତି



# ପରିଶିଷ୍ଟ (୩)

# ...ଏବଂ ତା'ପରେ

*ଡକ୍ଟର ସଙ୍କର୍ଷଣ ମିଶ୍ର*

## (କ)

ମୋର ଛାତ୍ର ପ୍ରତିମ ଶ୍ରୀ ନାରାୟଣ ମହାନ୍ତିଙ୍କ ସହ ପ୍ରଥମେ କେବେ ସାକ୍ଷାତ୍ ହୋଇଥିଲା, ତାହା ଆଉ ମନେପଡୁନାହିଁ। କେଉଁ ବର୍ଷ କି କେଉଁ ମାସ କି କେଉଁ ତାରିଖରେ ତାଙ୍କ ସହ ପ୍ରଥମ ଦେଖା ହୋଇଥିଲା, ସେସବୁ ଆଉ ମନେନାହିଁ। ମୋ ଜାଣିବାରେ, ୧୯୯୩ ଫେବୃଆରୀ ୨୧ରେ କଟକ ସହରସ୍ଥ ଶ୍ରୀଗଡ଼ଗଡ଼େଶ୍ୱର ମନ୍ଦିର ପ୍ରାଙ୍ଗଣରେ କିଛି କଲେଜ ଓ ବିଶ୍ୱବିଦ୍ୟାଳୟ ଶିକ୍ଷକ ଏକତ୍ର ହୋଇ 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା' ଗଠନ କରିଥିଲେ। ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ (ଆର୍.ଏସ୍.ଏସ୍.)ର ଏକ 'ବିବିଧ କ୍ଷେତ୍ର' ରୂପେ ଏହା ସ୍ଥାପିତ ହୋଇଥିଲା। ପ୍ରାୟ ଅଢ଼େଇବର୍ଷ ପରେ ୧୯୯୫ ମସିହା ସେପ୍ଟେମ୍ବର ମାସରେ ଅନୁଷ୍ଠିତ ପରିଷଦର ରାଜ୍ୟସ୍ତରୀୟ ସମ୍ମିଳନୀରେ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷକମାନଙ୍କୁ ଗ୍ରହଣ କରିବା ପାଇଁ ନିଷ୍ପତ୍ତି ନିଆଯାଇଥିଲା। ଏହି ସମ୍ମିଳନୀର ସୂଚନା ମୋତେ ଦିଆଯାଇ ନଥିଲା କିମ୍ବା ମୁଁ ଏଥିରେ ଯୋଗଦେଇ ନଥିଲି। ପରେ ପରିଷଦର ଉପସଭାପତି ପ୍ରାଧ୍ୟାପକ ଶ୍ରୀ ଅସିତ କୁମାର ବୋଷ ସଂଗଠନ ସମ୍ପାଦକ ଅଧ୍ୟାପକ ଶ୍ରୀ ନାରାୟଣ ମହାନ୍ତିଙ୍କୁ ମୋ ପାଖକୁ ପଠାଇଥିଲେ। ମୁଁ ରାଷ୍ଟ୍ରବାଦୀ ଚିନ୍ତାଧାରାରେ ବିଶ୍ୱାସ କରୁଥିବାରୁ ମୋତେ ପରିଷଦର କାର୍ଯ୍ୟରେ ସାମିଲ କରିବା ପାଇଁ ଶ୍ରୀ ବୋଷ ତାଙ୍କୁ କହିଥିଲେ। ଦିନେ ମଧ୍ୟାହ୍ନରେ ମୋତେ ଦେଖା କରିବାକୁ ଶ୍ରୀ ମହାନ୍ତି ସାଇକେଲ ଧରି ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲଠାରେ ପହଞ୍ଚିଥିଲେ। ଶ୍ରୀ ବୋଷ ପଠାଇଛନ୍ତି ବୋଲି କହି ସେ ଅଭିପ୍ରାୟ ବ୍ୟକ୍ତ କରିଥିଲେ। ମୁଁ ତାଙ୍କଠାରୁ ସବୁ କଥା ଶୁଣିଥିଲି ସତ, ମାତ୍ର କୌଣସି ପ୍ରତିକ୍ରିୟା ବ୍ୟକ୍ତ କରିନଥିଲି। ଏହା ହିଁ ଶ୍ରୀ ମହାନ୍ତିଙ୍କ ସହ ମୋର ପ୍ରଥମ ସାକ୍ଷାତ୍ ଥିଲା।

ପରବର୍ତ୍ତୀ ସମୟରେ ମୁଁ 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା'ର କାର୍ଯ୍ୟରେ ନିଜକୁ ହଜାଇଦେଇଥିଲି। ଏଥି ସଙ୍ଗେସଙ୍ଗେ ଅଧ୍ୟାପକ ଶ୍ରୀ ନାରାୟଣ ମହାନ୍ତିଙ୍କ

ପରିବାର ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇଯାଇଥିଲି । ୧୯୯୪ ମସିହା ଡିସେମ୍ବର ମାସ ୧୪ ତାରିଖରେ ତାଙ୍କର ଧର୍ମପତ୍ନୀ ଅଧ୍ୟାପିକା ନୀହାରିକା ଦାସଙ୍କର ଅକାଳ ବିୟୋଗ ଘଟିଥିଲା । ଅବଶ୍ୟ ମୁଁ ତାଙ୍କୁ କେବେ ଦେଖିବାର ସୌଭାଗ୍ୟ ଲାଭ କରିନଥିଲି; କିନ୍ତୁ ପରେପରେ ତାଙ୍କ ପରିବାର ସହ ଖୁବ୍ ଘନିଷ୍ଠ ହୋଇଯାଇଥିବାରୁ ପରବର୍ତ୍ତୀ ଘଟଣାପ୍ରବାହକୁ ଅତି ନିକଟରୁ ଦେଖିବାର ସୁଯୋଗ ପାଇଲି । ଏହି ଲେଖା ମାଧ୍ୟମରେ ସେହି ଘଟଣାକ୍ରମକୁ ଉପସ୍ଥାପନ କରିବା ଉଚିତ ମନେକରୁଛି ।

(ଖ)

ଅଧ୍ୟାପିକା ନୀହାରିକା ଦାସ (୧୯୫୫-୧୯୯୪)ଙ୍କର ମୃତ୍ୟୁବେଳକୁ ତାଙ୍କର ଜ୍ୟେଷ୍ଠପୁତ୍ର ଶ୍ରଦ୍ଧେୟ ଶ୍ରୀ ନିହାର ରଞ୍ଜନ ମହାନ୍ତି (ବାପୁ) ସରସ୍ୱତୀ ବିଦ୍ୟା ମନ୍ଦିର, ଗତିରାଉତପାଟଣାରେ ଷଷ୍ଠ ଶ୍ରେଣୀରେ ଅଧ୍ୟୟନ କରୁଥିଲେ । ମାତୃବିୟୋଗ ପରେ ସେ ସେହି ଆବାସିକ ବିଦ୍ୟାଳୟରେ ହିଁ ପାଠପଢ଼ା ଜାରିରଖିଥିଲେ । ୧୯୯୯ ମସିହାରେ ସେ ସେଠାରୁ ମାଟ୍ରିକ ପରୀକ୍ଷା ଦେଇଥିଲେ ଏବଂ ଶତକଡ଼ା ୪୪ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିଲେ । ଛାତ୍ର ହିସାବରେ ନିହାରଙ୍କର ମାନ ସେତେ ଭଲ ନଥିଲା । ତେଣୁ ପରୀକ୍ଷାଫଳକୁ ନେଇ ଅଧ୍ୟାପକ ମହାନ୍ତି ଆଦୌ ଦୁଃଖିତ ନଥିଲେ । ମାମୁ ଇଂ ସରୋଜ କୁମାର ପଟ୍ଟନାୟକ ଓ ବନ୍ଧୁ ଇଂ ଗୋପାଳ ଦାଶଶର୍ମାଙ୍କ ପରାମର୍ଶକ୍ରମେ ସେ ଇଣ୍ଡଷ୍ଟ୍ରିଆଲ ଟ୍ରେନିଂ ଇନ୍‌ଷ୍ଟିଚ୍ୟୁଟ୍ (ଆଇ.ଟି.ଆଇ.)ରେ ତା'ର ନାମ ଲେଖାଇବାକୁ ସ୍ଥିର କରିଥିଲେ । ସେତେବେଳକୁ ଶ୍ରୀ ମହାନ୍ତି ଧରଣୀଧର କଲେଜ, କେନ୍ଦୁଝରକୁ ବଦଳି ହୋଇ ଆସିଥିଲେ ଏବଂ ମାଗୁରଗାଡ଼ିଆଠାରେ ଶ୍ରୀ ସୁରେଶ ଚନ୍ଦ୍ର ମହାନ୍ତିଙ୍କ ଘରେ ଭଡ଼ାରେ ରହୁଥିଲେ । ସେ କେନ୍ଦୁଝର ସହର ନିକଟବର୍ତ୍ତୀ ପଦ୍ମପୁରସ୍ଥିତ ଇଣ୍ଡଷ୍ଟ୍ରିଆଲ ଟ୍ରେନିଂ ସେଣ୍ଟରରେ ନିହାରଙ୍କ ନାମ ଲେଖାଇଥିଲେ । ବାପ ଓ ପୁଅ ଦୁହେଁ ଦୁଇବର୍ଷ ଶ୍ରୀ ମହାନ୍ତିଙ୍କ ଭଡ଼ାଘରେ ଏକତ୍ର ବିତାଇଥିଲେ ।

୨୦୦୧ ମସିହାରେ ଶ୍ରଦ୍ଧେୟ ନିହାର ଇଲେକ୍‌ଟ୍ରିସିଆନ ବୃତ୍ତିରେ ନିର୍ଦ୍ଧାରିତ ବୃତ୍ତିଗତ ପରୀକ୍ଷା ଦେଇ ଶତକଡ଼ା ୮୧ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିଲେ । ତା'ପରେ ଅଧ୍ୟାପକ ମହାନ୍ତି ପୁଅକୁ ଡିପ୍ଲୋମା ଇନ୍ ଇଞ୍ଜିନିୟରିଂ ପାଠ୍ୟକ୍ରମରେ ନାମ ଲେଖାଇବାକୁ ପ୍ରସ୍ତାବ ଦେଇଥିଲେ । ମାତ୍ର ଅଧିକ ପଢ଼ିବା ଦିଗରେ ନିହାର ଆଗ୍ରହ ପ୍ରକାଶ କରିନଥିଲେ । ଏପରିକି କୌଣସି ବ୍ୟବସାୟ ଆରମ୍ଭ କରିବାକୁ ବି ରାଜି ହୋଇନଥିଲେ । ଅଗତ୍ୟା ଚାକିରି କରିବା ବ୍ୟତୀତ ତାଙ୍କ ଆଗରେ ଆଉ କୌଣସି ବିକଳ୍ପ ନଥିଲା । ୨୦୦୧

ଡିସେମ୍ବର ୧୪ରେ ସେ ସେସ୍‌କୋ ଅଫ୍ ଓଡ଼ିଶା ଲିମିଟେଡ୍‌ରେ ଇଲେକ୍‌ଟ୍ରିସିଆନ ଭାବେ ଯୋଗଦେଇ କର୍ମମୟ ଜୀବନ ଆରମ୍ଭ କରିଥିଲେ। ସେତେବେଳକୁ ତାଙ୍କୁ ମାତ୍ର ୧୯ ବର୍ଷ ବୟସ ହୋଇଥିଲା। ସେ ସ୍ୱଗୃହ ଝାଞ୍ଜିରୀମଙ୍ଗଳାସ୍ଥିତ ନନ୍ଦିଆ ନିବାସରେ ରହି ସେସ୍‌କୋରେ କାର୍ଯ୍ୟ କରୁଥିଲେ। ପ୍ରାୟ ଦୁଇବର୍ଷ ପରେ ନିହାର ବଡ଼ବିଲସ୍ଥିତ ରୁଙ୍ଗଟା ମାଇନ୍‌ସ ଲିମିଟେଡ୍‌ର ସଞ୍ଜ ଆଇରନ୍ ପ୍ଲାଣ୍ଟରେ ନିଯୁକ୍ତି ପାଇ ସେଠାକୁ ଚାଲିଯାଇଥିଲେ। ସେ ୨୦୦୩ ନଭେମ୍ବର ୨୫ରୁ ୨୦୦୫ ସେପ୍ଟେମ୍ବର ୧୬ ପର୍ଯ୍ୟନ୍ତ ଉକ୍ତ ପ୍ଲାଣ୍ଟରେ ଇଲେକ୍‌ଟ୍ରିସିଆନ ଭାବେ କାର୍ଯ୍ୟରତ ଥିଲେ। ତା'ପରେ ସେହି ବଡ଼ବିଲସ୍ଥିତ ହିମା ଇସ୍ପାତ ପ୍ରାଇଭେଟ ଲିମିଟେଡ୍‌ରେ ସେପ୍ଟେମ୍ବର ୨୦ରେ ଯୋଗଦେଇଥିଲେ। ସେ ୨୦୧୦ ମାର୍ଚ୍ଚ ୩୧ ପର୍ଯ୍ୟନ୍ତ ସେଠାରେ କାର୍ଯ୍ୟ କରିଥିଲେ।

ନିଜ ଜିଲ୍ଲା କଟକର ଆଠଗଡ଼ଠାରେ ଅବସ୍ଥିତ ଆରତି ଷ୍ଟିଲ ଲିମିଟେଡ୍‌ରେ ନିଯୁକ୍ତି ପାଇ ନିହାର ବଡ଼ବିଲ ଛାଡ଼ିଥିଲେ। ବଡ଼ବିଲ ସହ ପ୍ରାୟ ସାଢ଼େଛଅବର୍ଷର ସମ୍ପର୍କ ତୁଟାଇ ସେ ୨୦୧୦ ମାର୍ଚ୍ଚ ୩୧ରେ ନିଜ ସ୍ଥାନକୁ ଫେରିଆସିଥିଲେ। ତା' ପରଦିନ ସେ 'ଆରତି'ରେ ଇଲେକ୍‌ଟ୍ରିସିଆନ ଭାବେ ଯୋଗଦେଇଥିଲେ। ପିତା ଓ ପତ୍ନୀଙ୍କ ସହ ସେ ମର୍କତନଗର (ସି.ଡି.ଏ.)ସ୍ଥିତ ନବନିର୍ମିତ ନିଜସ୍ୱ ବାସଗୃହରେ ଅବସ୍ଥାନ କରିଥିଲେ। ପ୍ରାୟ ୧ବର୍ଷ ପରେ ସେହି ଆଠଗଡ଼ର କେଭିକେ ନୀଳାଚଳ ପାୱାର ପ୍ରାଇଭେଟ ଲିମିଟେଡରେ ନିଯୁକ୍ତି ପାଇ ୨୦୧୧ ଜୁଲାଇ ୧ରେ ସେଠାକୁ ଚାଲିଆସିଥିଲେ। ମାତ୍ର ହଠାତ୍ ଏହା ବନ୍ଦ ହୋଇଯିବାରୁ ସେ ୨୦୧୨ ଅକ୍ଟୋବର ୧୧ରେ ଚାକିରି ହରାଇଥିଲେ।

ଯାହାହେଉ, ନିହାର କଣିହାସ୍ଥିତ ଜିନ୍ଦଲ ଇଣ୍ଡିଆ ଥର୍ମାଲ ପାୱାର ଲିମିଟେଡ୍‌ରେ ଚାକିରି ପାଇ ୨୦୧୩ ଜାନୁଆରୀ ୧୦ରେ ଇଲେକ୍‌ଟ୍ରିସିଆନ୍ ଭାବେ ଯୋଗଦେଇଥିଲେ। ସେହିଦିନ 'ଜିନ୍ଦଲ'ର ବରିଷ୍ଠ ଅଧିକାରୀ ଶ୍ରୀ ଅମର ସିଂହଙ୍କ ସହ ତାଙ୍କର ଦେଖା ହୋଇଥିଲା। ଶ୍ରୀ ସିଂହ ତାଙ୍କର ପାରିବାରିକ ପ୍ରତିଷ୍ଠା କଥା ଶୁଣି ଉଚ୍ଚତର ଶିକ୍ଷା ପାଇଁ, ବିଶେଷତଃ ଡିପ୍ଲୋମା ଇନ୍ ଇଞ୍ଜିନିୟରିଂ ପଢ଼ିବା ପାଇଁ ପ୍ରବର୍ତ୍ତାଇଥିଲେ। କିପରି କେଜାଣି, ତାଙ୍କ କଥା ନିହାରଙ୍କ ହୃଦୟକୁ ସ୍ପର୍ଶ କରିଥିଲା ଏବଂ ସେ ଉକ୍ତ ପାଠ୍ୟକ୍ରମରେ ନାମ ଲେଖାଇବାକୁ ସ୍ଥିର କରିଥିଲେ। ସେ ଡିପ୍ଲୋମା ଏଣ୍ଟ୍ରାନ୍ସ ଟେଷ୍ଟ (ଡି.ଇ.ଟି.) ୨୦୧୩ ପାଇଁ ନିଜକୁ ପ୍ରସ୍ତୁତ କରି ଏଥିରେ ଭାଗନେଇଥିଲେ। ସେ ଏହି ପରୀକ୍ଷାରେ Combined Rank-3735 ଓ Green Card Rank-315 ଲାଭ କରିଥିଲେ। ତା'ପରେ ଯାଜପୁରରୋଡ଼ର କଳିଙ୍ଗ

ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇଞ୍ଜିନିୟରିଂ ଏଣ୍ଡ ଟେକ୍ନୋଲୋଜି (କେ.ଆଇ.ଇ.ଟି.)ରେ ନାମ ଲେଖାଇଥିଲେ। ସେଠାରୁ ୨୦୧୫ରେ ଡିପ୍ଲୋମା (ଲାଟରାଲ ଏଣ୍ଟ୍ରି) ଇନ୍ ଇଲେକ୍‌ଟ୍ରିକାଲ ଇଞ୍ଜିନିୟରିଂ ପରୀକ୍ଷାରେ ଶତକଡ଼ା ୭୦.୧ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିଲେ। ସେ ପାରାଦ୍ୱୀପ ପୋର୍ଟ ଟ୍ରଷ୍ଟରେ ଏକବର୍ଷ ପାଇଁ ପୋଷ୍ଟ-ଡିପ୍ଲୋମା ପ୍ରାକ୍ଟିକାଲ ଟ୍ରେନିଂ ନେବାକୁ ମନୋନୀତ ହୋଇଥିଲେ। ୨୦୧୬ ଫେବୃଆରୀ ୪ରେ ସେ ଶିକ୍ଷାନବିସ (ଆପ୍ରେଣ୍ଟିସ୍) ଭାବେ ଯୋଗଦେଇ ଏବେ ସେଠାରେ କାର୍ଯ୍ୟରତ ଅଛନ୍ତି।

ମାତୃହୀନ ନିହାର ୨୧ବର୍ଷ ବୟସରେ ପିତାଙ୍କୁ ଛାଡ଼ି ଚାକିରି କରିବା ପାଇଁ ବଡ଼ବିଲ ଯାଇଥିଲେ। ଶିଳ୍ପାଞ୍ଚଳ ବଡ଼ବିଲରେ ସେ ସାଢ଼େଛଅବର୍ଷ ଏକାକୀ ବିତାଇଥିଲେ। ଏହି ସମୟରେ ଗୋଡ଼ ଖସିଯିବାର ଆଶଙ୍କା ଭରିରହିଥିଲା। ମାତ୍ର ତାଙ୍କ ଗୋଡ଼ ଖସିଛି କି ନାହିଁ, ତାହା ମୁଁ ଜାଣିନାହିଁ କିମ୍ବା ଜାଣିବାକୁ ଆଗ୍ରହ କରିନାହିଁ। ମୁଁ ଲକ୍ଷ୍ୟ କରିଛି, ପିତାଙ୍କର ସେବା କରିବାରେ ନୀହାର ସାମାନ୍ୟତମ ଅବହେଳା ବି କରିନାହାନ୍ତି। ବେତନ ପାଇଲେ, ପରିମାଣ ଯାହା ହେଉନା କାହିଁକି, ସେ ପିତାଙ୍କୁ ଦେଇଥାନ୍ତି। ତାଙ୍କଠାରେ ଜାଣିବାର ଇଚ୍ଛା ଭରିରହିଥିବାର ମୁଁ ଲକ୍ଷ୍ୟ କରିଛି। ସେ ୨୦୦୨ରେ କେନ୍ଦୁଝରର ହୋଲି ହୋମ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇନ୍‌ଫୋ-ଟେକ୍ ଏଣ୍ଡ ମ୍ୟାନେଜମେଣ୍ଟରୁ କମ୍ପ୍ୟୁଟର ଅପ୍ଲିକେସନ୍‌ରେ ଡିପ୍ଲୋମା ଲାଭ କରିଥିଲେ। ତା'ଛଡ଼ା ଘରୋଇ ପରୀକ୍ଷାର୍ଥୀ ଭାବେ ୨୦୦୮ରେ ଆପ୍ରେଣ୍ଟିସ୍ ପାଇଁ ଅଲ୍ ଇଣ୍ଡିଆ ଟ୍ରେଡ୍ ଟେଷ୍ଟ ଦେଇଥିଲେ ଏବଂ ଶତକଡ଼ା ୬୧ ନମ୍ବର ରଖି କୃତକାର୍ଯ୍ୟ ହୋଇଥିଲେ। ସେ ମଧ୍ୟ ଇଲେକ୍‌ଟ୍ରିକାଲ ଇନିସ୍‌ପେକ୍ଟରଙ୍କଠାରୁ ୨୦୧୦ ଜୁଲାଇ ୨୯ରେ Electrical Workmen's Permit (Wireman 'B') ପ୍ରାପ୍ତ ହୋଇଥିଲେ।

କେନ୍ଦୁଝରରେ ବାପାଙ୍କ ପାଖରେ ରହି ଅଧ୍ୟୟନ କରୁଥିବାବେଳେ ନିହାର କବାଡ଼ି ଖେଳରେ ପ୍ରଶିକ୍ଷଣ ଲାଭ କରିଥିଲେ। ଏଥିରେ ମନୋନିବେଶ କରି ସେ ବିଶେଷ ପାରଦର୍ଶିତା ହାସଲ କରିଥିଲେ। କଟକରେ ଥାଇ ସେସ୍‌କୋରେ କାମ କରୁଥିବାବେଳେ ଦୈନିକ ବାରବାଟୀ ଷ୍ଟାଡ଼ିୟମ୍‌କୁ ଯାଇ ଖେଳ ଅଭ୍ୟାସ କରୁଥିଲେ। କଟକ ଜିଲ୍ଲା ଟିମ୍‌ରେ ଖେଳିବାର ସୁଯୋଗ ବି ପାଇଥିଲେ। ମାତ୍ର ଦିନେ ଷ୍ଟାଡ଼ିୟମରେ ଖେଳୁଥିବାବେଳେ ତାଙ୍କ ଡାହାଣ ହାତର ହାଡ଼ ଭାଙ୍ଗିଯାଇଥିଲା। ସେ ଶାନ୍ତି ମେମୋରିଆଲ ହସ୍ପିଟାଲରେ ଭର୍ତ୍ତି ହୋଇଥିଲେ ଏବଂ ସେଠାରେ ତାଙ୍କର ଅସ୍ତ୍ରୋପଚାର କରାଯାଇଥିଲା। ଜେଜେ ଶ୍ରୀ ଗୋପାଳ ଚରଣ ମହାନ୍ତିଙ୍କର ଘନିଷ୍ଠ ବନ୍ଧୁ ବୋଧପୁର ନିବାସୀ

ଶ୍ରୀ ଗୌରକିଶୋର ଦାସଙ୍କର ସୁପୁତ୍ର ଡାକ୍ତର ଚିତ୍ତ ପ୍ରସାଦ ଦାସ ଏହି ଅସ୍ତ୍ରୋପଚାର କରିଥିଲେ। ଡାହାଣ ହାତ 'ପ୍ଲାଷ୍ଟର' କରାଯାଇଥିବାରୁ ଦୈନନ୍ଦିନ କାର୍ଯ୍ୟ ସମ୍ପନ୍ନ କରିବା ତାଙ୍କ ପକ୍ଷରେ ସହଜ ନଥିଲା। ତେଣୁ ହସ୍ପିଟାଲରୁ ବାହାରି ସେ ମାମୁଘରକୁ ଚାଲିଆସିଥିଲେ । ମାମୁଘର ବ୍ୟତୀତ ଅନ୍ୟତ୍ର ରହିବାର ସୁଯୋଗ ତାଙ୍କ ପାଇଁ ନଥିଲା । ସୁସ୍ଥ ହେଲା ପର୍ଯ୍ୟନ୍ତ ସେ ସେଠାରେ ରହିଥିଲେ। ମାତ୍ର ତା'ପରେ କବାଡ଼ି ଖେଳ ବନ୍ଦ କରିବାକୁ ବାଧ୍ୟ ହୋଇଥିଲେ।

ଶ୍ରଦ୍ଧେୟ ନୀହାରଙ୍କର ବିବାହ ୨୦୦୯ ମସିହା ଜାନୁଆରୀ ମାସ ୧୮ ତାରିଖରେ ସମ୍ପନ୍ନ ହୋଇଥିଲା। ସେ ଢେଙ୍କାନାଳ ଜିଲ୍ଲାର ଗେଙ୍ଗୁଟିଆ ଗ୍ରାମ ନିବାସୀ ଶ୍ରୀ ଧନେଶ୍ୱର ପଟ୍ଟନାୟକ ଓ ଶ୍ରୀମତୀ ପଦ୍ମିନୀ ପଟ୍ଟନାୟକଙ୍କ ଦ୍ୱିତୀୟା କନ୍ୟା ମିତାଶ୍ରୀ ପଟ୍ଟନାୟକ (ଲୋରା)ଙ୍କୁ ବିବାହ କରିଥିଲେ। ଅଧ୍ୟାପକ ମହାନ୍ତିଙ୍କ ସାନ ଭଉଣୀ ଶ୍ରୀମତୀ ସୌଦାମିନୀ ପଟ୍ଟନାୟକ ଏହି ବିବାହ ପ୍ରସ୍ତାବ ପକାଇଥିଲେ। ଶ୍ରଦ୍ଧେୟା ସୌଦାମିନୀ ଗେଙ୍ଗୁଟିଆ ଗ୍ରାମର ଶ୍ରୀ ପ୍ରଫୁଲ୍ଲ କୁମାର ପଟ୍ଟନାୟକଙ୍କୁ ବିବାହ କରିଥିଲେ ଏବଂ ଶ୍ରୀ ଧନେଶ୍ୱର ପଟ୍ଟନାୟକ ତାଙ୍କର ପଡ଼ୋଶୀ ଥିଲେ। ପିତା ବିପତ୍ନୀକ ଥିବାରୁ ଏହି ବିବାହରେ ନିହାରଙ୍କହ ଦାଦା ଶ୍ରୀ ଜ୍ୟୋତି ପ୍ରକାଶ ମହାନ୍ତି କର୍ତ୍ତା ହୋଇଥିଲେ। ପରିବାରର ପ୍ରଥା ଅନୁସାରେ ବିବାହ ପରେ ନିହାର ଓ ମିତାଶ୍ରୀ ପୁରୀ ଯାଇ ଶ୍ରୀଜଗନ୍ନାଥଙ୍କର ଦର୍ଶନ କରିଥିଲେ। ଶ୍ରୀ ମହାନ୍ତିଙ୍କର ଜ୍ୟେଷ୍ଠାଭଗ୍ନୀ ତୁଲ୍ୟା ଡକ୍ଟର (ଶ୍ରୀମତୀ) ଜ୍ୟୋତ୍ସ୍ନାରାଣୀ ଦାଶ ସେମାନଙ୍କୁ ନେଇ ପୁରୀ ଯାଇଥିଲେ। ନିହାରଙ୍କ ବିବାହ କଥା ମୋତେ କାଲି ପରି ଲାଗୁଛି। ବର ଓ ବରଯାତ୍ରୀ ଶୋଭାଯାତ୍ରାରେ ଗଲାବେଳେ ମୁଁ ବର ବସିଥିବା ଗାଡ଼ିର ଆଗ ସିଟ୍‌ରେ ହିଁ ବସିଥିଲି। ମୁଁ ଦେଖିବାରେ ବୋହୂ ଲୋରା ଶ୍ୱଶୁରଙ୍କ ଯତ୍ନ ନେବାକୁ ଅଗ୍ରାଧିକାର ଦେଇଥା'ନ୍ତି। ସେ ପାଖରେ ନରହିଲେ ଶଶ୍ୱରୁଙ୍କର ଖାଇବାରେ ଅସୁବିଧା ହେବ ବୋଲି କହିଥାନ୍ତି। ତେଣୁ ବାପାଙ୍କ ଘର ଗେଙ୍ଗୁଟିଆକୁ ଗଲେ ବି ତୁରନ୍ତ ଫେରିଆସନ୍ତି। ସତରେ, ଆଜିର ଦୁନିଆରେ ଲୋରାଙ୍କ ପରି ବୋହୂ ମୁଁ ଦେଖିନାହିଁ। ୧୪ବର୍ଷ କାଳ ଆଜି ଘରେ ତ କାଲି ବାହାରେ ଖାଇ ଜୀବନ କାଟୁଥିବା ଶ୍ରୀ ମହାନ୍ତିଙ୍କ ପରିବାର ବୋହୂ ଆସିବା ପରେ ପୁଣି ହସିଉଠିଲା।

ଅଧ୍ୟାପକ ମହାନ୍ତିଙ୍କର ଅନେକ ବନ୍ଧୁ ଓ ଆତ୍ମୀୟ ଶ୍ରଦ୍ଧେୟ ନିହାରଙ୍କ ଜୀବନର ଉନ୍ନତି କାମନା କରି ସହଯୋଗର ହସ୍ତ ପ୍ରସାରଣ କରିଛନ୍ତି। ଏଥିପାଇଁ ଇଞ୍ଜିନିୟର ଅଜୟ କୁମାର ପରିଡ଼ା, ପ୍ରାଧ୍ୟାପକ ତପନକାନ୍ତି ପଟ୍ଟନାୟକ, ଶ୍ରୀ ଅମୂଲ୍ୟ କୁମାର

ସାହୁ, ଇଞ୍ଜିନିୟର ଶକ୍ତି ପ୍ରସାଦ ଦାସ ଓ ଶ୍ରୀ ଜଗବନ୍ଧୁ ମିଶ୍ର ଏବଂ ଶ୍ରୀ ସନ୍ନ୍ୟାସୀ ଦାସ, ଶ୍ରୀ ପରମେଶ୍ୱର ମହାନ୍ତ ଓ ଇଞ୍ଜିନିୟର ବିରଜା ପ୍ରସାଦ ଦାସଙ୍କ ପାଖେ ଶ୍ରୀ ମହାନ୍ତି କୃତଜ୍ଞତା ପ୍ରକାଶ କରନ୍ତି। ତା'ଛଡ଼ା ଡକ୍ଟର ପର୍ଶୁରାମ ରାୟସିଂହ, ଇଞ୍ଜିନିୟର ଅରୁଣ କୁମାର ସାହୁ, ଇଞ୍ଜିନିୟର ଦୁର୍ଗା ପ୍ରସାଦ ବେହେରା, ଶ୍ରୀ ନିଧି କୁମାର ରାଉତରାୟ, ସ୍ୱର୍ଗତ ଡକ୍ଟର କମଳଲୋଚନ କର, ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି ଓ ଶ୍ରୀ ସୁକାନ୍ତ କୁମାର ମହାନ୍ତିଙ୍କ ପାଖେ ମଧ ଶ୍ରୀ ମହାନ୍ତି କୃତଜ୍ଞ ଥିବା କୁହନ୍ତି। ପୁଣି ଭାଇ ଆଡ଼ଭୋକେଟ ଦେବଦତ୍ତ ମହାନ୍ତି, ଶ୍ରୀ ଅଶୋକ କୁମାର ମହାନ୍ତି, ଶ୍ରୀ ଜ୍ୟୋତି ପ୍ରକାଶ ମହାନ୍ତି, ଶ୍ରୀ କୃଷ୍ଣ ପ୍ରସାଦ ମହାନ୍ତି ଓ ଡକ୍ଟର ପତିତପାବନ ମହାନ୍ତିଙ୍କର ପ୍ରଚେଷ୍ଟାକୁ ସେ ସ୍ମରଣ କରନ୍ତି ।

(ଗ)

ସାନପୁଅ ଇଂ ନିର୍ଲିପ୍ତ ରଞ୍ଜନ ମହାନ୍ତି (ଲିଙ୍କନ) ପୁଣେର ସୁପ୍ରସିଦ୍ଧ ଡି.ଓ୍ୱାଇ. ପଟିଲ କଲେଜ ଅଫ୍ ଇଞ୍ଜିନିୟରିଂର ଇନ୍‌ଷ୍ଟ୍ରୁମେଣ୍ଟେସନ ଏଣ୍ଡ କଣ୍ଟ୍ରୋଲ ଇଞ୍ଜିନିୟରିଂ ବିଭାଗରେ ଆସିଷ୍ଟାଣ୍ଟ ପ୍ରଫେସର ଅଛନ୍ତି। ସେ ଜଣେ ସ୍ୱଚେଷ୍ଟାସିଦ୍ଧ ବ୍ୟକ୍ତିତ୍ୱ ବୋଲି ମୁଁ ମନେକରେ। ଅଧାପିକା ନୀହାରିକା ଦାସଙ୍କ ମୃତ୍ୟୁବେଳକୁ ଶ୍ରଦ୍ଧେୟ ନିର୍ଲିପ୍ତ ସରସ୍ୱତୀ ଶିଶୁ ମନ୍ଦିର, ହରିପୁରରେ ତୃତୀୟ ଶ୍ରେଣୀରେ ଅଧୟନ କରୁଥିଲେ। ମାତାଙ୍କ ମୃତ୍ୟୁ ପରେ ତାଙ୍କର ଆଉ ଘରେ ଅର୍ଥାତ୍ ନଦିଆ ନିବାସରେ ରହିବାର ସୁଯୋଗ ନଥିଲା। ଖାସ୍ ତାଙ୍କରି ପାଇଁ ଅଜା (ମାତାଙ୍କର ପିତା) ଶ୍ରୀ ରାଜକିଶୋର ଦାସ ଓ ଆଈ (ମାତାଙ୍କର ମାତା) ଶ୍ରୀମତୀ ସୌଭାଗ୍ୟ ମଞ୍ଜରୀ ଦାସ ନିଜସ୍ୱ ଗ୍ରାମ ବୋଧପୁର ଛାଡ଼ିଥିଲେ। ଘରେ ତାଲା ପକାଇ ସେମାନେ କଟକ ଚାଲିଆସିଲେ ଏବଂ ମର୍କତନଗର (ସି.ଡି.ଏ.)ରେ ସଦ୍ୟନିର୍ମିତ ଘରେ ଅବସ୍ଥାନ କଲେ। ଏଠାରେ ନିର୍ଲିପ୍ତଙ୍କ ସାନମାମୁ ଶ୍ରୀ ସୁବ୍ରତ କୁମାର ଦାସ, ସାନମାଇଁ ଶ୍ରୀମତୀ ପୁଷ୍ପାଞ୍ଜଳି ଦାସ ଓ ସେମାନଙ୍କ ପୁତ୍ର ଶ୍ରୀ ସଂଜିତ ଦାସ ରହୁଥାନ୍ତି । ନିର୍ଲିପ୍ତ ନଦିଆ ନିବାସ ଛାଡ଼ି ସେମାନଙ୍କ ପାଖେ ରହିଲେ ଏବଂ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଲେ। ମାମୁଘରେ ଚାରିବର୍ଷ ରହି ସେ ୧୯୯୯ରେ ସପ୍ତମ ଶ୍ରେଣୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ। ତା'ପରେ ସେ କଲିଜିଏଟ୍ ସ୍କୁଲର ଛାତ୍ରାବାସକୁ ଚାଲିଯାଇଥିଲେ ଏବଂ ସେଠାରେ ରହି ସ୍କୁଲଶିକ୍ଷା ସମାପ୍ତ କରିଥିଲେ। ୨୦୦୨ରେ ଶତକଡ଼ା ୭୭ ନମ୍ବର ରଖି ସେ ମାଟ୍ରିକ ପାସ କରିଥିଲେ।

ତା'ପରେ ନିର୍ଲିପ୍ତ ଖ୍ରୀଷ୍ଟ କଲେଜରେ ଯୁକ୍ତ ଦୁଇ (ବିଜ୍ଞାନ) ଶ୍ରେଣୀରେ ନାମ ଲେଖାଇଥିଲେ। ସେ ପ୍ରଥମ ବର୍ଷ ବଙ୍ଗାଳିସାହିସ୍ଥିତ ରାମକୃଷ୍ଣ କୁଟୀରରେ ରହିଥିଲେ। ପିତା ଅଧ୍ୟାପକ ନାରାୟଣ ମହାନ୍ତିଙ୍କର ଶିକ୍ଷକ ଶ୍ରୀ ବିଷ୍ଣୁ ଚରଣ ଜେନା ସେଠାରେ ତତ୍ତ୍ୱାବଧାରକ ଥିଲେ। ଉଲ୍ଲେଖଯୋଗ୍ୟ ଯେ, ୨୦୦୫ରେ ରାମକୃଷ୍ଣ କୁଟୀରର ଶତାବ୍ଦୀ ସ୍ମରଣିକା (୧୯୦୬-୨୦୦୫) 'କଳ୍ପତରୁ' ପ୍ରକାଶ ପାଇଥିଲା ଏବଂ ତହିଁରେ ଥିବା 'କତିପୟ ପ୍ରାକ୍ତନ ଅନ୍ତେବାସୀ'ଙ୍କ ଫଟୋ ମଧ୍ୟରେ ନିର୍ଲିପ୍ତଙ୍କ ଫଟୋ ସ୍ଥାନ ପାଇଥିଲା। ଦ୍ୱିତୀୟ ବର୍ଷ କିନ୍ତୁ ନିର୍ଲିପ୍ତ କୁଟୀର ଛାଡ଼ି ମାମୁଘରକୁ ଫେରିଆସିଥିଲେ। ସେଠାରେ ରହି ସେ ୨୦୦୪ରେ ବାର୍ଷିକ ଉଚ୍ଚ ମାଧ୍ୟମିକ (ଯୁକ୍ତ ଦୁଇ) ପରୀକ୍ଷା ଦେଇଥିଲେ ଏବଂ ଶତକଡ଼ା ୫୪.୫ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିଲେ।

ଯୁକ୍ତ ଦୁଇ (ବିଜ୍ଞାନ) ଶିକ୍ଷା ସମାପ୍ତ କରି ଇଞ୍ଜିନିୟରିଂ ପଢ଼ିବା ନିର୍ଲିପ୍ତଙ୍କର ଲକ୍ଷ୍ୟ ଥିଲା। ଇଞ୍ଜିନିୟରିଂ ପାଠ୍ୟକ୍ରମରେ ନାମଲେଖାଇବାକୁ ହେଉଥିବା ପ୍ରବେଶିକା ପରୀକ୍ଷା ପାଇଁ ସେ ଏକବର୍ଷ କାଳ ପ୍ରସ୍ତୁତି ଚଳାଇଥିଲେ। ଏହି ଏକବର୍ଷ ସେ ମାମୁଘରେ ଓ ନଦିଆ ନିବାସରେ କଟାଇଥିଲେ। ନିର୍ଲିପ୍ତ ୨୦୦୫-୨୦୦୬ ଶିକ୍ଷାବର୍ଷରେ ଗୁଣୁପୁରସ୍ଥିତ ଗାନ୍ଧି ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଞ୍ଜିନିୟରିଂ ଏଣ୍ଡ ଟେକ୍ନୋଲୋଜିର ବି.ଟେକ୍. ପାଠ୍ୟକ୍ରମରେ ନାମଲେଖାଇଥିଲେ। ସେ ସେଠାରେ ଆପ୍ଲାଏଡ୍ ଇଲେକ୍‌ଟ୍ରୋନିକ୍ସ ଏଣ୍ଡ ଇନ୍‌ଷ୍ଟ୍ରୁମେଣ୍ଟେସନ ପଢ଼ିଥିଲେ। ପ୍ରଥମ ବର୍ଷ କଲେଜର ହଷ୍ଟେଲରେ ଓ ପର ତିନିବର୍ଷ ବାହାରେ ମେସ୍‌ରେ ରହିଥିଲେ। ୨୦୦୯ରେ ସେ ସେଠାରୁ ବି.ଟେକ୍. (ସିଜିପିଏ- ୭.୨୩) ପାସ କରିଥିଲେ।

ତା'ପରେ ନିର୍ଲିପ୍ତ ଏମ୍.ଟେକ୍. ପଢ଼ିବା ଲକ୍ଷ୍ୟ ନେଇ ଗ୍ରାଜୁଏଟ୍ ଆପ୍‌ଟିଚ୍ୟୁଡ୍ ଟେଷ୍ଟ ଇନ୍ ଇଞ୍ଜିନିୟରିଂ (ଗେଟ୍) ଦେବାକୁ ମନସ୍ଥ କରିଥିଲେ। ଏଥିପାଇଁ ଦିଲ୍ଲୀ ଯାଇ ସେଠାରେ ରହି ପ୍ରସ୍ତୁତି ଚଳାଇବାକୁ ସ୍ଥିର କରିଥିଲେ। ସେ ୨୦୦୯ ଜୁଲାଇ ୪ରେ କଟକରୁ ରାଜଧାନୀ ଏକ୍ସପ୍ରେସ ଯୋଗେ ଦିଲ୍ଲୀ ବାହାରି ଥିଲେ। ଏହା ରାଜ୍ୟ ବାହାରକୁ ତାଙ୍କର ପ୍ରଥମ ଯାତ୍ରା ଥିଲା। ରେଳ ଷ୍ଟେସନକୁ ବାପା, ଭାଇ, ଭାଉଜ ଓ ଅଜା ଆସି ତାଙ୍କୁ ବଳାଇଦେଇଥିଲେ। ନିର୍ଲିପ୍ତ 'ମେଡ୍ ଇଜି' କୋଚିଂ ସେଣ୍ଟରର ଦିଲ୍ଲୀ କେନ୍ଦ୍ର (କାଲୁ ସରାଇ)ରେ ନାମଲେଖାଇଥିଲେ। ସେ କଓ୍ୱାରିଆ ସରାଇଠାରେ ଏକ ଘର ଭଡ଼ା ନେଇ ରହିଥିଲେ। ୨୦୦୯-୨୦୧୦ ଶିକ୍ଷାବର୍ଷ ଓ ତା'ପର ସମୟ ସେ ସେଠାରେ କଟାଇଥିଲେ।

କାଲି ପରି ମନେପଡୁଛି, ଅଖିଳ ଭାରତୀୟ ରାଷ୍ଟ୍ରୀୟ ଶୈକ୍ଷିକ ମହାସଂଘ (ଏ.ବି.ଆର୍.ଏସ୍.ଏମ୍.)ର ରାଷ୍ଟ୍ରୀୟ କାର୍ଯ୍ୟକାରିଣୀ ବୈଠକ ୨୦୧୦ ଜୁନ୍ ୧୨ ଓ ୧୩ରେ ହିମାଚଳ ପ୍ରଦେଶର ସିମଲାଠାରେ ବସିଥିଲା। ଓଡ଼ିଶାରୁ ମୁଁ, ଅଧ୍ୟାପକ ନାରାୟଣ ମହାନ୍ତି, ଡକ୍ଟର ପବିତ୍ର କୁମାର ରଥ, ଶ୍ରୀ ଦେବରାଜ ସାହୁ ପ୍ରମୁଖ ଏଥିରେ ଯୋଗଦେଇଥିଲୁ। ୧୪ ତାରିଖରେ ସିମଳା ବୁଲି ୧୫ ତାରିଖ ସକାଳେ କାଲ୍‌କା-ନୂଆଦିଲ୍ଲୀ ଶତାବ୍ଦୀ ଏକ୍ସପ୍ରେସ ଧରିଥିଲୁ। ପୂର୍ବାହ୍ନରେ ନୂଆଦିଲ୍ଲୀ ଷ୍ଟେସନରେ ଓହ୍ଲାଇଲାବେଳକୁ ନିର୍ଲିପ୍ତ ସେଠାରେ ପହଞ୍ଚିଯାଇଥିଲେ। ସେ, ମୁଁ ଓ ଶ୍ରୀ ମହାନ୍ତି ତାଙ୍କ ବସାକୁ ଏକ ଅଟୋରିକ୍ସାରେ ଯାଇଥିଲୁ। ସେଠାରେ ଚାହା ପିଇ ନିତ୍ୟକର୍ମ ସାରିଲାବେଳକୁ ନିର୍ଲିପ୍ତ ମଧ୍ୟାହ୍ନ ଭୋଜନ ପ୍ରସ୍ତୁତ କରିଦେଇଥିଲେ। ତାଙ୍କଦ୍ୱାରା ପ୍ରସ୍ତୁତ ମଧ୍ୟାହ୍ନ ଭୋଜନ ଏତେ ସୁସ୍ୱାଦୁ ଥିଲା ଯେ, ତାହା ଆଜି ପର୍ଯ୍ୟନ୍ତ ମନେରହିଛି। ବିଶ୍ରାମ ପରେ ସନ୍ଧ୍ୟାରେ ନିର୍ଲିପ୍ତ ପକୁଡ଼ି ଓ ଚାହା ତିଆରି କରି ଆମକୁ ଦେଇଥିଲେ। ତା'ପରେ ଅଟୋଷ୍ଟାଣ୍ଡ ଯାଏ ଆସି ଆମକୁ ଅଟୋରିକ୍ସାରେ ବସାଇଦେଇଥିଲେ। ଆମେ ତହିଁରେ ଷ୍ଟେସନକୁ ଆସି ରାତି ୧୦ଟା ୨୦ରେ ପୁରୁଷୋତ୍ତମ ଏକ୍ସପ୍ରେସ ଧରିଥିଲୁ। ପ୍ରକୃତରେ ସେ ଦିନର ଅନୁଭୂତି ଭୁଲିବାର ନୁହେଁ।

ନିର୍ଲିପ୍ତ ପି.ଜି. ଡିପ୍ଲୋମା ଇନ୍ ଇଣ୍ଡଷ୍ଟ୍ରିଆଲ ଅଟୋମେସନ ସିଷ୍ଟମ ଡିଜାଇନକୁ ଉପାଦେୟ ମଣି ତାହା ପଢ଼ିବାକୁ ସ୍ଥିର କରିଥିଲେ। ସେ କେରଳର କାଲିକଟଠାରେ ଅବସ୍ଥିତ ନେସ୍‌ନାଲ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଇଲେକ୍‌ଟ୍ରୋନିକ୍ସ ଏଣ୍ଡ ଇନଫର୍ମେସନ ଟେକ୍ନୋଲୋଜି (ଏନ୍.ଆଇ.ଇ.ଏଲ୍.ଆଇ.ଟି.)ରେ ଏହି ପାଠ୍ୟକ୍ରମରେ ନାମ ଲେଖାଇଥିଲେ। ଭାରତ ସରକାରଙ୍କ ମିନିଷ୍ଟ୍ରି ଅଫ୍ କମ୍ୟୁନିକେସନ୍ସ ଏଣ୍ଡ ଇନ୍‌ଫର୍ମେସନ ଟେକ୍ନୋଲୋଜି ଅଧୀନ ଉକ୍ତ ସଂସ୍ଥାରେ ସେ ତା୧୪।୦୯।୨୦୧୦ରିଖଠାରୁ ତା୧୧।୦୩।୨୦୧୧ରିଖ ପର୍ଯ୍ୟନ୍ତ ଛଅମାସ ପଢ଼ି ପି.ଜି. ଡିପ୍ଲୋମା ହାସଲ କରିଥିଲେ। ପରୀକ୍ଷାରେ ସେ ଶତକଡ଼ା ୭୫.୫ ନମ୍ବର ରଖିଥିଲେ। ଏହି ସମୟରେ ସେ ହଷ୍ଟେଲରେ ରହୁଥିଲେ।

ଗ୍ରାଜୁଏଟ୍ ଆପ୍‌ଟିଚ୍ୟୁଡ୍ ଟେଷ୍ଟ ଇନ୍ ଇଞ୍ଜିନିୟରିଂ (ଗେଟ୍) ୨୦୧୧ରେ ନିର୍ଲିପ୍ତ ସଫଳତା ହାସଲ କରିଥିଲେ। ପିତା ଅଧ୍ୟାପକ ମହାନ୍ତି ତା୧୫।୦୩। ୨୦୧୧ରିଖରେ ଏହି ଖବର ପାଇ ଖୁସି ହୋଇଥିଲେ। ଉକ୍ତ ଦିନ ସକାଳେ ସେ ଉଚ୍ଚ ମାଧ୍ୟମିକ (ଯୁକ୍ତ ଦୁଇ) ପରୀକ୍ଷା ତଦାରଖ କରିବା ପାଇଁ 'ଫ୍ଲାଇଂ ସ୍କ୍ୱାର୍ଡ଼'ରେ ସହକର୍ମୀ ପ୍ରାଧ୍ୟାପିକା ଶ୍ରୀମତୀ ସରୋଜିନୀ ସାହୁଙ୍କ ସହ ଜେ.କେ.ବି.କେ. କଲେଜରୁ

ବାହାରିଥିଲେ । ଟ୍ୟାକ୍ସିରେ କିଶୋରନଗର କଲେଜକୁ ଯିବା ବାଟରେ ସେ ଏହି ଖବର ପାଇଥିଲେ । ଏହା ତାଙ୍କ ପାଇଁ ଏକ ସ୍ମରଣୀୟ ଦିନ ଥିଲା । 'ଗେଟ୍'ରେ ନିର୍ଲିପ୍ତଙ୍କର ପେପର ଇନ୍‌ଷ୍ଟ୍ରୁମେଣ୍ଟେସନ ଇଞ୍ଜିନିୟରିଂ ଥିଲା । ଏଥିରେ ୧୮,୪୫୬ ପରୀକ୍ଷାର୍ଥୀଙ୍କ ମଧ୍ୟରୁ ତାଙ୍କର ର୍ୟାଙ୍କ ୭୧୪ ଥିଲା । ଯୋଗ୍ୟକାରୀ ଅଙ୍କ (କ୍ୱାଲିଫାଇଂ ମାର୍କ) ୨୫ ଥିବାବେଳେ ସେ ୨୭.୩୩ ମାର୍କ ରଖିଥିଲେ ଏବଂ ତାଙ୍କର 'ଗେଟ୍ ସ୍କୋର' ୪୫୮ ଥିଲା ।

ଗେଟ୍-୨୦୧୧ରେ ଯୋଗ୍ୟ ବିବେଚିତ ହୋଇ ନିର୍ଲିପ୍ତ ଭାରତର ସୁପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନ କଲେଜ ଅଫ୍ ଇଞ୍ଜିନିୟରିଂ, ପୁନେ (ସି.ଓ.ଇ.ପି.)ରେ ଏମ୍.ଟେକ୍. ପଢ଼ିଥିଲେ । ଦେଶର ଦ୍ୱିତୀୟ ଇଞ୍ଜିନିୟରିଂ କଲେଜ ଭାବରେ ଏହାର ପ୍ରସିଦ୍ଧି ରହିଛି । ନିର୍ଲିପ୍ତ ଏମ୍.ଟେକ୍.ରେ ଇନ୍‌ଷ୍ଟ୍ରୁମେଣ୍ଟେସନ ଏଣ୍ଡ କଣ୍ଟ୍ରୋଲ ଇଞ୍ଜିନିୟରିଂ ବିଷୟ ରଖିଥିଲେ । ସେ ଅନ୍ଦ ଗାଆଁଠାରେ ଶ୍ରୀ ରତ୍ନାକର ରଘୁନାଥ ଖୋଣ୍ଡଙ୍କ ଘର ଭଡ଼ା ନେଇ ରହୁଥିଲେ । ସେ ୨୦୧୩ରେ ସି.ଜି.ପି.ଏ. ୭.୩୦ ରଖି ଏମ୍.ଟେକ୍. ପାସ କରିଥିଲେ ।

ପୁଣେର ପ୍ରସିଦ୍ଧ ଡି.ୱାଇ. ପଟିଲ କଲେଜ ଅଫ୍ ଇଞ୍ଜିନିୟରିଂରେ ଆସିଷ୍ଟାଣ୍ଟ ପ୍ରଫେସର ଭାବେ ନିଯୁକ୍ତି ପାଇଁ ସେ ଦରଖାସ୍ତ କରିଥିଲେ । ସାକ୍ଷାତ୍‌କାରରେ ଉତ୍ତୀର୍ଣ୍ଣ ହୋଇ ସେ ଇନ୍‌ଷ୍ଟ୍ରୁମେଣ୍ଟେସନ ଏଣ୍ଡ କଣ୍ଟ୍ରୋଲ ଇଞ୍ଜିନିୟରିଂ ବିଭାଗରେ ଆସିଷ୍ଟାଣ୍ଟ ପ୍ରଫେସର ରୂପେ ନିଯୁକ୍ତି ପାଇଲେ । ୨୦୧୩ ଜୁନ୍ ୨୪ରେ ତହିଁରେ ଯୋଗଦେଇ ସେ କର୍ମମୟ ଜୀବନ ଆରମ୍ଭ କଲେ । "ଏମ୍.ଟେକ୍. ପଢ଼ିବା ସାର୍ଥକ ହେଲା", କହି ପିତା ଅବଶ୍ୟ ଖୁସି ହୋଇଥିଲେ । ଏବେ ଶ୍ରଦ୍ଧେୟ ନିର୍ଲିପ୍ତ ସେଠାରେ କାର୍ଯ୍ୟରତ ଅଛନ୍ତି । ସେ ୱାଲେକରୱାଡ଼ିଠାରେ ଘର ଭଡ଼ା ନେଇ ରହୁଛନ୍ତି । ପିତା ଅଧ୍ୟାପକ ମହାନ୍ତି ନିୟମିତ ଭାବେ ତାଙ୍କ ପାଖକୁ ଯା-ଆସ କରୁଛନ୍ତି ।

ମନେପଡ଼େ, ୨୦୧୪ ମଇ ୨୦ ତାରିଖରେ ଅଧ୍ୟାପକ ମହାନ୍ତି ଓ ମୁଁ ଭୁବନେଶ୍ୱର ରେଳ ଷ୍ଟେସନରୁ ଭୁବନେଶ୍ୱର-ପୁନେ ଏକ୍ସପ୍ରେସ (ସାପ୍ତାହିକ) ଯୋଗେ ପୁନେ ଅଭିମୁଖେ ବାହାରିଥିଲୁ । ୨୨ ତାରିଖ ସକାଳ ୫ଟାରେ ଟ୍ରେନ ପୁନେ ଷ୍ଟେସନରେ ପହଞ୍ଚିଥିଲା । ଟ୍ରେନ ପହଞ୍ଚିଲାବେଳକୁ ଶ୍ରଦ୍ଧେୟ ନିର୍ଲିପ୍ତ ସେଠାକୁ ଆସିଯାଇଥିଲେ । ଟ୍ୟାକ୍ସି ଯୋଗେ ଆମେ ତିନିହେଁ ତାଙ୍କ ବସାକୁ ଆସିଥିଲୁ । ସେ ଦିନ ବିଶ୍ରାମ ନେଇ ତା' ପରଦିନ ଅର୍ଥାତ୍ ୨୩ ତାରିଖ ଭୋର ୪ଟା ୩୦ରେ ମୁଁ, ଶ୍ରୀ ମହାନ୍ତି ଓ ନିର୍ଲିପ୍ତ ଟ୍ୟାକ୍ସି ଯୋଗେ ଶିରିଡ଼ି ଅଭିମୁଖେ ବାହାରିଥିଲୁ । ସେଠାରେ ପହଞ୍ଚି ଧାଡ଼ିରେ ଯାଇ ସାଇବାବାଙ୍କର ଦର୍ଶନ କରିଥିଲୁ । ଫେରିବା ବାଟରେ ଶନିସିଙ୍ଗାପୁରଠାରେ ମହାରାଜ

ଶନିଙ୍କର ଦର୍ଶନ କରିଥିଲୁ। ସନ୍ଧ୍ୟା ସୁଦ୍ଧା ବସାକୁ ଫେରିଆସିଥିଲୁ। ୨୪ ଓ ୨୫ ତାରିଖ ନିର୍ଲିପ୍ତଙ୍କ ବସାରେ ବିତାଇଥିଲୁ। ସେ ଦୈନିକ ସକାଳେ ଆମ ପାଇଁ ବଜାରରୁ ଜଳଖିଆ ଆଣିଦେଉଥିଲେ। ମାତ୍ର ମଧ୍ୟାହ୍ନରେ ଓ ରାତିରେ ନିଜେ ରୋଷେଇ କରି ଆମକୁ ଖାଇବାକୁ ଦେଉଥିଲେ। ଏଣେ କଲେଜ କାମ, ତେଣେ ରୋଷେଇ- ନିର୍ଲିପ୍ତ ଧନ୍ଦି ହୋଇଯାଉଥିଲେ। ମାତ୍ର ବାପା ହୋଟେଲରେ ଖାଇବେ - ଏହା ସେ ଚାହୁଁ ନଥିଲେ। ନିର୍ଲିପ୍ତଙ୍କ ପାଖରେ ବିତିଥିବା ସେହି ଦିନଗୁଡ଼ିକ ଚିରକାଳ ପାଇଁ ମନେରହିଛି। ୨୬ ତାରିଖ ସକାଳେ ମୁଁ ଓ ଶ୍ରୀ ମହାନ୍ତି ପୁନେ ରେଳ ଷ୍ଟେସନରୁ ପୁନେ-ସିକନ୍ଦରାବାଦ ଶତାବ୍ଦୀ ଏକ୍ସପ୍ରେସ ଧରିଥିଲୁ। ଶ୍ରଦ୍ଧେୟ ନିର୍ଲିପ୍ତ ଆମକୁ ଟ୍ୟାକ୍ସିରେ ଆଣି ପୁନେ ଷ୍ଟେସନରେ ଛାଡ଼ିଥିଲେ। ସିକନ୍ଦରାବାଦରୁ ବିଶାଖା ଏକ୍ସପ୍ରେସ ଧରି ୨୭ ତାରିଖ ଅପରାହ୍ନରେ ଆମେ ଭୁବନେଶ୍ୱରରେ ପହଞ୍ଚିଥିଲୁ। ଆମକୁ ସେଠାରୁ କଟକ ନେବାକୁ ନିହାର କାର୍ ନେଇ ଆସି ଅପେକ୍ଷା କରିଥିଲେ।

ଶ୍ରଦ୍ଧେୟ ନିର୍ଲିପ୍ତଙ୍କର ବିବାହ ୨୦୧୫ ଡିସେମ୍ବର ୧୩ରେ କଟକ ସହରର ପ୍ରଫେସରପଡ଼ା ନିବାସୀ ଶ୍ରୀ ବିରଞ୍ଚି ନାରାୟଣ କାନୁନ୍‌ଗୋ ଓ ଶ୍ରୀମତୀ ସୁପ୍ରୀତି କାନୁନ୍‌ଗୋଙ୍କ ଜ୍ୟେଷ୍ଠାକନ୍ୟା ଆୟୁଷ୍ମତୀ ଶ୍ରୁତି (ମାମୁନି)ଙ୍କ ସହିତ ସମ୍ପନ୍ନ ହୋଇଥିଲା। ଅଧ୍ୟାପକ ମହାନ୍ତିଙ୍କ ସାନଭାଇ ଡକ୍ଟର ପତିତପାବନ ମହାନ୍ତି ଏହି ବିବାହ ପ୍ରସ୍ତାବ ପକାଇଥିଲେ। ବିବାହରେ ନିର୍ଲିପ୍ତଙ୍କର ସାନମାମୁ ଶ୍ରୀ ସୁବ୍ରତ କୁମାର ଦାସ କର୍ତ୍ତା ହୋଇଥିଲେ। ପରିବାରର ପ୍ରଥା ଅନୁସାରେ ବିବାହ ପରେ ନିର୍ଲିପ୍ତ ଓ ଶ୍ରୁତି ପୁରୀ ଯାଇ ଶ୍ରୀଜଗନ୍ନାଥଙ୍କର ଦର୍ଶନ କରିଥିଲେ। ଶ୍ରୀ ମହାନ୍ତିଙ୍କର ବନ୍ଧୁ ଶ୍ରୀ ଦେବୀ ପ୍ରସାଦ ଦାସ ଓ ତାଙ୍କ ଧର୍ମପତ୍ନୀ ଶ୍ରୀମତୀ ପ୍ରଭାତୀ ଦାସ ସେମାନଙ୍କୁ ନେଇ ପୁରୀ ଯାଇଥିଲେ। ଶ୍ରୁତି (ମାମୁନି) ଇଣ୍ଡିଆନ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍ନୋଲୋଜି (ଆଇ.ଆଇ.ଟି.), କାନପୁରର ହ୍ୟୁମାନିଟିଜ ଏଣ୍ଡ ସୋସିଆଲ ସାଇନ୍‌ସେସ୍ ବିଭାଗରେ ରିସର୍ଚ୍ଚ ସ୍କଲାର ଅଛନ୍ତି। ପିଏଚ୍.ଡି. ଡିଗ୍ରୀ ପାଇବା ପାଇଁ ସେ ଗବେଷଣା କରୁଛନ୍ତି। ସେ ୨୦୧୩ରେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ହାଇଦ୍ରାବାଦରୁ ସମାଜବିଜ୍ଞାନରେ ସ୍ନାତକୋତ୍ତର ଉପାଧି ଲାଭ କରିଥିଲେ। ଦୁଇ ପରିବାର ମଧ୍ୟରେ ଦୀର୍ଘଦିନ ହେଲା ସମ୍ପର୍କ ରହିଆସିଛି। ଶ୍ରୀ ବିରଞ୍ଚି ନାରାୟଣ କାନୁନ୍‌ଗୋ ଓ ଅଧ୍ୟାପକ ମହାନ୍ତିଙ୍କର ସାନଭାଇ ଶ୍ରୀ ଅଶୋକ କୁମାର ମହାନ୍ତି ସାଙ୍ଗ ହୋଇ ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲରେ ଅଧ୍ୟୟନ କରୁଥିଲେ। ୧୯୭୫ରେ ମାଟ୍ରିକ ପାସ କରି ସେମାନେ ରେଭେନ୍‌ସା କଲେଜରେ ବାଣିଜ୍ୟ ପଢ଼ିଥିଲେ ଏବଂ ୧୯୭୯ରେ ବି.କମ୍. ପାସ କରିଥିଲେ। ସ୍କୁଲରେ ପଢ଼ିବା ଦିନଠାରୁ

ସେମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ରହିଆସିଛି। ଏବେ ଶ୍ରୀ ମହାନ୍ତି ରାଷ୍ଟ୍ରୀୟ ପୁନର୍ବାସ ପ୍ରଶିକ୍ଷଣ ଓ ଅନୁସନ୍ଧାନ ସଂସ୍ଥା (ନିର୍‌ତାର)ରେ ସହକାରୀ ବାଣିଜ୍ୟିକ ଅଧିକାରୀ (କ୍ରୟ) ଏବଂ ଶ୍ରୀ କାନୁନ୍‌ଗୋ ସିନର୍ଜି ଇଷ୍ଟିଚ୍ୟୁଟ ଅଫ୍ ଇଞ୍ଜିନିୟରିଂ ଏଣ୍ଡ ଟେକ୍ନୋଲୋଜିରେ ପ୍ରଶାସନିକ ଅଧିକାରୀ ଅଛନ୍ତି।

ସେବାପରାୟଣ ମନୋଭାବ ଯୋଗୁ ନିର୍ଲିପ୍ତ ପରିବାରରେ ତଥା ବାହାରେ ଆଦୃତ ହୋଇଛନ୍ତି। ଅସୁସ୍ଥ ଥିବା ତାଙ୍କର ବଡ଼ଦାଦା ଆଡ଼ଭୋକେଟ ଶ୍ରୀ ଦେବଦତ୍ତ ମହାନ୍ତିଙ୍କ ଚିକିତ୍ସା ପାଇଁ ସେ ତାଙ୍କ ସହ ଏମ୍‌ସ, ନୂଆଦିଲ୍ଲୀ ଓ କିମ୍‌ସ ହସ୍ପିଟାଲ, ସିକନ୍ଦରାବାଦକୁ ଯାଇଛନ୍ତି। କଟକରେ ପହଞ୍ଚିଲେ ନିର୍ଲିପ୍ତ ପ୍ରଥମେ ନଦିଆ ନିବାସକୁ ଯାଇ ବଡ଼ଦାଦାଙ୍କୁ ଦେଖା କରିଥା'ନ୍ତି।

ଶ୍ରଦ୍ଧେୟା ଶ୍ରୁତି (ମାମୁନି) ତାଙ୍କର ପିଏଚ୍.ଡି. କାମ ସାରି ଶୀଘ୍ର ନିର୍ଲିପ୍ତଙ୍କ ସହ ପୁଣେରେ ଏକାଠି ରୁହନ୍ତୁ– ଏହା ମୁଁ ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଛି।

(ଘ)

ଅଧ୍ୟାପିକା ନୀହାରିକା ଦାସଙ୍କର ମୃତ୍ୟୁ ୧୯୯୪ ଡିସେମ୍ବର ୧୪ରେ ହୋଇଥିଲା ଏବଂ ସେତେବେଳକୁ ସ୍ୱାମୀ ଅଧ୍ୟାପକ ନାରାୟଣ ମହାନ୍ତି ଢେଙ୍କାନାଳ ମହିଳା ମହାବିଦ୍ୟାଳୟ, ଢେଙ୍କାନାଳରେ କାର୍ଯ୍ୟରତ ଥିଲେ। ମୃତ୍ୟୁର ତିନିବର୍ଷ ନପୂରୁଣୁ ରାଜ୍ୟ ସରକାର ତାଙ୍କୁ ସେଠାରୁ ଧରଣୀଧର କଲେଜ, କେନ୍ଦୁଝରକୁ ବଦଳି କରିଦେଲେ। ୧୯୯୭ ଅଗଷ୍ଟ ୬ରେ ଏହି ବଦଳି ସଂକ୍ରାନ୍ତ ଅଫିସ ଅର୍ଡ଼ର (ସଂଖ୍ୟା-୪୧୪୧୧) ପ୍ରକାଶ ପାଇଥିଲା। ତା'ର ପ୍ରାୟ ଦେଢ଼ମାସ ପରେ ଅର୍ଥାତ୍ ତା।୧୯।୦୯।୧୯୯୭ରିଖରେ ଅଧ୍ୟକ୍ଷ ତାଙ୍କୁ ଭାରମୁକ୍ତ (ରିଲିଭ) କରିଦେଇଥିଲେ। ୫୩ ଦିନ ଚିକିତ୍ସା ଛୁଟି ବା ମେଡ଼ିକାଲ ଲିଭ୍‌ରେ ରହିଲା ପରେ ସେ ତା।୧୧।୧୧।୧୯୯୭ରିଖରେ ଧରଣୀଧର କଲେଜ, କେନ୍ଦୁଝରରେ ଯୋଗଦେଲେ।

୧୯୯୮ ମସିହା ଜାନୁଆରୀ ମାସ ୯ ତାରିଖ ଅଧ୍ୟାପକ ମହାନ୍ତିଙ୍କ ବିପତ୍ନୀକ ଜୀବନର ସବୁଠାରୁ ବଡ଼ ଦୁର୍ଦ୍ଦିନ ଥିଲା। ସେ ଦିନ ସନ୍ଧ୍ୟାରେ ଉଚ୍ଚଶିକ୍ଷା ନିର୍ଦ୍ଦେଶକଙ୍କର ସ୍ପେଶାଲ ମାସେଞ୍ଜର ତାଙ୍କ ଉପରେ ନିଲମ୍ବନ (ସସ୍‌ପେନ୍‌ସନ) ଆଦେଶ ଜାରି କରିଥିଲେ। ଅଧ୍ୟକ୍ଷଙ୍କ କ୍ୱାଟର୍ସରେ ବରିଷ୍ଠ ଶିକ୍ଷକ ଓ ଅଣଶିକ୍ଷକ କର୍ମଚାରୀମାନଙ୍କ ଉପସ୍ଥିତିରେ ଏ ସଂକ୍ରାନ୍ତ ସରକାରୀ ବିଜ୍ଞପ୍ତି ସେ ଗ୍ରହଣ

କରିଥିଲେ। ତହିଁରେ କିନ୍ତୁ ନିଲମ୍ବନର କାରଣ ଉଲ୍ଲେଖ ନଥିଲା। ଖାଲି ଲେଖାଥିଲା, "Sir Narayan Prasad Mohanty.... is hereby placed under suspension with immediate effect pending drawal of disciplinary proceedings against him. His headquarters is fixed at Keonjhar during the period of suspension." ଏହି ବିଜ୍ଞପ୍ତି (ସଂଖ୍ୟା-୬୫୩୫୮)ରେ ପ୍ରାୟ ଦୁଇମାସ ତଳର ତାରିଖ ଅର୍ଥାତ୍ ତା୧୧।୧୧।୧୯୯୭ରିଖ ଉଲ୍ଲେଖ ଥିଲା।

ସେ ସମୟରେ କୌଣସି ଅଧ୍ୟାପକଙ୍କୁ ନିଲମ୍ବନ ବା ସସ୍‌ପେଣ୍ଡ କରିବା ଏକ ବିରଳ ଘଟଣା ଥିଲା। ତେଣୁ ଶ୍ରୀ ମହାନ୍ତିଙ୍କର ନିଲମ୍ବନ ଖବର ବିଦ୍ୟୁତ୍ ବେଗରେ ବ୍ୟାପୀଯାଇଥିଲା। ଏହା ସମଗ୍ର ଉଚ୍ଚଶିକ୍ଷା କ୍ଷେତ୍ରକୁ ସ୍ତବ୍ଧ କରିଦେଇଥିଲା। ଏହି କ୍ଷେତ୍ରରେ କାର୍ଯ୍ୟରତ ଶିକ୍ଷକ ଓ ଅଣଶିକ୍ଷକ କର୍ମଚାରୀମାନେ କିନ୍ତୁ ଘଟଣାର ପ୍ରଚ୍ଛଦପଟରେ ଥିବା ଖଳନାୟକଙ୍କୁ ଜାଣିପାରିଥିଲେ।

ଚାକିରିରୁ ନିଲମ୍ବନ ହେବାପରେ ଅଧ୍ୟାପକ ମହାନ୍ତିଙ୍କର ମାନସିକ ସ୍ଥିତି କିପରି ଥିବ, ତାହା ଲେଖିବାର ଆବଶ୍ୟକତା ନାହିଁ। ଏତିକିବେଳେ ବରିଷ୍ଠ ସାମ୍ବାଦିକ ଶ୍ରୀ ଅରୁଣ କୁମାର ପଣ୍ଡା ସାହାଯ୍ୟର ହସ୍ତ ପ୍ରସାରଣ କରିଥିଲେ। ଖାସ୍ ଶ୍ରୀ ପଣ୍ଡାଙ୍କ ପ୍ରଚେଷ୍ଟା ଯୋଗୁଁ ହିଁ ଶ୍ରୀ ମହାନ୍ତି ଚାକିରିରେ ପୁନଃସ୍ଥାପିତ (re-instate) ହୋଇଥିଲେ। ରାଜ୍ୟ ସରକାର ତା୧୯।୦୨।୧୯୯୮ରିଖରେ ବିଜ୍ଞପ୍ତି ସଂଖ୍ୟା-୭୬୫୪ ଯୋଗେ ତାଙ୍କୁ ପୁନଃସ୍ଥାପିତ କରାଇଥିଲେ। ବାସ୍ତବରେ ମୋଟ୍ ୪୦ ଦିନ ତାଙ୍କୁ ନିଲମ୍ବିତ ହୋଇ ରହିବାକୁ ପଡ଼ିଥିଲା। ପୁନଃସ୍ଥାପିତ ହେଲାପରେ ଏକ ଦୁଃଖଦ ଅଧ୍ୟାୟରେ ପୂର୍ଣ୍ଣଚ୍ଛେଦ ପଡ଼ିଲା ବୋଲି ସେ ଧରିନେଇଥିଲେ।

ଏଠାରେ କିନ୍ତୁ କାଳରାତ୍ରିର ଯବନିକା ପଡ଼ିନଥିଲା; ସେହି ଦୁଃଖଦ ଅଧ୍ୟାୟର ଏହା ଏକ ବିରତି ମାତ୍ର ଥିଲା। ଗ୍ରୀଷ୍ମ ଅବକାଶ ପରେ ଜୁଲାଇ ୧୩ରେ କଲେଜ ଖୋଲିଥିଲା। ସେ ଦିନ ଅଧ୍ୟାପକ ମହାନ୍ତି ସରକାର ତାଙ୍କ ବିରୋଧରେ ପ୍ରସ୍ତୁତ କରିଥିବା ଦୋଷାରୋପ ଫର୍ଦ୍ଦ (Article of Charges) ପ୍ରାପ୍ତ ହୋଇଥିଲେ। ଜୁନ୍ ୨ ତାରିଖରେ ଅର୍ଥାତ୍ ପୁନଃସ୍ଥାପନ କରିବାର ସାଢ଼େତିନିମାସ ପରେ ସରକାର ଅଭିଯୋଗ ବା ଦୋଷାରୋପ ଫର୍ଦ୍ଦ ପ୍ରସ୍ତୁତ କରିଥିଲେ। ତାଙ୍କ ବିରୋଧରେ ୩ଟି ଅଭିଯୋଗ ଆଗତ କରାଯାଇଥିଲା। ପ୍ରଥମ ଅଭିଯୋଗ ଥିଲା ଯେ, ଢେଙ୍କାନାଳ ମହିଳା ମହାବିଦ୍ୟାଳୟରୁ ଭାରମୁକ୍ତ ହେବା ପରେ ସେ

କେନ୍ଦୁଝରର ଧରଣୀଧର କଲେଜରେ ଶୀଘ୍ର ଯୋଗଦେଇ ନଥିଲେ। (But he did not join D.D. College, Keonjhar soon after being relieved from Dhenkanal Mahila Mahavidyalaya.) ଦ୍ୱିତୀୟ ଅଭିଯୋଗ ଥିଲା, ସେ ଧରଣୀଧର କଲେଜରେ ଯୋଗ ନଦେବା ଫଳରେ ତର୍କ ଓ ଦର୍ଶନ ବିଭାଗରେ ଶିକ୍ଷାଦାନ କାର୍ଯ୍ୟ ବାଧାପ୍ରାପ୍ତ ହୋଇଥିଲା ଏବଂ କଲେଜର ଛାତ୍ରମାନେ ଧର୍ମଘଟ କରିଥିଲେ। (As a result of non-joining of Sri N.P.Mohanty, there was dislocation in the teaching work in Logic and Philosophy Department of D.D. College, Keonjhar and the students of the college went on strike.) ତୃତୀୟ ଅଭିଯୋଗ ଥିଲା ଯେ, ଶ୍ରୀ ମହାନ୍ତି କଲେଜରେ ଥିବାବେଳେ ଅଧ୍ୟକ୍ଷ ଓ ତାଙ୍କ ସହକର୍ମୀମାନଙ୍କ ସହ ଖୁବ୍ ଅପମାନଦେବା ଢଙ୍ଗରେ ବ୍ୟବହାର କରିଥିଲେ (The said Sri N.P. Mohanty, while continuing in the college, behaved with the Principal and his colleagues in a very offending manner.)

ଏହି ଅଭିଯୋଗଗୁଡ଼ିକ ଖାଲି ଗୁରୁତ୍ୱହୀନ ନଥିଲା, ବରଂ ହାସ୍ୟାସ୍ପଦ ଥିଲା। ସାଧାରଣତଃ ବଦଳି ହୋଇଥିବା ସ୍ଥାନକୁ ଅନୁକୂଳ ନମଣିଲେ, ଅଧ୍ୟାପକମାନେ ରିଲିଭ ହେବାପରେ ମାସମାସ ଧରି ଛୁଟିରେ ରୁହନ୍ତି; ଶେଷରେ ବଦଳି ଆଦେଶକୁ ବାତିଲ କରାଇ ପସନ୍ଦଯୋଗ୍ୟ ସ୍ଥାନକୁ ନିଜନିଜର ବଦଳି କରାଇନିଅନ୍ତି। ମାତ୍ର ଅଧ୍ୟାପକ ମହାନ୍ତି ରିଲିଭ ହେବାପରେ ମାତ୍ର ୫୩ ଦିନ ଛୁଟିରେ ରହି ବଦଳି ହୋଇଥିବା ସ୍ଥାନରେ ହିଁ ଯୋଗଦେଇଥିଲେ। ତା' ସତ୍ତ୍ୱେ...

ଅଧ୍ୟାପକ ମହାନ୍ତିଙ୍କ ବିରୋଧରେ ଦୀର୍ଘଦିନ ଧରି ବିଭାଗୀୟ କାର୍ଯ୍ୟବିଧି (proceeding) ଚାଲିଥିଲା। ସେ ଖୁବ୍ ଘୋଷରା ହୋଇଥିଲେ; ଖୁବ୍ ଘାଣ୍ଟି ହୋଇଥିଲେ। ଶେଷରେ ବରିଷ୍ଠ ରାଜନୀତିଜ୍ଞ ଶ୍ରୀ ବିମ୍ବାଧର କୁଅଁର ସହାୟତାର ହସ୍ତ ପ୍ରସାରଣ କରିଥିଲେ। ଖାଲି ତାଙ୍କରି ଯୋଗୁଁ ଶ୍ରୀ ମହାନ୍ତିଙ୍କ ଜୀବନର ଏହି ଦୁଃଖ ଓ ଯନ୍ତ୍ରଣା ଜର୍ଜରିତ କାଳ ଆଉ ଅଧିକ ପ୍ରଲମ୍ବିତ ନହୋଇ ସମାପ୍ତି ଲାଭ କରିଥିଲା। ରାଜ୍ୟ ସରକାର ତାଙ୍କ ବିରୋଧରେ ଚାଲିଥିବା କାର୍ଯ୍ୟବିଧିକୁ ରଦ୍ଦ କରିଦେଇ ତାଙ୍କୁ ଦୋଷମୁକ୍ତ ଘୋଷଣା କରିଥିଲେ। ତାଙ୍କ ନିଲମ୍ବନ ଅବଧି (ତା୧୧।୧୧।୧୯୯୭ରିଖରୁ ତା୧୯।୦୭।୧୯୯୮ରିଖ)କୁ କର୍ତ୍ତବ୍ୟରତ ଥିବା ଦର୍ଶାଇଥିଲେ। ଏ ସଂକ୍ରାନ୍ତ ଅଫିସ ଅର୍ଡ଼ର (ସଂଖ୍ୟା ୬୦୮୬୫) ୨୦୦୩

ନଭେମ୍ବର ୧୭ରେ ପ୍ରକାଶ ପାଇଥିଲା। ଏଥି ସହିତ ଦୀର୍ଘ ପ୍ରାୟ ସାଢ଼େପାଞ୍ଚବର୍ଷ (ତା୦୨।୦୬।୧୯୯୮ରିଖରୁ ତା୧୭।୧୧।୨୦୦୩ରିଖ) ଧରି ଚାଲିଥିବା ବିଭାଗୀୟ କାର୍ଯ୍ୟବିଧିର ଅନ୍ତ ଘଟିଥିଲା। ଉଲ୍ଲେଖଯୋଗ୍ୟ ଯେ, ଶ୍ରୀ ମହାନ୍ତି ସରକାରୀ କଲେଜରେ ଅଧ୍ୟାପକ ହୋଇଥିବାରୁ ତାଙ୍କୁ ନିଲମ୍ବନ କରିବା ପାଇଁ ମୁଖ୍ୟମନ୍ତ୍ରୀଙ୍କର ଅନୁମୋଦନ ଅନିବାର୍ଯ୍ୟ ଥିଲା । ମାତ୍ର ଆଇନଗତ ପଦ୍ଧତିକୁ ଉଲ୍ଲଙ୍ଘନ କରି ମୁଖ୍ୟମନ୍ତ୍ରୀଙ୍କର ବିନା ଅନୁମୋଦନରେ ତାଙ୍କୁ ନିଲମ୍ବନ କରାଯାଇଥିଲା । ତେଣୁ ତାଙ୍କର ନିଲମ୍ବନ ସମ୍ପୂର୍ଣ୍ଣ ବେଆଇନ ଥିଲା । ସବାଶେଷରେ ଏକଥା ଜଣାପଡ଼ିଥିଲା ଏବଂ ଏଥି ସଙ୍ଗେସଙ୍ଗେ ଖଳନାୟକଙ୍କର ଷଡ଼ଯନ୍ତ୍ର ପଦାରେ ପଡ଼ିଥିଲା ।

କେନ୍ଦୁଝରର ଧରଣୀଧର କଲେଜରେ ୭ବର୍ଷ ୯ମାସ (ତା୧୧।୧୧। ୧୯୯୭ରିଖରୁ ତା୦୯।୦୮।୨୦୦୫ରିଖ) ରହିଲାପରେ ଅଧ୍ୟାପକ ମହାନ୍ତିଙ୍କର କଟକସ୍ଥିତ ଜାତୀୟ କବି ବୀରକିଶୋର (ଜେ.କେ.ବି.କେ.) କଲେଜକୁ ବଦଳି ହୋଇଥିଲା। ସେ ତା୧୦।୦୮।୨୦୦୫ରିଖରେ ଜେ.କେ.ବି.କେ. କଲେଜରେ ଯୋଗଦେଇ ଅବସର ନେଲା ପର୍ଯ୍ୟନ୍ତ ଏଠାରେ ରହିଥିଲେ। ତାଙ୍କ ଚାକିରି ଜୀବନର ସର୍ବାଧିକ କାଳ ୮ବର୍ଷ ୭ମାସ ସେ ଏହି କଲେଜରେ ବିତାଇଥିଲେ। ୨୦୧୪ ଫେବୃଆରୀ ୨୮ରେ ୫୮ବର୍ଷ ବୟସରେ ସେ ଚାକିରିରୁ ଅବସର ଗ୍ରହଣ କରିଥିଲେ। ଶ୍ରୀ ମହାନ୍ତିଙ୍କର ପ୍ରକୃତ ଜନ୍ମ ତାରିଖ ୨୮ ଫେବୃଆରୀ ୧୯୫୫ ଥିଲା। ସେହି ଅନୁସାରେ ହିସାବ ହୋଇଥିଲେ ସେ ବର୍ଷକ ଆଗରୁ ଅର୍ଥାତ୍ ୨୦୧୩ ଫେବୃଆରୀ ୨୮ରେ ଅବ୍ସର ନେଇଥାନ୍ତେ। ମାତ୍ର ସାର୍ଟିଫିକେଟରେ ଜନ୍ମ ତାରିଖ ୧୨ ଫେବୃଆରୀ ୧୯୫୬ ଉଲ୍ଲେଖ ଥିବାରୁ ସେ ତା୨୮।୦୨।୨୦୧୪ରିଖରେ ଅବସର ଗ୍ରହଣ କରିଥିଲେ। ଅବସର ନେଲାପରେ ଶ୍ରୀ ମହାନ୍ତି ମର୍କତନଗର (ସି.ଡି.ଏ.)ର ସେକ୍ଟର-୭ସ୍ଥିତ ବାସଭବନ 'ନୀହାରିକା'ରେ ଅବସ୍ଥାନ କରୁଛନ୍ତି।

ଏବେ ଆଲୋଚ୍ୟ ସମୟରେ ଅଧ୍ୟାପକ ନାରାୟଣ ମହାନ୍ତିଙ୍କର ବିଦ୍ୟାଗତ କୃତି ସମ୍ବନ୍ଧରେ ଉଲ୍ଲେଖ କରିବା ଉଚିତ ମନେକରୁଛି। ଡକ୍ଟର ଗୟାଧର ଦାସଙ୍କ ସହିତ ମିଶି ସେ ପ୍ରଣୟନ କରିଥିବା ତର୍କଶାସ୍ତ୍ର ପୁସ୍ତକଗୁଡ଼ିକ ଯୁକ୍ତଦୁଇ ଶ୍ରେଣୀର ଛାତ୍ରଛାତ୍ରୀଙ୍କ ମଧ୍ୟରେ ଆଦୃତି ଲାଭ କରିଛି। ଦୁହେଁ ଯୁକ୍ତଦୁଇ ୧ମବର୍ଷ ଛାତ୍ରଛାତ୍ରୀଙ୍କ ପାଇଁ ଇଂରାଜୀ ଓ ଓଡ଼ିଆରେ ଦୁଇଖଣ୍ଡ ଏବଂ ୨ୟବର୍ଷ

ଛାତ୍ରଛାତ୍ରୀଙ୍କ ପାଇଁ ସେହିପରି ଦୁଇଖଣ୍ଡ ପୁସ୍ତକ ରଚନା କରିଛନ୍ତି। ସେମାନଙ୍କ ରଚିତ ପ୍ରଥମ ପୁସ୍ତକ ୧୯୯୮ରେ ଆତ୍ମପ୍ରକାଶ କରିଥିଲା। ସମ୍ପ୍ରତି ଏହି ପୁସ୍ତକଗୁଡ଼ିକର ସପ୍ତମ ସଂସ୍କରଣ ପ୍ରକାଶିତ ହୋଇଛି। ଖ୍ୟାତନାମା ପ୍ରକାଶକ 'କିତାବ ମହଲ' ଏସବୁକୁ ପ୍ରକାଶ କରିଛନ୍ତି। ତହିଁର ସତ୍ତ୍ୱାଧିକାରୀ ତଥା ଶ୍ରୀ ମହାନ୍ତିଙ୍କର ପରମ ହିତୈଷୀ ଶ୍ରୀ ଚନ୍ଦ୍ରକାନ୍ତ ଖଣ୍ଡାଇ ତାଙ୍କୁ ଅବିରତ ପ୍ରେରଣା ଦେଇଆସିଛନ୍ତି।

ଅଧ୍ୟାପକ ମହାନ୍ତିଙ୍କ ପ୍ରଣୀତ Atomism of Maharsi Kanada ୨୦୧୩ରେ ଆତ୍ମପ୍ରକାଶ କରିଛି। ୪୬ ପୃଷ୍ଠାର ଏହି ମନୋଗ୍ରାଫ (Monograph)ର ମୂଲ୍ୟ ୨୦ଟଙ୍କା ରଖାଯାଇଛି। ଅଧ୍ୟାପିକା ନୀହାରିକା ଦାସ ସ୍ମୃତି ନ୍ୟାସ ତରଫରୁ ଏହାକୁ ପ୍ରକାଶ କରାଯାଇଛି। ଶ୍ରୀ ମହାନ୍ତିଙ୍କ ଦାଦା ସ୍ୱର୍ଗତ ଅଭୟ ଚରଣ ମହାନ୍ତି (୧୯୩୦-୨୦୧୫)ଙ୍କ ରଚିତ 'ମଲ୍ଲୀମହକ' ପୁସ୍ତକର ସେ ସମ୍ପାଦନା କରିଛନ୍ତି। ୮୩ ପୃଷ୍ଠାର ଏହି ପୁସ୍ତକର ମୂଲ୍ୟ ୩୦ଟଙ୍କା ଅଛି। ଅଧ୍ୟାପିକା ନୀହାରିକା ଦାସ ସ୍ମୃତି ନ୍ୟାସ ତରଫରୁ ୨୦୧୪ରେ ଏହାକୁ ପ୍ରକାଶ କରାଯାଇଛି। ଶ୍ରୀ ମହାନ୍ତିଙ୍କ ରଚିତ ରମ୍ୟ/ବ୍ୟଙ୍ଗ ଗଳ୍ପଗୁଡ଼ିକ ବିଭିନ୍ନ ଓଡ଼ିଆ ଖବରକାଗଜର ପୃଷ୍ଠା ମଣ୍ଡନ କରିଆସୁଛି। ତାଙ୍କର ପ୍ରଥମ ଲେଖା 'ସମ୍ବାଦ'ର ତା୧୪।୦୮।୨୦୦୪ରିଖ ସଂଖ୍ୟାରେ ପ୍ରକାଶ ପାଇଥିଲା। ତାଙ୍କର ଏଯାବତ୍ ପ୍ରକାଶିତ ବ୍ୟଙ୍ଗ ରଚନାର ସଂଖ୍ୟା ପ୍ରାୟ ୩୦ ହେବ। ଚାକିରିରୁ ଅବସର ନେଲାପରେ ସେ 'ଓଡ଼ିଶାରେ ଦର୍ଶନଶିକ୍ଷାର ଇତିହାସ' ରଚନାରେ ମନୋନିବେଶ କରିଛନ୍ତି।

ଅଧ୍ୟାପକ ମହାନ୍ତି ୨୦୦୬ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ହାସଲ କରିଛନ୍ତି। ସେ ଉକ୍ତ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଦର୍ଶନ ବିଭାଗର ପ୍ରଫେସର ଡକ୍ଟର ଗଣେଶ ପ୍ରସାଦ ଦାସଙ୍କ ଦିଗ୍‌ଦର୍ଶନରେ ଗବେଷଣା କରିଥିଲେ। ତାଙ୍କ ସନ୍ଦର୍ଭର ଶୀର୍ଷକ 'Philosophical Atomism: Indian and Western' ଥିଲା। ମୁଁ ଶ୍ରୀ ମହାନ୍ତିଙ୍କ ସହ ବାରମ୍ବାର ପ୍ରଫେସର ଦାସଙ୍କ ଭୁବନେଶ୍ୱରର ପାଇକନଗରସ୍ଥିତ ବାସଭବନକୁ ଯାଇଛି। ଗୁରୁ ଓ ଛାତ୍ରଙ୍କ ମଧ୍ୟରେ ଏବେ ବି ରହିଥିବା ଘନିଷ୍ଠ ତଥା ଆତ୍ମୀୟ ସମ୍ପର୍କ ମୋତେ ଅଭିଭୂତ କରିଛି।

ନିଖିଳ ଉତ୍କଳ ଦର୍ଶନ ପରିଷଦର ବିଂଶତିତମ ଅଧିବେଶନରେ ଅଧ୍ୟାପକ ମହାନ୍ତି ବିଭାଗୀୟ ସଭାପତି ହେବାର ଗୌରବ ଅର୍ଜନ କରିଥିଲେ। 'ଦର୍ଶନର

ଇତିହାସ' ବିଭାଗର ସଭାପତି ଭାବେ ସେ 'Atomism, Holism and their Ethical Fallout' ଶୀର୍ଷକ ନିବନ୍ଧ ପାଠ କରିଥିଲେ। ଏହି ଅଧିବେଶନ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଦର୍ଶନ ବିଭାଗରେ ୨୦୦୮ ଜାନୁଆରୀ ୨୦ ଓ ୨୧ରେ ଅନୁଷ୍ଠିତ ହୋଇଥିଲା। ଭାରତୀୟ ଦର୍ଶନ କଂଗ୍ରେସର ନବତିତମ ଅଧିବେଶନରେ ମଧ୍ୟ ଶ୍ରୀ ମହାନ୍ତି ଅନୁରୂପ ଗୌରବ ହାସଲ କରିଥିଲେ। ଏହି ଅଧିବେଶନ ମଗଧ ବିଶ୍ୱବିଦ୍ୟାଳୟ, ବୋଧଗୟାଠାରେ ୨୦୧୬ ଫେବୃଆରୀ ୧ ତାରିଖଠାରୁ ୪ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା। ସେ 'ଦର୍ଶନର ଇତିହାସ' ବିଭାଗରେ ବିଭାଗୀୟ ସଭାପତି ଆସନ ଅଳଂକୃତ କରିଥିଲେ ଏବଂ 'Atomism of Maharsi Kanada' ଶୀର୍ଷକ ପ୍ରବନ୍ଧ ପାଠ କରିଥିଲେ।

ସୁସଙ୍ଗଠକ ରୂପେ ବିଦିତ ଅଧ୍ୟାପକ ନାରାୟଣ ମହାନ୍ତିଙ୍କର ସାଙ୍ଗଠନିକ କାର୍ଯ୍ୟାବଳୀ ସଂପର୍କରେ ଏଠାରେ ଉଲ୍ଲେଖ କରୁଛି । ପତ୍ନୀ ଅଧ୍ୟାପିକା ଦାସଙ୍କ ଜୀବଦ୍ଦଶା ମଧ୍ୟରେ ତା୦୨/୦୨/୧୯୮୬ରିଖଠାରୁ ତା୧୭/୦୪/୧୯୮୮ରିଖ ପର୍ଯ୍ୟନ୍ତ ସେ ଓଡ଼ିଶା ସରକାରୀ କଲେଜ ଶିକ୍ଷକ ସଂଘ (ଓ.ଜି.ସି.ଟି.ଏ.)ର ଯୁଗ୍ମସମ୍ପାଦକ ଥିଲେ। ୨୦୦୦ ସେପ୍ଟେମ୍ବର ୧୦ରେ କେନ୍ଦୁଝରର ଧରଣୀଧର କଲେଜଠାରେ ଅନୁଷ୍ଠିତ ସଂଘର ବାର୍ଷିକ ଅଧିବେଶନରେ ସେ ସାଧାରଣ ସମ୍ପାଦକ ରୂପେ ନିର୍ବାଚିତ ହୋଇଥିଲେ । ଖୁବ୍ ପ୍ରତିଦ୍ୱନ୍ଦ୍ୱିତାମୂଳକ ଏହି ପରୋକ୍ଷ ନିର୍ବାଚନରେ ସେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀଙ୍କଠାରୁ ଯଥେଷ୍ଟ ଅଧିକ ଭୋଟ ପାଇ ନିର୍ବାଚନ ଜିତିଥିଲେ । ଏଥିରେ ଶ୍ରୀ ଦିନେଶ ପ୍ରସାଦ ପଟ୍ଟନାୟକ ସଭାପତି, ଶ୍ରୀ ସୁରେଶ ଚନ୍ଦ୍ର ମିଶ୍ର ଉପସଭାପତି ଓ ଶ୍ରୀ ବୀରକିଶୋର ବେହେରା ଯୁଗ୍ମସମ୍ପାଦକ ଭାବେ ନିର୍ବାଚିତ ହୋଇଥିଲେ । ସଂଘରେ ସେତେବେଳର ସମ୍ବିଧାନର ବ୍ୟବସ୍ଥା ଅନୁସାରେ ସେ ଡକ୍ଟର ଦୀନବନ୍ଧୁ ତ୍ରିପାଠୀଙ୍କୁ କୋଷାଧ୍ୟକ୍ଷ ରୂପେ ମନୋନୀତ କରିଥିଲେ । ଦେଶ ସ୍ୱାଧୀନ ହେବା ପୂର୍ବରୁ ୧୯୪୬ରେ ତତ୍କାଳୀନ ବ୍ରିଟିଶ ସରକାରଙ୍କଠାରୁ ସ୍ୱୀକୃତି ପାଇଥିବା ମର୍ଯ୍ୟାଦାସମ୍ପନ୍ନ ଓଡ଼ିଶା ସରକାରୀ କଲେଜ ଶିକ୍ଷକ ସଂଘର ସାଧାରଣ ସଂପାଦକ ଭାବେ ତାଙ୍କର ସଫଳତାଗୁଡ଼ିକୁ ଉଲ୍ଲେଖ କରିବାର ପରିସର ଏଠାରେ ନାହିଁ । ମାତ୍ର ଡକ୍ଟର ମହାନ୍ତି କୁହନ୍ତି, "ପରୋକ୍ଷ ନିର୍ବାଚନ ବ୍ୟବସ୍ଥାକୁ ହଟାଇଦେଇ ପ୍ରତ୍ୟକ୍ଷ ନିର୍ବାଚନ ପ୍ରଚଳନ କରାଇବା ଆମର ସବୁଠାରୁ ବଡ଼ ସଫଳତା ଥିଲା ।" ଦ୍ୱିତୀୟ ଥର ପାଇଁ ସଂଘର ନିର୍ବାଚନରେ

ଭାଗନେବାକୁ ସେ ଅନିଚ୍ଛା ପ୍ରକାଶ କରିଥିଲେ ଏବଂ ୨୦୦୩ ମଇ ୫ରେ ନବନିର୍ବାଚିତ କର୍ମକର୍ତ୍ତାମାନଙ୍କୁ ଦାୟିତ୍ୱ ହସ୍ତାନ୍ତର କରିଥିଲେ ।

ଅଧ୍ୟାପିକା ନୀହାରିକା ଦାସଙ୍କ ମୃତ୍ୟୁବେଳକୁ ଅଧ୍ୟାପକ ମହାନ୍ତି 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା'ର ଯୁଗ୍ମ-ସଂପାଦକ ଥିଲେ । ୧୯୯୫ ସେପ୍ଟେମ୍ବର ୧୬ ଓ ୧୭ରେ ବାଦାମବାଡ଼ିସ୍ଥିତ ଭରତୀୟା ଟାୱାରଠାରେ ଅନୁଷ୍ଠିତ ପରିଷଦର ବାର୍ଷିକ ଉତ୍ସବରେ ତାଙ୍କ ଉପରେ ସଂଗଠନ ସଂପାଦକ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ପରିଷଦ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ (ଆର୍.ଏସ୍.ଏସ୍.)ର ଏକ 'ବିବିଧ କ୍ଷେତ୍ର' ହୋଇଥିବାରୁ ଜଣେ 'ପ୍ରଚାରକ' ଏହାର ସଂଗଠନ ସଂପାଦକ ଦାୟିତ୍ୱରେ ରହିବା କଥା । ମାତ୍ର ଅଧ୍ୟାପକ ମହାନ୍ତି ଏହି ପଦରେ ଦୀର୍ଘ ୧୭ ବର୍ଷ ରହି ତନ-ମନ-ଧନ ଦେଇ କାର୍ଯ୍ୟ କରିଥିଲେ । ଶେଷରେ ୨୦୧୨ ମଇ ୨୭ରେ ସରସ୍ୱତୀ ଶିଶୁ ମନ୍ଦିର, ୟୁନିଟ୍-୩, ଭୁବନେଶ୍ୱରରେ ଅନୁଷ୍ଠିତ ପରିଷଦର ବାର୍ଷିକ ଉତ୍ସବରେ ସେ ଏହି ପଦରୁ ଅବ୍ୟାହତି ନେଇଥିଲେ । ମାତ୍ର ସେହି ଦିନଠାରୁ ଆଜି ପର୍ଯ୍ୟନ୍ତ ଏହି ପଦବୀ ଖାଲି ପଡ଼ିଛି । ପରିଷଦର କର୍ମକର୍ତ୍ତା ନଥାଇ ବି ଅଧ୍ୟାପକ ମହାନ୍ତି ଏହାର କାର୍ଯ୍ୟରେ ସକ୍ରିୟ ଅଂଶଗ୍ରହଣ କରିଆସୁଛନ୍ତି ।

'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା' ଜାତୀୟ ସ୍ତରରେ 'ଅଖିଳ ଭାରତୀୟ ରାଷ୍ଟ୍ରୀୟ ଶୈକ୍ଷିକ ମହାସଂଘ' (ଏ.ବି.ଆର୍.ଏସ୍.ଏମ୍.) ସହ ସହବନ୍ଧିତ ହୋଇଛି । ଅଖିଳ ଭାରତୀୟ ରାଷ୍ଟ୍ରୀୟ ଶୈକ୍ଷିକ ମହାସଂଘର ଉଚ୍ଚଶିକ୍ଷା ଶାଖାର ସମ୍ପାଦକ ରୂପେ ଅଧ୍ୟାପକ ମହାନ୍ତି ୨୦୦୮ ଡିସେମ୍ବର ୨୮ରେ ତିନିବର୍ଷ ପାଇଁ ନିର୍ବାଚିତ ହୋଇଥିଲେ । ମହୀଶୂରଠାରେ ଅନୁଷ୍ଠିତ ମହାସଂଘର ସାଧାରଣ ସଭାରେ ସେ ଅନୁପସ୍ଥିତ ଥାଇ ସୁଦ୍ଧା ନିର୍ବାଚିତ ହୋଇଥିଲେ । ସେ ଦିନ ବଡ଼ପୁଅ ନିହାରର ବାହାଘରର ନିମନ୍ତ୍ରଣପତ୍ର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦେବା ପାଇଁ ସେ ମୋ ସହ ପୁରୀ ଆସିଥିଲେ । ଜଗତର ନାଥ ଶ୍ରୀଜଗନ୍ନାଥଙ୍କୁ ନିମନ୍ତ୍ରଣ କରିସାରି ଶ୍ରୀକ୍ଷେତ୍ରରେ ଥିବା ବନ୍ଧୁବାନ୍ଧବଙ୍କୁ ନିମନ୍ତ୍ରଣପତ୍ର ଦେଇଥିଲୁ । ଅପରାହ୍ନରେ ଶ୍ରୀ ସପନ ଏସ୍. ଚୌଧୁରୀ ଓ ଡକ୍ଟର ପବିତ୍ର କୁମାର ରଥଙ୍କଠାରୁ ସେ ଫୋନ୍ ମାଧ୍ୟମରେ ସମ୍ପାଦକ ରୂପେ ନିର୍ବାଚିତ ହୋଇଥିବା ବାର୍ତ୍ତା ପାଇଥିଲେ । ତାଙ୍କଠାରୁ ଏହି ଖବର ଶୁଣି ମୁଁ ଉଲ୍ଲସିତ ହୋଇପଡ଼ିଥିଲି । ଜଣେ ଓଡ଼ିଆ ଏହି ପଦ ମଣ୍ଡନ କରୁଥିବାରୁ ଗର୍ବ ଅନୁଭବ କରିଥିଲି । ମାତ୍ର ଅଧ୍ୟାପକ ମହାନ୍ତିଙ୍କଠାରେ କୌଣସି

ପରିବର୍ତ୍ତନ ଲକ୍ଷ୍ୟ କରିନଥିଲି । ସେ ମୋ ସହ ଶ୍ରୀସିଦ୍ଧମହାବୀର ମନ୍ଦିରକୁ ଯାଇ ଦର୍ଶନ କରିବା ସଙ୍ଗେସଙ୍ଗେ ଦୀପ ଦାନ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ, ଦର୍ଶନ ଅଧ୍ୟାପକ ଡକ୍ଟର ଟି.ଏସ୍. ଗିରୀଶ କୁମାର (କେରଳ) ତାଙ୍କ ସହ ଉଚ୍ଚଶିକ୍ଷା ଶାଖାର ଯୁଗ୍ମ-ସମ୍ପାଦକ ଭାବେ ନିର୍ବାଚିତ ହୋଇଥିଲେ ।

ତିନିବର୍ଷ ପରେ ୨୦୧୧ ନଭେମ୍ବର ୬ରେ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ମହାସଂଘର ସାଧାରଣ ସଭାରେ ଅଧ୍ୟାପକ ମହାନ୍ତି ଉଚ୍ଚଶିକ୍ଷା ଶାଖାର ସମ୍ପାଦକ ଭାବେ ପୁନଃନିର୍ବାଚିତ ହୋଇଥିଲେ । ଡକ୍ଟର ଶ୍ୟାମ ବି. ପୁଣ୍ଡେ (ମହାରାଷ୍ଟ୍ର) ତାଙ୍କ ସହ ଯୁଗ୍ମ-ସମ୍ପାଦକ ରୂପେ ନିର୍ବାଚିତ ହୋଇଥିଲେ । ଡକ୍ଟର ମହାନ୍ତି ସମ୍ପାଦକ ଭାବେ ପୁନଃନିର୍ବାଚିତ ହୋଇଥିବା ଖବର ଓଡ଼ିଶାର ପ୍ରାୟ ସମସ୍ତ ସମ୍ବାଦପତ୍ରର ପୃଷ୍ଠା ମଣ୍ଡନ କରିଥିଲା । ସେ ମହାସଂଘର ଉଚ୍ଚଶିକ୍ଷା ଶାଖାର ସମ୍ପାଦକ ପଦ ଛଅବର୍ଷ କାଳ ବହନ କରିଥିଲେ । ତା'ପରେ କିନ୍ତୁ ତହିଁରୁ ଅବ୍ୟାହତି ନେବାକୁ ଇଚ୍ଛା ପ୍ରକାଶ କରିଥିଲେ । କାର୍ଯ୍ୟକାଳ ପୂରିବା ମାତ୍ରେ ଦାୟିତ୍ୱମୁକ୍ତ କରିଦେବା ପାଇଁ ସେ ଲିଖିତ ଭାବେ ଅନୁରୋଧ ଜଣାଇଥିଲେ । କୌଣସି କର୍ମଚାରୀ ଚାକିରିରୁ ଅବସର ନେଲାପରେ ସମ୍ପୃକ୍ତ ସଂଘର କର୍ମକର୍ତ୍ତା ରହିବା ଉଚିତ ନୁହେଁ– ଏହା ତାଙ୍କର ଦୃଢ଼ ମତ ଥିଲା । ସେ ଚାକିରିରୁ ଅବସର ନେଇସାରିଥିବାରୁ ଏବଂ ତାଙ୍କର ସ୍ୱାସ୍ଥ୍ୟ ଭଲ ରହୁନଥିବାରୁ ସେ ଆଉ ପଦବୀରେ ରହିବାକୁ ଚାହିଁନଥିଲେ । ବେଲଗାଓଁ (କର୍ଣ୍ଣାଟକ)ଠାରେ ୨୦୧୪ ନଭେମ୍ବର ୨ରେ ଅନୁଷ୍ଠିତ ମହାସଂଘର ସାଧାରଣ ସଭାରେ ତାଙ୍କ ଅନୁରୋଧ ରକ୍ଷି ତାଙ୍କୁ ସମ୍ପାଦକ ପଦରୁ ଅବ୍ୟାହତି ଦିଆଯାଇଥିଲା । ମାତ୍ର ତାଙ୍କ ଉପରେ ମହାସଂଘର ପୂର୍ବକ୍ଷେତ୍ରର 'ପ୍ରମୁଖ' ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ଏବେ ସେ ପୂର୍ବକ୍ଷେତ୍ରର 'ପ୍ରମୁଖ' ଦାୟିତ୍ୱ ନିର୍ବାହ କରୁଛନ୍ତି ସତ, ମାତ୍ର ସଂପୃକ୍ତ ଅଞ୍ଚଳ ଗସ୍ତ କରି ନିଜର କର୍ତ୍ତବ୍ୟ ସମ୍ପାଦନ କରିପାରୁନାହାଁନ୍ତି । ଠିକ୍ ଭାବରେ କର୍ତ୍ତବ୍ୟ ସମ୍ପାଦନ କରିପାରୁନଥିବାରୁ ସେ ବ୍ୟଥିତ ହେଉଛନ୍ତି ।

ଅଧ୍ୟାପକ ମହାନ୍ତି ତା୨୮/୧୨/୨୦୦୮ରିଖରେ ଅଖିଳ ଭାରତୀୟ ରାଷ୍ଟ୍ରୀୟ ଶୈକ୍ଷିକ ମହାସଂଘର ଉଚ୍ଚଶିକ୍ଷା ଶାଖାର ସମ୍ପାଦକ ପଦ ମଣ୍ଡନ କଲା ପୂର୍ବରୁ ଏହାର ଯୁଗ୍ମ-ସମ୍ପାଦକ ଏବଂ ତା' ପୂର୍ବରୁ ଅତିରିକ୍ତ ସମ୍ପାଦକ ଦାୟିତ୍ୱ ତୁଲାଉଥିଲେ । ସେ ୨୦୦୫ ଡିସେମ୍ବର ୨୮ରେ ଦୁର୍ଗ (ଛତିଶଗଡ଼)ଠାରେ ଅନୁଷ୍ଠିତ ମହାସଂଘର ସାଧାରଣ ସଭାରେ ଯୁଗ୍ମ-ସମ୍ପାଦକ ରୂପେ ନିର୍ବାଚିତ

ହୋଇଥିଲେ । ତା' ଆଗରୁ ୨୦୦୨ ନଭେମ୍ବର କି ଡିସେମ୍ବରରେ ଲକ୍ଷ୍ନୌଠାରେ ଅନୁଷ୍ଠିତ ସାଧାରଣ ସଭାରେ ଅନୁପସ୍ଥିତ ଥାଇ ସୁଦ୍ଧା ଅତିରିକ୍ତ ସମ୍ପାଦକ ଭାବେ ନିର୍ବାଚିତ ହୋଇଥିଲେ । ଏହି ୨ଥରଯାକ ତାଙ୍କ ସହ ଡକ୍ଟର ଜେ.ପି. ସିଙ୍ଗଲ (ରାଜସ୍ଥାନ) ଉଚ୍ଚଶିକ୍ଷା ଶାଖାର ସମ୍ପାଦକ ପଦ ମଣ୍ଡନ କରିଥିଲେ ।

ପୂର୍ବରୁ କହିଛି ଯେ, 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା' ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ (ଆର୍.ଏସ୍.ଏସ୍.)ର ଏକ ବିବିଧ କ୍ଷେତ୍ର ଭାବେ କାର୍ଯ୍ୟ କରୁଛି । ଅଧ୍ୟାପକ ମହାନ୍ତି ପରିଷଦ ଦେଇ ଆର୍.ଏସ୍.ଏସ୍.କୁ ଆସିଥିଲେ । ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର କଟକ ଜିଲ୍ଲାର ସଂଘଚାଳକ ରୂପେ ଅଧ୍ୟାପକ ମହାନ୍ତି ୨୦୦୮ ଡିସେମ୍ବର ୨୭ରେ ତିନିବର୍ଷ ପାଇଁ ନିର୍ବାଚିତ ହୋଇଥିଲେ । ସେ ଦିନ ମହାନଦୀ ବିହାରସ୍ଥିତ ସରସ୍ୱତୀ ଶିଶୁ ମନ୍ଦିରଠାରେ ଅନୁଷ୍ଠିତ ଜିଲ୍ଲାସ୍ତରୀୟ ଶୀତ ଶିବିରରେ ସେ ଶ୍ରୀ ବିମଳ ପ୍ରସାଦ ବାରିକଙ୍କଠାରୁ ଏହି ଦାୟିତ୍ୱ ଗ୍ରହଣ କରିଥିଲେ । ପୁନର୍ବାର ୨୦୧୧ ଡିସେମ୍ବର ୨୪ରେ ନୂଆପାଟଣାସ୍ଥିତ ସରସ୍ୱତୀ ଶିଶୁ ମନ୍ଦିରଠାରେ ଅନୁଷ୍ଠିତ ଶୀତ ଶିବିରରେ ସେ ଦ୍ୱିତୀୟ ଥର ପାଇଁ ସଂଘଚାଳକ ଭାବେ ନିର୍ବାଚିତ ହୋଇଥିଲେ । ଦ୍ୱିତୀୟ ବାରର ମିଆଦ ପୂରିବା ଆଗରୁ ସେ ସଂଘଚାଳକ ଦାୟିତ୍ୱରୁ ମୁକ୍ତ ହେବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ମାତ୍ର ପ୍ରାନ୍ତ ପ୍ରଚାରକ ଶ୍ରୀ ଜଗଦୀଶ ପ୍ରସାଦ ଖାଡ଼ଙ୍ଗାଙ୍କ ଅନୁରୋଧକ୍ରମେ ସେ ମତ ପରିବର୍ତ୍ତନ କରିଥିଲେ । ୨୦୧୪ ନଭେମ୍ବର ୧୨ରେ ଚୌଦ୍ୱାରସ୍ଥିତ କଲ୍ୟାଣ ମଣ୍ଡପଠାରେ ଅନୁଷ୍ଠିତ ପ୍ରବାସୀ କାର୍ଯ୍ୟକର୍ତ୍ତା ବୈଠକରେ ତୃତୀୟ ଥର ପାଇଁ ସଂଘଚାଳକ ରୂପେ ନିର୍ବାଚିତ ହୋଇ କାର୍ଯ୍ୟରତ ଅଛନ୍ତି । ଜିଲ୍ଲା ସଂଘଚାଳକ ଭାବେ ପ୍ରାୟ ନଅବର୍ଷର କାର୍ଯ୍ୟକାଳ ଭିତରେ ଜିଲ୍ଲା କାର୍ଯ୍ୟବାହ ରୂପେ ଶ୍ରୀ କୁମର ସାହୁ ଓ ଶ୍ରୀ ଶରତ ଚନ୍ଦ୍ର ସେନ ଏବଂ ଜିଲ୍ଲା ପ୍ରଚାରକ ରୂପେ ଶ୍ରୀ ଅଜିତ କୁମାର ବାରିକଙ୍କ ସହ କାର୍ଯ୍ୟ କରିଛନ୍ତି ।

ଅଧ୍ୟାପକ ମହାନ୍ତି ପ୍ରାଥମିକଠାରୁ ଆରମ୍ଭ କରି ତୃତୀୟ ବର୍ଷ ପର୍ଯ୍ୟନ୍ତ ସମସ୍ତ 'ସଂଘ ଶିକ୍ଷା ବର୍ଗ'ରେ ଯୋଗଦାନ କରିଛନ୍ତି । ସେ କେନ୍ଦୁଝର ରାଜବାଟୀଠାରେ ତା୨୫/୦୫/୧୯୯୭ରିଖଠାରୁ ତା୧୪/୦୬/୧୯୯୭ରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ପ୍ରଥମ ବର୍ଷ 'ସଂଘ ଶିକ୍ଷା ବର୍ଗ', ମାଲଦା (ପଶ୍ଚିମ ବଙ୍ଗ)ର ଏକ ଶିକ୍ଷାନୁଷ୍ଠାନରେ, ତା୦୨।୦୬।୨୦୦୩ରିଖଠାରୁ ତା୨୨।୦୬।୨୦୦୩ରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ଦ୍ୱିତୀୟ ବର୍ଷ 'ସଂଘ ଶିକ୍ଷା ବର୍ଗ' ଏବଂ ଆର୍.ଏସ୍.ଏସ୍.ର ମୁଖ୍ୟ

କାର୍ଯ୍ୟାଳୟ, ନାଗପୁରଠାରେ ତା୨୦।୧୧।୨୦୦୭ରିଖଠାରୁ ତା୧୮।୧୨। ୨୦୦୭ରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ତୃତୀୟ ବର୍ଷ 'ସଂଘ ଶିକ୍ଷା ବର୍ଗ'ରେ ଯୋଗଦେଇଥିଲେ। ସେ ପ୍ରଥମେ ସରସ୍ୱତୀ ଶିଶୁ ମନ୍ଦିର, କଣ୍ଟାପଡ଼ାଠାରେ ଅନୁଷ୍ଠିତ ପ୍ରାଥମିକ 'ସଂଘ ଶିକ୍ଷା ବର୍ଗ'ରେ ଭାଗନେଇଥିଲେ।

ଅଧ୍ୟାପକ ମହାନ୍ତି ଭାରତୀୟ ସଂସ୍କୃତି ପ୍ରଚାର ସମିତିର ସମ୍ପାଦକ ରୂପେ ୨୦୧୦ ଏପ୍ରିଲ ୨୪ରେ ତିନିବର୍ଷ ପାଇଁ ନିର୍ବାଚିତ ହୋଇଥିଲେ। ତାଙ୍କ ସହ ପ୍ରାଧ୍ୟାପକ ନୃସିଂହ ଚରଣ ସାମଲ ସଭାପତି ଓ ଶ୍ରୀ ଗୌରୀଶ୍ୟାମ ମହାନ୍ତି କୋଷାଧ୍ୟକ୍ଷ ଭାବେ ନିର୍ବାଚିତ ହୋଇଥିଲେ। ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ (ଆର୍.ଏସ୍.ଏସ୍.) ସହ ସମ୍ପର୍କିତ ଏହି ସଂଗଠନ ୧୯୬୨ରେ ସ୍ଥାପିତ ହୋଇଥିଲା ଏବଂ ସମିତି ନିବନ୍ଧୀକରଣ ଅଧିନିୟମ, ୧୮୬୦ ଅନୁଯାୟୀ ୧୯୬୩-୬୪ରେ ନିବନ୍ଧୀକୃତ ହୋଇଥିଲା। ତିନିବର୍ଷ ପରେ ୨୦୧୩ ଏପ୍ରିଲରେ ଅଧ୍ୟାପକ ମହାନ୍ତି, ଅଧ୍ୟାପକ ସାମଲ ଓ ଶ୍ରୀ ମହାନ୍ତି ସେମାନଙ୍କ ପଦରେ ପୁନଃନିର୍ବାଚିତ ହୋଇଥିଲେ। ସେମାନେ ଦୁଇବାର କାର୍ଯ୍ୟ କଳାପରେ ୨୦୧୬ ଏପ୍ରିଲ ୧୬ରେ କାର୍ଯ୍ୟକର୍ତ୍ତା ପରିବର୍ତ୍ତନ କରାଯାଇଥିଲା। ସେ ଦିନ ଅଧ୍ୟାପକ ମହାନ୍ତି ସଭାପତି, ଶ୍ରୀ ନୃସିଂହ ଚରଣ ପଣ୍ଡା ସମ୍ପାଦକ ଓ ଶ୍ରୀ ଗୌରୀଶ୍ୟାମ ମହାନ୍ତି କୋଷାଧ୍ୟକ୍ଷ ରୂପେ ନିର୍ବାଚିତ ହୋଇ କାର୍ଯ୍ୟ ନିର୍ବାହ କରୁଛନ୍ତି।

ଅଧ୍ୟାପକ ମହାନ୍ତିଙ୍କର ଛାତ୍ର ତଥା ଛାତ୍ରତୁଲ୍ୟ ବ୍ୟକ୍ତିମାନଙ୍କ ସହ ଥିବା ଘନିଷ୍ଠ/ଆତ୍ମୀୟ ସମ୍ପର୍କକୁ ମୁଁ ପ୍ରତ୍ୟକ୍ଷ କରିଛି ଏବଂ ଏଠାରେ ତାହା ଉଲ୍ଲେଖ କରୁଛି। ସେ ଧରଣୀଧର କଲେଜରେ ଯୋଗଦେବା ପାଇଁ ତା୧୧।୧୧। ୧୯୯୭ରିଖରେ କେନ୍ଦୁଝରରେ ପହଞ୍ଚିଥିଲେ। ପ୍ରଥମେ ସ୍ଥାନୀୟ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ (ଆର୍.ଏସ୍.ଏସ୍.)ର କାର୍ଯ୍ୟାଳୟକୁ ଯାଇ ସେଠାରେ ଅବସ୍ଥାନ କରିଥିଲେ। ପୂର୍ବରୁ କାର୍ଯ୍ୟାଳୟରେ ରହି କେନ୍ଦୁଝର ଆଇନ କଲେଜରେ ଅଧ୍ୟୟନ କରୁଥିବା ଶ୍ରୀ ଶିବନାଥ ମହାନ୍ତଙ୍କ ସହ ତାଙ୍କର ପରିଚୟ ହୋଇଥିଲା। ପ୍ରାୟ ୧ ସପ୍ତାହ ଭିତରେ ଅଧ୍ୟାପକ ମହାନ୍ତି ମାଗୁରଗାଡ଼ିଆସ୍ଥିତ ଶ୍ରୀ ସୁରେଶ ଚନ୍ଦ୍ର ମହାନ୍ତିଙ୍କ ଘର ଭଡ଼ାନେଇ ସେଠାକୁ ଚାଲିଆସିଥିଲେ। ପରେପରେ ଶ୍ରୀ ମହାନ୍ତ ସଂଘ କାର୍ଯ୍ୟାଳୟ ଛାଡ଼ି ତାଙ୍କ ପାଖରେ ଆସି ରହିଥିଲେ। ପ୍ରାୟ ୨ବର୍ଷ ଧରି ସେ ଦୁହେଁ ଆପଣାର ପରି ଏକାଠି ରହିଥିଲେ। ୧୯୯୯ ନଭେମ୍ବର/ଡିସେମ୍ବରରେ

ଶ୍ରୀ ମହାନ୍ତ କେନ୍ଦୁଝରେ ଛାଡ଼ି କଟକ ଚାଲିଆସିଥିଲେ ଏବଂ 'କ୍ୟାରିୟର' ଗଠନ ପାଇଁ ଚେଷ୍ଟା ଚଳାଇଥିଲେ। ପ୍ରାୟ ବର୍ଷକ ପରେ ୨୦୦୦ ଡିସେମ୍ବରରେ ସେ ଦିଲ୍ଲୀ ଚାଲିଯାଇ ସେଠାରେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ। ଗଭୀର ନିଷ୍ଠାର ସହ ପେଶାରେ ଲିପ୍ତରହି ଶ୍ରୀ ମହାନ୍ତ କ୍ରମଶଃ ସଫଳତା ହାସଲ କରିଛନ୍ତି। ଆଜି ସେ ଗାଜିଆବାଦରେ ଏକ ଫ୍ଲାଟ ନେଇ ପତ୍ନୀ ଓ ପୁତ୍ରଙ୍କ ସହ ଅବସ୍ଥାନ କରୁଛନ୍ତି। ଓଡ଼ିଶା ଆସିଲେ ପ୍ରତ୍ୟେକ ଥର କଟକକୁ ଆସି ଶ୍ରୀ ମହାନ୍ତିଙ୍କୁ ଅବଶ୍ୟ ଦେଖା କରିଥାନ୍ତି।

ସମ୍ପ୍ରତି ସମ୍ମାନଜନକ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ସଂସ୍କୃତ ବିଭାଗରେ ଅଧାପକ ଥିବା ଶ୍ରୀ ଧର୍ମେନ୍ଦ୍ର ଦାସ ୨୦୦୩-୨୦୦୪ ଶିକ୍ଷାବର୍ଷରେ ଧରଣୀଧର କଲେଜରେ ଯୁକ୍ତତିନି (ପ୍ରଥମବର୍ଷ) ଶ୍ରେଣୀରେ ଅଧ୍ୟୟନ କରୁଥିଲେ। ସେତିକିବେଳେ ଆର୍.ଏସ୍.ଏସ୍.ର ମୟୂରଭଞ୍ଜ ବିଭାଗ ପ୍ରଚାରକ ଶ୍ରୀ ଦୀପକ କୁମାର ରାଉତ ତାଙ୍କର ଅଧାପକ ମହାନ୍ତିଙ୍କ ସହ ପରିଚୟ କରାଇଦେଇଥିଲେ। ସେ ଶ୍ରୀ ମହାନ୍ତିଙ୍କର ମାଗୁରଗାଡ଼ିଆସ୍ଥିତ ଭଡ଼ାଘରକୁ ଚାଲିଆସିଥିଲେ ଏବଂ ସେଠାରେ ରହି ଅଧ୍ୟୟନ ଜାରି ରଖିଥିଲେ। ତା୦୯।୦୮।୨୦୦୫ରିଖରେ ଶ୍ରୀ ମହାନ୍ତି କେନ୍ଦୁଝରର ମୋହ ତୁଟାଇ କଟକ ଫେରି ଆସିଥିଲେ ଏବଂ ତା'ପରଦିନ ଜେ.କେ.ବି.କେ. କଲେଜରେ ଯୋଗଦେଇଥିଲେ। ସେ ମର୍କତନଗର (ସି.ଡି.ଏ.)ର ସେକ୍ଟର-୭ସ୍ଥିତ ନବନିର୍ମିତ ନିଜସ୍ୱ ବାସଗୃହରେ ଅବସ୍ଥାନ କରିଥିଲେ। କେନ୍ଦୁଝରରେ ତାଙ୍କ ପାଖେ ରହି ବି.ଏ. ପଢ଼ିଥିବା ଶ୍ରଦ୍ଧେୟ ଧର୍ମେନ୍ଦ୍ର କଟକରେ ତାଙ୍କ ପାଖେ ରହି ଏମ୍.ଏ. ପଢ଼ିଥିଲେ। ସେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ସଂସ୍କୃତ ବିଭାଗରେ ନାମ ଲେଖାଇ ଦୈନିକ କଟକରୁ ଯା-ଆସ କରୁଥିଲେ। ୨୦୦୮ରେ ଧର୍ମେନ୍ଦ୍ର ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଲାଭ କରି ଏମ୍.ଏ. ପାସ କରିଥିଲେ। ଅନୁସୂଚୀତ ଜାତିର ଛାତ୍ର ଥାଇ ଏମ୍.ଏ. (ସଂସ୍କୃତ) ପରୀକ୍ଷାରେ ପ୍ରଥମ ହୋଇ ସେ ରେକର୍ଡ଼ ସୃଷ୍ଟି କରିଥିଲେ। ଓଡ଼ିଶାର ପ୍ରାୟ ସମସ୍ତ ଖବରକାଗଜରେ ତାଙ୍କର ଏହି କୃତିତ୍ୱ ଫଟୋ ସହ ପ୍ରକାଶ ପାଇଥିଲା। 'ସମାଜ'ର ୨୦୦୮ ନଭେମ୍ବର ୧୬-୨୨ ସଂଖ୍ୟାରେ ତାଙ୍କର ସାକ୍ଷାତ୍‌କାର ଫଟୋ ସହ ବିସ୍ତୃତ ଭାବେ ପ୍ରକାଶିତ ହୋଇଥିଲା। ଏମ୍.ଏ. ପାସ୍ କଲାପରେ ଧର୍ମେନ୍ଦ୍ର ପୁରୀର ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟରେ ଶିକ୍ଷାଶାସ୍ତ୍ରୀ (ବି.ଏଡ୍.) ପଢ଼ିଥିଲେ। ମନେପଡ଼େ, ଶ୍ରୀ ମହାନ୍ତିଙ୍କ କହିବା ଅନୁସାରେ

ନାମଲେଖା ଦିନ ମୁଁ ଧର୍ମେନ୍ଦ୍ରଙ୍କ ସହ ପୁରୀ ଯାଇଥିଲି। ଆମେ କଟକରୁ ଟ୍ରେନରେ ପୁରୀ ଯାଇ କାମ ସାରି ପୁଣି ଟ୍ରେନରେ ଫେରିଆସିଥିଲୁ। ପରେ ଧର୍ମେନ୍ଦ୍ର ପଣ୍ଡିଚେରୀ ବିଶ୍ୱବିଦ୍ୟାଳୟରୁ ଏମ୍.ଫିଲ. ଉପାଧି ଲାଭ କରିଥିଲେ। ତା'ପରେ କେନ୍ଦ୍ରୀୟ ବିଦ୍ୟାଳୟ ଓ ସରକାରୀ କଲେଜରେ ଅଧ୍ୟାପନା କରିଥିଲେ। ଶେଷରେ ଉତ୍କଳ ବିଶ୍ୱବିଦ୍ୟାଳୟ ସଂସ୍କୃତ ବିଭାଗରେ ଅଧ୍ୟାପକ ଭାବେ ଚଳିତ ବର୍ଷ ମାର୍ଚ୍ଚ ୩ରେ ଯୋଗଦେଲେ। ଏତେ ସତ୍ତ୍ୱେ ଧର୍ମେନ୍ଦ୍ରଙ୍କ ବ୍ୟବହାରରେ ମୁଁ ସାମାନ୍ୟତମ ପରିବର୍ତ୍ତନ ଦେଖିନାହିଁ। ଏବେ ବି ସେ ଶ୍ରୀ ମହାନ୍ତିଙ୍କୁ ପିତୃତୁଲ୍ୟ ବ୍ୟବହାର କରୁଥିବା ମୁଁ ଲକ୍ଷ୍ୟ କରିଛି।

ଶ୍ରୀ ସୁରିଆ ଜୁଆଙ୍ଗ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଧରଣୀଧର କଲେଜରେ ନାମ ଲେଖାଇଥିଲେ। ସେ ଏଠାରୁ ୨୦୦୧ରେ ଯୁକ୍ତଦୁଇ ଓ ୨୦୦୪ରେ ଯୁକ୍ତତିନି (ବି.ଏ.) ପାସ କରିଥିଲେ। ଯୁକ୍ତଦୁଇରେ ତର୍କଶାସ୍ତ୍ର ତାଙ୍କର ଏକ ଇଚ୍ଛାଧୀନ ବିଷୟ ଥିଲା ଏବଂ ଯୁକ୍ତତିନିରେ ସେ ଦର୍ଶନଶାସ୍ତ୍ରକୁ ଅନର୍ସ ରୂପେ ରଖିଥିଲେ। ସେ ୨୦୦୪ରେ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟର ବି.ଏ. ପରୀକ୍ଷାରେ ଦର୍ଶନଶାସ୍ତ୍ର ଅନର୍ସରେ ସର୍ବାଧିକ ନମ୍ବର ରଖିଥିଲେ। ଜୁଆଙ୍ଗ ଛାତ୍ରଙ୍କର ଏହି କୃତିତ୍ୱ ଅଧ୍ୟାପକ ମହାନ୍ତିଙ୍କୁ ଅଭିଭୂତ କରିଥିଲା। ସେ ଏ ଖବର ପ୍ରକାଶ ପାଇଁ ସମ୍ବାଦପତ୍ରକୁ ଦେଇଥିଲେ। ଶ୍ର ଜୁଆଙ୍ଗ ଉତ୍କଳ ବିଶ୍ୱବିଦ୍ୟାଳୟରେ ଏମ୍.ଏ. (ଦର୍ଶନ) ପଢ଼ି ୨୦୦୬ରେ ଉତ୍ତୀର୍ଣ୍ଣ ହୋଇଥିଲେ। ତା'ପରେ କେନ୍ଦୁଝରକୁ ଫେରିଆସି ସମବାୟ ବ୍ୟାଙ୍କରେ ଚାକିରି କରିଥିଲେ ଏବଂ ହାଇସ୍କୁଲରେ ଶିକ୍ଷକତା କରିଥିଲେ। ଶେଷରେ ଷ୍ଟେଟ୍ ସିଲେକ୍ସନ ବୋର୍ଡ଼ (ଏସ୍.ଏସ୍.ବି.)ଦ୍ୱାରା ମନୋନୀତ ହୋଇ ଚଳିତ ବର୍ଷ ଅକ୍ଟୋବର ୬ରେ ତେଲକୋଇସ୍ଥିତ ଚାରିଗଡ଼ ମହାବିଦ୍ୟାଳୟରେ ଅଧ୍ୟାପକ ଭାବେ ଯୋଗଦେଲେ। ଜୁଆଙ୍ଗ ଜନଜାତିର ଶ୍ରୀ ସୁରିଆ ଜୁଆଙ୍ଗ ଅଧ୍ୟାପକ ହୋଇଥିବା ଖବର ଶ୍ରୀ ମହାନ୍ତିଙ୍କ ମନରେ ଆନନ୍ଦ ଭରିଦେଲା। ଶ୍ରୀ ଜୁଆଙ୍ଗଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ସେ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକର ଶ୍ରୀରାମଚନ୍ଦ୍ର ଭବନଠାରେ ଏକ ସଭାର ଆୟୋଜନ କରିଥିଲେ। ବଶିଷ୍ଠ ବିଚାର ମଞ୍ଚ ଆନୁକୂଲ୍ୟରେ ଗତ ତା୧୬।୧୧।୨୦୧୬ରିଖରେ ଏହି ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହୋଇଥିଲା। ସହରର ବିଶିଷ୍ଟ ବୁଦ୍ଧିଜୀବୀମାନେ ଯୋଗଦେଇ 'ଜୁଆଙ୍ଗ ଜନଜାତିର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ' ସମ୍ପର୍କରେ ସେମାନଙ୍କର ସୁଚିନ୍ତିତ ମତାମତ ଉପସ୍ଥାପନ

କରିଥିଲେ। ଏଥିରେ ମୁଁ ବକ୍ତବ୍ୟ ପ୍ରଦାନ କରିବାର ସୁଯୋଗ ପାଇଥିଲି। ଛାତ୍ରମାନେ ଶିକ୍ଷକଙ୍କୁ ସମ୍ବର୍ଦ୍ଧନା ଜଣାଇବାର ପରମ୍ପରା ଆମ ସମାଜରେ ରହିଆସିଛି। ମାତ୍ର ଶିକ୍ଷକ ଛାତ୍ରଙ୍କ ପାଇଁ ସମ୍ବର୍ଦ୍ଧନା ସଭାର ଆୟୋଜନ କରିବା ମୁଁ ଦେଖିନଥିଲି। ଅଧ୍ୟାପକ ମହାନ୍ତି କିନ୍ତୁ ତାହା ହିଁ କରିଥିଲେ।

ସଂପ୍ରତି ଭବାନୀପାଟଣାର ସରକାରୀ ଜୁନିୟର କଲେଜରେ ଅଧ୍ୟାପକ ଥିବା ଶ୍ରୀ ତାରିଣିସେନ ଦେହୁରୀ ଧରଣୀଧର କଲେଜରେ ଶ୍ରୀ ମହାନ୍ତିଙ୍କର ପ୍ରିୟ ଛାତ୍ର ଥିଲେ। ସେ ୨୦୦୨ରେ ଦର୍ଶନଶାସ୍ତ୍ରକୁ ଅନର୍ସ ରୂପେ ରଖି ବି.ଏ. ପାସ କରିଥିଲେ। ୨୦୦୪ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଓ ତା' ପରବର୍ଷ ଆନନ୍ଦପୁରସ୍ଥିତ ସରକାରୀ ଟ୍ରେନିଂ କଲେଜରୁ ବି.ଏଡ୍. ପାସ କରିଥିଲେ। ସେ ୨୦୦୬ ଡିସେମ୍ବରରେ National Eligibility Test (NET)ରେ ସଫଳତା ହାସଲ କରିଥିଲେ। ହାଇସ୍କୁଲରେ ଶିକ୍ଷକତା କଲାପରେ ସେ ଓଡ଼ିଶା ଲୋକସେବା ଆୟୋଗ (ଓ.ପି.ଏସ୍.ସି.)ଦ୍ୱାରା କନିଷ୍ଠ ଅଧ୍ୟାପକ ପଦବୀ ପାଇଁ ମନୋନୀତ ହେଲେ ଏବଂ ୨୦୦୩ ଡିସେମ୍ବର ୨୦ରେ ସରକାରୀ ଜୁନିୟର କଲେଜରେ ଯୋଗଦେଲେ। ଅଧ୍ୟାପକ ଦେହୁରୀ ମଧ ଶ୍ରୀ ମହାନ୍ତିଙ୍କ ସହ ନିରନ୍ତର ସମ୍ପର୍କ ରଖିଛନ୍ତି। ପୁତ୍ର ନୀହାର 'ଡିପ୍ଲୋମା' ପରୀକ୍ଷା ଦେଇସାରି ଅଳ୍ପଦିନ ପାଇଁ ଭବାନୀପାଟଣାର ପବିତ୍ର ଇଲେକ୍‌ଟ୍ରିକାଲ ୱାର୍କ୍ସରେ କାର୍ଯ୍ୟ କରିଥିଲେ। ସେତେବେଳେ ଶ୍ରୀ ଦେହୁରୀ ହିଁ ତାଙ୍କର ଭଲମନ୍ଦ ବୁଝୁଥିଲେ।

ଭୁବନେଶ୍ୱରରେ ରହି ସଂଗ୍ରାମ କରୁଥିବା ଆଧ୍ୟାତ୍ମବାଦୀ ଶ୍ରୀ ଦୋଳାନନ୍ଦ ବେହେରା ୨୦୦୧ରେ ଧରଣୀଧର କଲେଜରୁ ବି.ଏ. ଓ ୨୦୦୩ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. (ଦର୍ଶନ) ପାସ କରିଥିଲେ। 'ଟିଉସନ'କୁ ଆପଣାଇ ନେଇଥିବା ଶ୍ରୀ ବେହେରା ସଂପ୍ରତି ଏକ ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ଶିକ୍ଷକତା କରୁଛନ୍ତି। ସେ ପ୍ରଜାପିତା ବ୍ରହ୍ମକୁମାରୀ ଈଶ୍ୱରୀୟ ବିଶ୍ୱବିଦ୍ୟାଳୟ କାର୍ଯ୍ୟରେ ମଧ ନିଜକୁ ସଂପୃକ୍ତ କରାଇଛନ୍ତି। ସେ ଏପର୍ଯ୍ୟନ୍ତ ଅବିବାହିତ ଅଛନ୍ତି। ଅଧ୍ୟାପକ ମହାନ୍ତି ଭୁବନେଶ୍ୱରରେ ଆୟୋଜନ କରୁଥିବା କାର୍ଯ୍ୟକ୍ରମଗୁଡ଼ିକରେ ସେ ଯୋଗଦେଉଥିବା ମୁଁ ଦେଖିଆସୁଛି।

ଜାତୀୟ କବି ବୀରକିଶୋର (କେ.କେ.ବି.କେ.) କଲେଜରେ ଦର୍ଶନଶାସ୍ତ୍ରକୁ ଅନର୍ସ ରୂପେ ରଖି ବି.ଏ. ପଢୁଥିବା ଶ୍ରୀ ବିନିତ୍ କୁମାର ମହାରଣା ୨୦୦୭-୦୮ ଶିକ୍ଷାବର୍ଷରେ ଛାତ୍ରସଂସଦର ସଭାପତି ଏବଂ ଶ୍ରୀ ଜଗନ୍ନାଥ ପୃଷ୍ଟି

୨୦୧୦-୧୧ ଶିକ୍ଷାବର୍ଷରେ ଛାତ୍ରସଂସଦର ସାଧାରଣ ସମ୍ପାଦକ ଥିଲେ । ସେଠାରୁ ୨୦୦୬ରେ ବି.ଏ. ପାସ କରିଥିବା ଶ୍ରୀ ନିରଞ୍ଜନ ବେହେରା ଉତ୍କଳ ବିଶ୍ୱବିଦ୍ୟାଳୟରୁ ୨୦୦୯ରେ ଏମ୍.ଏ. (ଦର୍ଶନ) ଓ ୨୦୧୧ରେ ଏମ୍.ଫିଲ୍. ଡିଗ୍ରୀ ପ୍ରାପ୍ତ ହୋଇଥିଲେ । ସେ ଚଳିତ ବର୍ଷ ଜୁଲାଇରେ ସମ୍ମାନଜନକ NET ରେ ସଫଳତା ହାସଲ କରିଥିଲେ । ଏସ୍.ଏସ୍.ବି.ଦ୍ୱାରା ମନୋନୀତ ହୋଇ ସେ ଚଣ୍ଡିଖୋଲସ୍ଥିତ ବାବା ଭୈରବାନନ୍ଦ ମହାବିଦ୍ୟାଳୟରେ ଅଧାପକ ଭାବେ ଗତ ତା୦୬।୧୦। ୨୦୧୬ରିଖରେ ଯୋଗଦେଇଛନ୍ତି । କୁମାରୀ ସୁନୀତା ପରିଡ଼ା ଜେ.କେ.ବି.କେ. କଲେଜରୁ ୨୦୧୨ରେ ବି.ଏ. ପାସ କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୨୦୧୪ରେ ଏମ୍.ଏ. (ଦର୍ଶନ) ଓ ୨୦୧୬ରେ ଏମ୍.ଫିଲ୍. ଡିଗ୍ରୀ ଲାଭ କରିଥିଲେ । ସେ ମଧ ଏସ୍.ଏସ୍.ବି.ଦ୍ୱାରା ମନୋନୀତ ହୋଇ ଦଶପଲାସ୍ଥିତ ବି.ଏସ୍. କଲେଜରେ ଅଧାପିକା ଭାବେ ତା୦୬।୧୦। ୨୦୧୬ରିଖରେ ଯୋଗଦେଇଛନ୍ତି । କୁମାରୀ ସସ୍ମିତା ପରିଡ଼ା ଦର୍ଶନଶାସ୍ତ୍ରକୁ ଅନର୍ସ ଭାବେ ରଖି ସେଠାରୁ ୨୦୧୪ରେ ବି.ଏ. ପାସ କରିଥିଲେ । ସେ ରେଭେନ୍ସା ବିଶ୍ୱବିଦ୍ୟାଳୟରୁ ୨୦୧୬ରେ ଏମ୍.ଏ. ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ପାଇଥିଲେ । ସଂପ୍ରତି ସେ ନିଆଳି କଲେଜରେ 'ଗେଷ୍ଟ ଫାକଲ୍ଟି' ଭାବେ କାର୍ଯ୍ୟରତ ଅଛନ୍ତି । ଏମାନଙ୍କ ବ୍ୟତୀତ ଜେ.କେ.ବି.କେ. କଲେଜର ଦର୍ଶନ ବିଭାଗର ପୁରାତନ ଛାତ୍ରମାନଙ୍କ ମଧ୍ୟରୁ ଶ୍ରୀ ସୃଷ୍ଟିଧର ନାୟକ, ଶ୍ରୀ ସରୋଜ କୁମାର ସାହୁ, ଶ୍ରୀ ଆଲୋକ କୁମାର ଖୁଣ୍ଟିଆ, ଶ୍ରୀ ଅମିୟ ରଞ୍ଜନ ଦାସ ପ୍ରମୁଖ ଅଧାପକ ମହାନ୍ତିଙ୍କ ସହ ଏବେ ବି ପୂର୍ବବତ୍ ସମ୍ପର୍କ ରଖିଥିବା ମୁଁ ଦେଖିଛି ଏବଂ ଏହା ମୋତେ ବିସ୍ମିତ କରିଛି ।

ଅଧାପିକା ନୀହାରିକା ଦାସଙ୍କ ମୃତ୍ୟୁ ପୂର୍ବର ପାରିବାରିକ ଘଟଣାବଳୀ ମୁଁ ପ୍ରତ୍ୟକ୍ଷ କରିନାହିଁ । ତେଣୁ ସେସବୁର ଉଲ୍ଲେଖ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ତା'ଛଡ଼ା ତାହାର ଆବଶ୍ୟକତା ଥିବା ମୁଁ ଅନୁଭବ କରୁନାହିଁ । କିନ୍ତୁ ଅଧାପକ ମହାନ୍ତିଙ୍କର ପୂର୍ବତନ ଛାତ୍ରମାନଙ୍କ ମଧ୍ୟରୁ ଯାଜପୁରର ନରସିଂହ ଚୌଧୁରୀ (ଏନ୍.ସି.) କଲେଜରେ ପଢୁଥିବା ଶ୍ରୀ ବିଜୟ କୁମାର ନାୟକ, ଶ୍ରୀ ଶୁଭ୍ରାଂଶୁ ଶେଖର ରାୟ, ଶ୍ରୀ ପ୍ରଦୀପ କୁମାର ବେଉରିଆ ପ୍ରମୁଖଙ୍କୁ ମୁଁ ବିଭିନ୍ନ ସମୟରେ ତାଙ୍କ ବାସଭବନରେ ଦେଖିଅଛି । ଶ୍ରୀ ନାୟକ ୧୯୯୫ରେ ଉଭୟ ଜୁନ୍ ଓ ଡିସେମ୍ବରରେ ଅନୁଷ୍ଠିତ NETରେ ୨ଥରଯାକ ସଫଳତା ହାସଲ

କରିଥିଲେ । ସଂପ୍ରତି ସେ ଅଡ଼ସପୁରସ୍ଥିତ ଉଦୟନାଥ ବିଜ୍ଞାନ ଓ ବୈଷୟିକ କଲେଜରେ ଅଧ୍ୟାପକ ଅଛନ୍ତି । ଶ୍ରୀ ରାୟ ଯାଜପୁରଠାରେ ଆଇନ ବ୍ୟବସାୟରେ ଲିପ୍ତ ଅଛନ୍ତି । ଶ୍ରୀ ବେଉରିଆ ଏନ୍.ସି. କଲେଜରେ 'ଗେଷ୍ଟ ଫାକଲ୍‌ଟି' ଭାବରେ କାର୍ଯ୍ୟ କରୁଛନ୍ତି ।

ବାଲେଶ୍ୱରସ୍ଥିତ ଫକୀର ମୋହନ (ଏଫ୍.ଏମ୍.) ସାନ୍ଧ୍ୟ କଲେଜର ପୁରାତନ ଛାତ୍ରମାନଙ୍କ ମଧ୍ୟରୁ ଶ୍ରୀ ପ୍ରଶାନ୍ତ କୁମାର ପରିଡ଼ା, ଶ୍ରୀ ସୁଦର୍ଶନ ଓଝା, ଶ୍ରୀ କମଳ କୁମାର ପରମାଣିକ ପ୍ରମୁଖଙ୍କୁ ମୁଁ ବିବାହ ଆଦି ପାରିବାରିକ କାର୍ଯ୍ୟରେ ଅଧ୍ୟାପକ ମହାନ୍ତିଙ୍କ ବାସଭବନରେ ଦେଖିଅଛି । ସେ ସମୟରେ ସାନ୍ଧ୍ୟ କଲେଜରେ ଅନର୍ସ ଶିକ୍ଷାର ବ୍ୟବସ୍ଥା ନଥିଲା; ଏମାନେ ଦର୍ଶନଶାସ୍ତ୍ରକୁ 'ପାସ୍' ରୂପେ ରଖି ବି.ଏ. ପଢୁଥିଲେ । ଏବେ ଶ୍ରୀ ପରିଡ଼ା ଭାରତ ସରକାରଙ୍କ ଗୃହ ମନ୍ତ୍ରଣାଳୟ ଅଧୀନସ୍ଥ Inter-operable Criminal Justice System (ICJS)ର ସାଧାରଣ ପରିଚାଳକ (ଜି.ଏମ୍.) ଭାବେ ନୂଆଦିଲ୍ଲୀରେ ଅବସ୍ଥାପିତ ହୋଇଛନ୍ତି । ଶ୍ରୀ ଓଝା ବାଲେଶ୍ୱରରେ ନିଜସ୍ୱ ବ୍ୟବସାୟରେ ଲିପ୍ତ ଅଛନ୍ତି । ଶ୍ରୀ ପରମାଣିକ ମୟୁରଭଞ୍ଜ ଜିଲ୍ଲାର ଜାମଦା ତହସିଲରେ ଅତିରିକ୍ତ ତହସିଲଦାର ରୂପେ ଅବସ୍ଥାପିତ ହୋଇଛନ୍ତି ।

ଅଧ୍ୟାପକ ମହାନ୍ତିଙ୍କର ପୁରାତନ ଛାତ୍ରମାନଙ୍କର ତାଲିକା ପ୍ରସ୍ତୁତ କରି ସେମାନଙ୍କର କୃତିତ୍ୱ ବର୍ଣ୍ଣନା କରିବା ମୋର ଉଦ୍ଦେଶ୍ୟ ନୁହେଁ । ସାଂପ୍ରତିକ ସମାଜରେ ଛାତ୍ର-ଶିକ୍ଷକ ସମ୍ପର୍କ ଚରମ ଅଧୋଗତି ଲଭିଥିବା କୁହାଯାଉଥିବାବେଳେ ଅଧ୍ୟାପକ ମହାନ୍ତିଙ୍କ କ୍ଷେତ୍ରରେ ମୁଁ ତା'ର ବ୍ୟତିକ୍ରମ ଦେଖିବାକୁ ପାଇଛି। ଏଫ୍.ଏମ୍. ସାନ୍ଧ୍ୟ କଲେଜଠାରୁ ଜେ.କେ.ବି.କେ. କଲେଜ ପର୍ଯ୍ୟନ୍ତ ସେ ଗଢ଼ିଥିବା ଛାତ୍ରମାନଙ୍କ ସହ ତାଙ୍କର ଏବେ ବି ଥିବା ସୁସମ୍ପର୍କ ମୋତେ ଅଭିଭୂତ କରିଛି । ତେଣୁ ଏଠାରେ ତାହା ଉଲ୍ଲେଖ କରିବା ଉଚିତ ମଣିଲି ।

ଅଧ୍ୟାପକ ମହାନ୍ତିଙ୍କ ମାତା କ୍ଷେତ୍ରବାସୀ ମହାନ୍ତିଙ୍କର ମୃତ୍ୟୁ ୧୯୮୫ ସେପ୍ଟେମ୍ବର ୧୪ରେ ଘଟିଥିଲା; ସେତେବେଳକୁ ଅଧ୍ୟାପିକା ଦାସ ଜୀବିତ ଥିଲେ। ପିତା ଗୋପାଳ ଚରଣ ମହାନ୍ତି ୨୦୧୨ ଡିସେମ୍ବର ୨୬ରେ ସ୍ୱର୍ଗାରୋହଣ କରିଥିଲେ। ତାଙ୍କର ତୃତୀୟ ଶ୍ରାଦ୍ଧ ବାର୍ଷିକୀରେ ସ୍ୱଗ୍ରାମ ମଲ୍ଲୀପୁରଠାରେ ଏକ ପ୍ରତିମୂର୍ତ୍ତି ଉନ୍ମୋଚିତ ହୋଇଥିଲା। ବରିଷ୍ଠ ରାଜନୀତିଜ୍ଞ ତଥା ପୂର୍ବତନ ମନ୍ତ୍ରୀ

ଶ୍ରୀ ନିରଞ୍ଜନ ପଟ୍ଟନାୟକ ତା୨୫।୧୨।୨୦୧୫ରିଖରେ ଏହା ଉନ୍ମୋଚନ କରିଥିଲେ। ଶିଳ୍ପୀ ଶ୍ରୀ ରବି ନାରାୟଣ ରଥ ଏହି ପ୍ରତିମୂର୍ତ୍ତି ନିର୍ମାଣ କରିଥିଲେ। ପିତାଙ୍କ ମୃତ୍ୟୁର ଠିକ୍ ୧୫ଦିନ ପୂର୍ବରୁ ଖୁଡ଼ୀ ସାବିତ୍ରୀ ମହାନ୍ତିଙ୍କର ଡିସେମ୍ବର ୧୧ରେ ମୃତ୍ୟୁ ଘଟିଥିଲା। ଦାଦା ଅଭୟ ଚରଣ ମହାନ୍ତି ୨୦୧୫ ସେପ୍ଟେମ୍ବର ୨୮ରେ ଇହଧାମ ତ୍ୟାଗ କରିଥିଲେ। ଦାଦାଙ୍କ ମୃତ୍ୟୁ ସଙ୍ଗେସଙ୍ଗେ ସେ ପୀଢ଼ିର ଇତି ଘଟିଥିଲା।

ଅଧ୍ୟାପକ ମହାନ୍ତିଙ୍କ ପରିବାର ସମେତ ୫ଟି ପରିବାର ଢେଙ୍କାନାଳର ଗଉଡ଼ୁଣୀବେଢ଼ିଆଠାରେ ଏକାଠି ଘର କରି ରହିବେ ବୋଲି ଦିନେ ଯୋଜନା କରିଥିଲେ । ଅଧ୍ୟାପିକା ଦାସଙ୍କ ମୃତ୍ୟୁ ଏହି ଯୋଜନାର କାର୍ଯ୍ୟାନ୍ୱୟନରେ ଅବଶ୍ୟ ବାଧା ସୃଷ୍ଟି କରିଥିଲା । ମାତ୍ର ଡକ୍ଟର ବିଜୟ ସ୍ୱାଇଁଙ୍କର ୨୦୦୮ ଅକ୍ଟୋବର ୫ରେ ଏବଂ ଡକ୍ଟର ନଳୀନାକ୍ଷ ପ୍ରସାଦ ଦାଶଙ୍କର ଚଳିତ ବର୍ଷ ମଇ ୧୬ରେ ପରଲୋକ ଏହି ଯୋଜନାକୁ ଭାଙ୍ଗି ଚୂରମାର କରିଦେଇଥିଲା । ଏହି ଦୁଇବନ୍ଧୁଙ୍କର ବିୟୋଗ ଅଧ୍ୟାପକ ମହାନ୍ତିଙ୍କ ମନରେ ଗଭୀର ଆଘାତ ଦେଇଥିଲା । ଡକ୍ଟର ସ୍ୱାଇଁଙ୍କର ୬ଷ୍ଠ ଶ୍ରାଦ୍ଧ ବାର୍ଷିକୀରେ ସେ କଟକସ୍ଥିତ ଶ୍ରୀଗଡ଼ଗଡ଼େଶ୍ୱର ମନ୍ଦିର ପ୍ରାଙ୍ଗଣରେ ତା୦୫।୧୦।୨୦୧୪ରିଖରେ ଏକ ସ୍ମୃତିସଭାର ଆୟୋଜନ କରିଥିଲେ । ସେହିପରି ଡକ୍ଟର ଦାଶଙ୍କ ଦଶାହ ଉପଲକ୍ଷେ ସେଠାର ଇଣ୍ଡିଗୋ କଲେଜଠାରେ ତା୨୫।୦୫।୨୦୧୬ରିଖରେ ଏକ ଶୋକସଭାର ଆୟୋଜନ କରିଥିଲେ । ବିଶିଷ୍ଟ ଶିକ୍ଷାବିତ୍ ତଥା ସାହିତ୍ୟିକ ଡକ୍ଟର ବାବାଜି ଚରଣ ପଟ୍ଟନାୟକ ଏହି ଦୁଇଟିଯାକ ସଭାକୁ ପରିଚାଳନା କରିଥିଲେ । ମନେପଡ଼େ, ଡକ୍ଟର ସ୍ୱାଇଁଙ୍କର ଏକାଦଶାହରେ ଯୋଗଦେବା ପାଇଁ ଆଧ୍ୟାପକ ମହାନ୍ତି ଓ ମୁଁ ମୋ ମୋଟର ସାଇକେଲରେ ତାଙ୍କ ଗ୍ରାମ କେନ୍ଦ୍ରାପଡ଼ା ଜିଲ୍ଲାର ନେମ୍ବରାକୁ ଯାଉଥିଲୁ। ଯୋଜନା ପ୍ରସ୍ତୁତ କରିଥିବା ଅନ୍ୟ ୨ଜଣ ବନ୍ଧୁ ଡକ୍ଟର ରାଜବଲ୍ଲଭ ମହାନ୍ତି ଓ ଅଧ୍ୟାପକ ପ୍ରଭାତ ରଞ୍ଜନ ପରିଡ଼ାଙ୍କ ସହ ତାଙ୍କର ପୂର୍ବବତ୍ ସମ୍ପର୍କ ରହିଅଛି ।

ମୁଁ ଲକ୍ଷ୍ୟ କରିଛି, ଡକ୍ଟର ଦୟାନିଧି ପାଢ଼ୀଙ୍କର ଚଳିତ ବର୍ଷ ମଇ ୭ରେ ଓ ଡକ୍ଟର କମଳଲୋଚନ କରଙ୍କର ଜୁନ୍ ୨୩ରେ ପରଲୋକ ଅଧ୍ୟାପକ ମହାନ୍ତିଙ୍କ ହୃଦୟରେ ଗଭୀର କ୍ଷତ ସୃଷ୍ଟି କରିଛି । ସେ ଡକ୍ଟର ପାଢ଼ୀଙ୍କର ଏକାଦଶାହରେ ତାଙ୍କର ବାଲେଶ୍ୱରର ତାମ୍ବୁଲିଆଗେଟ୍‌ସ୍ଥିତ ବାସଭବନରେ ପହଞ୍ଚି କାର୍ଯ୍ୟକ୍ରମରେ

ଯୋଗଦେଇଥିଲେ । ଡକ୍ଟର କରଙ୍କର ଦଶାହରେ ରାଜଧାନୀର ୟୁନିଟ୍-୩ସ୍ଥିତ ସରସ୍ୱତୀ ଶିଶୁ ମନ୍ଦିରଠାରେ ଏକ ଶୋକସଭାର ଆୟୋଜନ କରିଥିଲେ ।

ସବାସାନ ଭଉଣୀ ଅଧ୍ୟାପିକା ସଞ୍ଜୀବନୀ ମହାନ୍ତିଙ୍କର ୨୦୦୧ ଡିସେମ୍ବର ୧ରେ ଆକସ୍ମିକ ବିୟୋଗ ଅଧ୍ୟାପକ ମହାନ୍ତିଙ୍କ ମନରେ ଏକ ଅଲିଭା ଦାଗ ସୃଷ୍ଟି କରିଛି। ଦାଦା ଶ୍ରୀ ଅଭୟ ଚରଣ ମହାନ୍ତିଙ୍କର ସାନଝିଅ ସଞ୍ଜୀବନୀ ଢେଙ୍କାନାଳ ଜିଲାର ସିମିନଇସ୍ଥିତ ଆଞ୍ଚଳିକ ମହାବିଦ୍ୟାଳୟରେ ଶିକ୍ଷା ବିଭାଗରେ ଅଧ୍ୟାପିକା ଥିଲେ। ମୃତ୍ୟୁବେଳକୁ ତାଙ୍କୁ ମାତ୍ର ୩୦ ବର୍ଷ ବୟସ ହୋଇଥିଲା। ସେ ଛାଡ଼ିଯାଇଥିବା ଝିଅ କୁମାରୀ ଶୀତଳ ମହାପାତ୍ର (ମୁମୁନୁ) ଚଳିତ ଶିକ୍ଷାବର୍ଷରେ ଭୁବନେଶ୍ୱରସ୍ଥିତ ରାଜଧାନୀ କଲେଜରେ ଯୁକ୍ତତିନି ପ୍ରଥମ ବର୍ଷ (ବିଜ୍ଞାନ) ଶ୍ରେଣୀରେ ନାମଲେଖାଇଛି।

ବନ୍ଧୁ ଓ ସହକର୍ମୀ ଶ୍ରୀ କାଶୀନାଥ ବେହେରା (ପ୍ରାଣୀବିଜ୍ଞାନ)ଙ୍କର ୨୦୦୨ ଡିସେମ୍ବର ୨୯ରେ, ଶ୍ରୀ ପ୍ରଶାନ୍ତ କୁମାର ମହାନ୍ତି (ସମ୍ପାଦକ 'ଟିକି ଦୁନିଆ')ଙ୍କର ୨୦୧୦ ମଇ ୨୨ରେ, ଶ୍ରୀ ଗୌରଗୋପାଳ ଗିରି (ବାଣିଜ୍ୟ)ଙ୍କର ୨୦୧୧ ଜୁଲାଇ ୨୦ରେ, ଶ୍ରୀ ସାରଦା ପ୍ରସାଦ ମହାନ୍ତି (ଆଡ଼ଭୋକେଟ)ଙ୍କର ୨୦୧୧ ସେପ୍ଟେମ୍ବର ୧୮ରେ ଓ ଶ୍ରୀ କାହ୍ନୁ ଚରଣ ସେଠୀ (ସଂସ୍କୃତ)ଙ୍କର ୨୦୧୩ ନଭେମ୍ବର ୧୦ରେ ଅକାଳ ବିୟୋଗ ଅଧ୍ୟାପକ ମହାନ୍ତିଙ୍କୁ ମର୍ମାହତ କରିଛି। ସହକର୍ମୀ ତଥା ପିତୃତୁଲ୍ୟ ଶ୍ରୀ ବିପିନ ବିହାରୀ ମେହେର (ଇଂରାଜୀ)ଙ୍କର ୨୦୧୪ ଜୁଲାଇ ୨୯ରେ ପରଲୋକ ତାଙ୍କୁ ଦୁଃଖରେ ଅଭିଭୂତ କରିଛି।

ସରକାରୀ କଲେଜରେ ଅଧ୍ୟାପକମାନଙ୍କୁ ସିନିୟର ସ୍କେଲ, ସିଲେକ୍‌ସନ୍ ଗ୍ରେଡ଼ରେ ଅବସ୍ଥାପିତ କଲାବେଳେ ସେମାନଙ୍କର ଆଡ଼ହକ ଚାକିରିକାଳକୁ ଗଣନା କରିବା ପାଇଁ ଅଧ୍ୟାପକ ମହାନ୍ତି ସାଥୀମାନଙ୍କ ସହ ମିଶି ଚଳାଇଥିବା କାର୍ଯ୍ୟକ୍ରମ ଏକ ନିର୍ଣ୍ଣାୟକ ମୋଡ଼ରେ ପହଞ୍ଚିଥିଲେ ବି ସମାପ୍ତ ହୋଇନାହିଁ । ଏଥିପାଇଁ ସେମାନେ ବିଭିନ୍ନ ସ୍ତରରେ ସଂଗ୍ରାମ ଜାରି ରଖିବାପରେ ଶେଷରେ ଅଦାଲତର ଆଶ୍ରୟ ନେଇଛନ୍ତି । ରାଜ୍ୟ ପ୍ରଶାସନିକ ନ୍ୟାୟାଧୀକରଣ (ସ୍ୟାଟ୍) ମାମଲାର ବିଚାର କରି ୨୦୧୧ ଅଗଷ୍ଟ ୧୦ରେ ଦେଇଥିବା ରାୟ ବିରୋଧରେ ଅଧ୍ୟାପକ ମହାନ୍ତି ହାଇକୋର୍ଟଙ୍କ ଦ୍ୱାରସ୍ଥ ହୋଇଥିଲେ । ମାନ୍ୟବର ହାଇକୋର୍ଟ ତାଙ୍କ ଅପିଲର ଶୁଣାଣି କରି ୨୦୧୪ ଜାନୁୟାରୀ ୨୧ରେ ରାୟ ପ୍ରଦାନ କରିଥିଲେ

ଏବଂ ତହିଁରେ ତାଙ୍କର ସମଗ୍ର ଚାକିରିକାଳକୁ ଯୋଗଦେବା ଦିନଠାରୁ ଗଣନା କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ମାତ୍ର ରାଜ୍ୟ ସରକାର ତାହାକୁ କାର୍ଯ୍ୟକାରୀ ନକରି ତା' ବିରୋଧରେ ସୁପ୍ରିମକୋର୍ଟରେ ଏସ୍.ଏଲ୍.ପି. ଦାଖଲ କରିଥିଲେ । ମାନ୍ୟବର ସୁପ୍ରିମକୋର୍ଟ ୨୦୧୫ ସେପ୍ଟେମ୍ବର ୨୧ରେ ଏସ୍.ଏଲ୍.ପି.ର ଶୁଣାଣି କରି ତାହାକୁ ଖାରଜ କରିଦେଇଥିଲେ । ତା'ସତ୍ତ୍ୱେ ସରକାର ରାୟକୁ କାର୍ଯ୍ୟକାରୀ ନକରିବାରୁ ଅଧ୍ୟାପକ ମହାନ୍ତି ହାଇକୋର୍ଟରେ ଅଦାଲତ ଅବମାନନା ମାମଲା ଦାଖଲ କରିଥିଲେ । ଶେଷରେ ସରକାର ଗତ ଜୁନ୍ ୮ରେ ରାୟ ଅନୁସାରେ ତାଙ୍କର ସମଗ୍ର ଚାକିରିକାଳକୁ ଗଣନା କରି ପଦୋନ୍ନତି/ବର୍ଗୀକରଣ ତାରିଖ ପଛକୁ ଘୁଞ୍ଚାଇ (ante-date) ବିଜ୍ଞପ୍ତି ଜାରି କରିଥିଲେ । ତା'ର ସାଢ଼େଚାରିମାସ ପରେ ଅକ୍ଟୋବର ୧୦ରେ ତାଙ୍କର ସମସ୍ତ ବାକିଆ ପ୍ରାପ୍ୟ ପ୍ରଦାନ ପୂର୍ବକ ଘଟଣାର ପରିସମାପ୍ତି କରିଛନ୍ତି । ଅଧ୍ୟାପକ ମହାନ୍ତିଙ୍କ ତରଫରୁ ସ୍ୟାଟ୍ ଓ ହାଇକୋର୍ଟରେ ତାଙ୍କ ପାରିବାରିକ ବନ୍ଧୁ ସ୍ୱର୍ଗତ କୁଞ୍ଜବିହାରୀ ରାଉତରାୟଙ୍କ ସୁପୁତ୍ର ଆଡ୍‌ଭୋକେଟ ଶ୍ରୀ ବୁଦ୍ଧଦେବ ରାଉତରାୟ ମାମଲା ଲଢୁଥିଲେ । ମାତ୍ର ସୁପ୍ରିମକୋର୍ଟରେ ମାମଲା ପରିଚାଳନା ପାଇଁ ସେ କୌଣସି ଆଇନଜୀବୀଙ୍କୁ ନିଯୁକ୍ତି କରିନଥିଲେ । ତାଙ୍କ ପୂର୍ବରୁ ଆଉ ୩ଜଣ ଅଧ୍ୟାପକ ଅଦାଲତ ଆଦେଶ ବଳରେ ସେମାନଙ୍କର ସମଗ୍ର ଆଡ୍‌ହକ ଚାକିରିକାଳକୁ ଗଣନା କରାଇ ବାକିଆ ପ୍ରାପ୍ୟ ପାଇସାରିଛନ୍ତି । ସେମାନେ ଏବେ କ'ଣ କରୁଛନ୍ତି ମୁଁ ଜାଣିନାହିଁ, ମାତ୍ର ଅଧ୍ୟାପକ ମହାନ୍ତି ଅବଶିଷ୍ଟ ୪୪୦ ଜଣ ଅଧ୍ୟାପକଙ୍କ ଆଡ୍‌ହକ ଚାକିରିକାଳ ଗଣନା ପାଇଁ ଚାଲିଥିବା କାର୍ଯ୍ୟକ୍ରମରେ ପୂର୍ବବତ୍ ନେତୃତ୍ୱ ନେଉଛନ୍ତି ।

ପତ୍ନୀ ଅଧ୍ୟାପିକା ନୀହାରିକା ଦାସଙ୍କ ମୃତ୍ୟୁ ପରେ ପୁନର୍ବିବାହ ପାଇଁ ଅଧ୍ୟାପକ ମହାନ୍ତିଙ୍କ ପାଖକୁ କେତେ ଯେ ପ୍ରସ୍ତାବ ଆସିଥିଲା, ତା'ର ଇୟତ୍ତା ନାହିଁ । ଏହି ପ୍ରସ୍ତାବସବୁ ବିଧବା, ସ୍ୱାମୀଙ୍କଠାରୁ ଦୂରେଇ ରହୁଥିବା ଓ ବିବାହ ବୟସ ଗଡ଼ିଯାଇଥିବା ମହିଳାମାନଙ୍କଠାରୁ ଆସୁଥିଲା । କିନ୍ତୁ ମୁଁ ଦେଖିବାରେ ଏହି ମହିଳାମାନଙ୍କଠାରେ ରୂପ ଓ ବିତ୍ତ ଭରିରହିଥିଲା । ତା'ଛଡ଼ା ଏମାନେ ଉଚ୍ଚକୁଳର ଓ ସ୍ୱାବଲମ୍ବୀ ଥିଲେ । କେତେକ ପ୍ରସ୍ତାବ ମହିଳାମାନଙ୍କଠାରୁ ସିଧାସଳଖ ଆସୁଥିଲା, କେତେକ ପ୍ରସ୍ତାବ ସେମାନଙ୍କ ପିତାମାତା ପକାଉଥିଲେ ଏବଂ କେତେକ ପ୍ରସ୍ତାବ ମଧ୍ୟସ୍ଥିଙ୍କ ଜରିଆରେ ଆସୁଥିଲା । ମାତ୍ର ପୁନର୍ବିବାହ ନକରିବାକୁ ନିଷ୍ପତ୍ତି ନେଇଥିବା ଅଧ୍ୟାପକ ମହାନ୍ତି ତହିଁରେ ଅଟଳ ରହିଥିଲେ । ଏପରିକି,

ବିବାହ ନକରି ଏକତ୍ର ରହିବା (Live in Relationship) ପାଇଁ ଆସୁଥିବା ପ୍ରସ୍ତାବକୁ ମଧ୍ୟ ସେ ଅଗ୍ରାହ୍ୟ କରିଦେଉଥିଲେ । ଜଣେ ସାଧାରଣ ମଣିଷ ପକ୍ଷରେ ଏହା ସମ୍ଭବ ହେଉଥିବା ଦେଖି ଆମେ ଆଶ୍ଚର୍ଯ୍ୟ ହେଉଥିଲୁ । ଏ ସମ୍ପର୍କରେ ଅଧିକ ବିସ୍ତୃତ ଭାବେ ଲେଖିବାର ଆବଶ୍ୟକତା ଅନୁଭବ କରୁନାହିଁ । ମାତ୍ର ଏତିକି ଉଲ୍ଲେଖ କରୁଛି ଯେ, ଜନୈକ ମହିଳା ବିବାହ ପାଇଁ ଦେଇଥିବା ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରିଦେବା ପରେ ଉକ୍ତ ମହିଳା ତାଙ୍କୁ 'ଦେବୋପମ ବ୍ୟକ୍ତି' ବୋଲି ବର୍ଣ୍ଣନା କରି ତାଙ୍କଠାରୁ ଦୃଷ୍ଟି ଫେରାଇ ନେଇଥିଲେ ।

ଅଧ୍ୟାପକ ମହାନ୍ତିଙ୍କର ଏବର ନୀତିନିଷ୍ଠ ଦିନଚର୍ଯ୍ୟାକୁ ମୁଁ ନିକଟରୁ ଦେଖିବାର ସୁଯୋଗ ପାଇଛି । ଦୈନିକ ଭୋର ୪ଟାରେ ସେ ଶଯ୍ୟାତ୍ୟାଗ କରନ୍ତି । ମୁହଁ ନଧୋଇ ରାତିରେ ତମ୍ବାପାତ୍ରରେ ରଖାଯାଇଥିବା ଜଳ ୪ ଗ୍ଲାସ ପାନ କରନ୍ତି । ଦାନ୍ତ ଘସି ଏକ ବା ଦୁଇଫୁଞ୍ଚା ରସୁଣ ସେବନ କରନ୍ତି । ସ୍ନାନାଦି ସାରି ସାଇକେଲ ଧରି ସରସ୍ୱତୀ ଶିଶୁ ମନ୍ଦିର ପଡ଼ିଆରେ ପହଞ୍ଚନ୍ତି । ସେଠାରେ ୫ଟାରୁ ୬ଟା ପର୍ଯ୍ୟନ୍ତ ଆର୍.ଏସ୍.ଏସ୍.ର ଶାଖା ଲାଗେ । ସେଠାରୁ ଫେରି ପୂର୍ବଦିନର ଖର୍ଚ୍ଚର ହିସାବ ଲେଖନ୍ତି । ସେ ତାଙ୍କର ଜେଜେ ସ୍ୱର୍ଗତ ନଦିଆ ବିହାରୀ ମହାନ୍ତି (ମୃତ୍ୟୁ: ୧୯୭୩)ଙ୍କଠାରୁ ଏହା ଶିଖିଥିବା କହନ୍ତି । ଠିକ୍ ୮ଟାରେ ଜଳଖିଆ ଗ୍ରହଣ କରନ୍ତି । ତା'ପରେ କିଛି ନା କିଛି ବୌଦ୍ଧିକ କାର୍ଯ୍ୟରେ ଲାଗନ୍ତି । ୧୨ଟା ୩୦ରୁ ୧ଟା ମଧ୍ୟରେ ମଧ୍ୟାହ୍ନ-ଭୋଜନ କରନ୍ତି । ତା'ପରେ ୨ଘଣ୍ଟା ଶୋଇପଡ଼ନ୍ତି । ଉଠି, ପୁଣି ବୌଦ୍ଧିକ କାର୍ଯ୍ୟରେ ଲାଗିଥାନ୍ତି । ସନ୍ଧ୍ୟାରେ ପ୍ରାୟତଃ ସଂଗଠନ କାର୍ଯ୍ୟରେ ନିୟୋଜିତ ରହନ୍ତି । ୯ଟାରେ ରାତ୍ରୀ-ଭୋଜନ କରି ୧୦ଟା ସୁଦ୍ଧା ଶଯ୍ୟା ଗ୍ରହଣ କରନ୍ତି । ଶଯ୍ୟାକୁ ଯିବା ପୂର୍ବରୁ ଦୁଇପାଦରେ ସୋରିଷ ତେଲ ମାଲିସ କରିଥାନ୍ତି । ସୂର୍ଯ୍ୟୋଦୟ ପୂର୍ବରୁ ସ୍ନାନ କରିବା ଉପରେ ସର୍ବାଧିକ ଗୁରୁତ୍ୱ ଦେଇ ଏହାକୁ କଠୋର ଭାବେ ପାଳନ କରନ୍ତି । ୨୦୦୫ରୁ ସେ Mild Hypo Thyroid ଭୋଗୁଛନ୍ତି । ଏବେ ବନ୍ଧୁ ଡକ୍ଟର ରାଜବଲ୍ଲଭ ମହାନ୍ତିଙ୍କ ପରାମର୍ଶକ୍ରମେ ପ୍ରଫେସର ଶତ୍ରୁଘ୍ନ ନାଥଙ୍କ ସୁପୁତ୍ର ଡାକ୍ତର ଆର୍.କେ. ନାଥଙ୍କ ଚିକିତ୍ସାଧୀନ ଅଛନ୍ତି ।

ଅଧ୍ୟାପିକା ଦାସ ତାଙ୍କର ଜୀବଦ୍ଦଶା ଭିତରେ ମର୍କତନଗର (ସି.ଡି.ଏ.)ର ସେକ୍ଟର-୭ଠାରେ ଏକ ପ୍ଲଟ କିଣିଥିଲେ। ଏହା ସ୍ୱାମୀ ଅଧ୍ୟାପକ ମହାନ୍ତିଙ୍କ ନାମରେ କିଣାଯାଇଥିଲା। ଶ୍ରୀ ମହାନ୍ତି କେନ୍ଦୁଝରରେ ଅବସ୍ଥାପିତ ଥିବାବେଳେ

ତହିଁରେ ଗୃହ ନିର୍ମାଣ କରାଇଥିଲେ। ବନ୍ଧୁ ଡକ୍ଟର ଅଶୋକ କୁମାର ରାୟଙ୍କ ପରାମର୍ଶକ୍ରମେ ସେ ଇଂ. ସୋମିତ୍ ସେନଙ୍କ ଉପରେ ଘରତିଆରି କାମ ନ୍ୟସ୍ତ କରିଥିଲେ। ଶାଳକ ଶ୍ରୀ ସୁବ୍ରତ କୁମାର ଦାସ କାର୍ଯ୍ୟର ତଦାରଖ କରୁଥିଲେ। କାମ ଶେଷ ହେବାପରେ ଏକ ଅଂଶରେ ଶ୍ରୀ ଗନ୍ଧର୍ବସେନ ସେଠୀ ଭଡ଼ା ନେଇ ରହିଥିଲେ। ରାଜସ୍ୱ ପର୍ଷଦରେ ବରିଷ୍ଠ ସହକାରୀ ଥିବା ଶ୍ରୀ ସେଠୀ ତାଙ୍କର ପତ୍ନୀ ଓ ପୁତ୍ରଙ୍କ ସହ ୨୦୦୪ ଏପ୍ରିଲରେ ସେଠାକୁ ଆସିଥିଲେ। ଅଧ୍ୟାପକ ମହାନ୍ତି କେନ୍ଦୁଝରରୁ ବଦଳି ହୋଇ ଆସି ଅବଶିଷ୍ଟ ଅଂଶରେ ରହିଥିଲେ। ଶ୍ରୀ ସେଠୀ ଘରକୁ ନିଜର ବୋଲି ଭାବି ଏହାର ଦେଖାରଖା କରୁଥିଲେ। ଅଧ୍ୟାପକ ମହାନ୍ତି ଫୁଲାଫାଙ୍କିଆ ଭାବେ ନିଜ କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ।

ଅଧ୍ୟାପକ ମହାନ୍ତି ଅବସର ନେଇସାରି ପ୍ରାପ୍ୟସବୁ ପାଇବାପରେ ୨୦୧୫ ମାର୍ଚ୍ଚରେ ଉପର ମହଲାର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ। ପରମ ଶୁଭାକାଂକ୍ଷୀ ଶ୍ରୀ ଚନ୍ଦ୍ରକାନ୍ତ ଖଣ୍ଡାଇଙ୍କ ପରାମର୍ଶକ୍ରମେ ସେ ଇଂ. ରୂପେନ୍ଦ୍ର କୁମାର ଦତ୍ତଙ୍କ ଉପରେ ଏହି କାର୍ଯ୍ୟ ନ୍ୟସ୍ତ କରିଥିଲେ। ଇଂ. ଦତ୍ତ ଯଥାସମୟରେ ଅର୍ଥାତ୍ ସାନପୁଅ ନିର୍ଲିପ୍ତର ବିବାହ ତା୧୩।୧୨।୨୦୧୫ରିଖ ପୂର୍ବରୁ କାମ ଶେଷ କରିଥିଲେ। ଉଭୟ ମହଲାର ନିର୍ମାଣ କାର୍ଯ୍ୟ ଚାଲିଥିବାବେଳେ ମାମୁ ଇଂ. ସରୋଜ କୁମାର ପଟ୍ଟନାୟକ ନିୟମିତ ଭାବେ ଆସି ତାହା ଦେଖିଛନ୍ତି। ଶ୍ରୀ ସୁକାନ୍ତ କୁମାର ମହାନ୍ତି (ଠୁରା) ଦରକାର ପଡ଼ିବା ମାତ୍ରେ ଆସି ପହଞ୍ଚିଥାନ୍ତି। ଶ୍ରୀ ସେଠୀ ସାଢ଼େବାରବର୍ଷ ସେଠାରେ ରହିଲାପରେ ଚଳିତ ବର୍ଷ ନଭେମ୍ବରରେ ଘର ଛାଡ଼ିଦେଇଥିଲେ। ଅଧ୍ୟାପକ ମହାନ୍ତିଙ୍କର ତାଙ୍କ ସହ ଘନିଷ୍ଠ ଆତ୍ମୀୟତା ଗଢ଼ିଉଠିଥିବାରୁ ତାଙ୍କର ବିଦାୟ ଶ୍ରୀ ମହାନ୍ତିଙ୍କୁ ଅବଶ୍ୟ ବାଧିଥିଲା।

ଅଧ୍ୟାପିକା ନୀହାରିକା ଦାସ ସ୍ମୃତି ନ୍ୟାସ ତରଫରୁ କଟକ, ମଲ୍ଲୀପୁର ଓ ଭୁବନେଶ୍ୱରଠାରେ ଆୟୋଜିତ ହୋଇଥିବା ୩ଟି କାର୍ଯ୍ୟକ୍ରମର ବିବରଣୀ ଏଠାରେ ଉପସ୍ଥାପନ କରିବା ଉଚିତ ମନେକରୁଛି। ଅଧ୍ୟାପିକା ସ୍ୱର୍ଗତା ନୀହାରିକା ଦାସଙ୍କ ସ୍ମୃତି ଉଦ୍ଦେଶ୍ୟରେ ରଚିତ 'ନୀହାରିକା' ପୁସ୍ତକର ଉନ୍ମୋଚନ ଉତ୍ସବ ୧୯୯୫ ଡିସେମ୍ବର ୧୪ରେ କଟକର ଶ୍ରୀରାମଚନ୍ଦ୍ର ଭବନଠାରେ ଅନୁଷ୍ଠିତ ହୋଇଥିଲା। ଓଡ଼ିଶା ହାଇକୋର୍ଟର ମାନ୍ୟବର ବିଚାରପତି ଶ୍ରୀ ଦେବେନ୍ଦ୍ର ମୋହନ ପଟ୍ଟନାୟକ ମୁଖ୍ୟ ଅତିଥି ଭାବେ ଯୋଗଦେଇ ପୁସ୍ତକ ଉନ୍ମୋଚନ କରିଥିଲେ। ଭଦ୍ରକ କଲେଜର ଅଧ୍ୟକ୍ଷ ପ୍ରଫେସର ଡକ୍ଟର ଧନେଶ୍ୱର ରାଉତ ସମ୍ମାନିତ ଅତିଥି, କଟକ

ସିଟି କଲେଜର ଅଧକ୍ଷ ପ୍ରାଧାପକ ଶ୍ରୀ ଶ୍ରୀନିବାସ ରଥ ମୁଖ୍ୟବକ୍ତା ଓ ଓଡ଼ିଶା ଶିକ୍ଷା ବିକାଶ ସମିତିର ସଭାପତି ଡକ୍ଟର ଶ୍ୟାମସୁନ୍ଦର ମିଶ୍ର ସମ୍ମାନିତ ବକ୍ତା ରୂପେ ଯୋଗଦେଇଥିଲେ। ଉତ୍ସବରେ ନ୍ୟାସର ସଭାପତି ବିଶିଷ୍ଟ ଶିକ୍ଷାବିତ୍ ତଥା ସାହିତ୍ୟିକ ଡକ୍ଟର ଧନେଶ୍ୱର ମହାପାତ୍ର ସଭାପତିତ୍ୱ କରିଥିଲେ। ପ୍ରାରମ୍ଭରେ ପ୍ରାଧାପକ ଡକ୍ଟର ପତିତପାବନ ବାନାର୍ଜୀ ଓ ପ୍ରାଧାପିକା ଡକ୍ଟର ଚିନ୍ମୟୀ ମହାପାତ୍ର ବେଦପାଠ କରିଥିଲେ। 'ନୀଳଚକ୍ର'ର ପ୍ରତିଷ୍ଠାତା ଆଡ଼ଭୋକେଟ ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା ପ୍ରାରମ୍ଭିକ ସୂଚନା ଦେଲାପରେ ସ୍ଥାନୀୟ ବିଧାୟକ ଶ୍ରୀ ସମୀର ଦେ ସ୍ୱାଗତ ଭାଷଣ ଦେଇଥିଲେ। ସୁସାହିତ୍ୟିକ ଡକ୍ଟର ବାଉରୀବନ୍ଧୁ କର ପୁସ୍ତକର ଏକ ତାତ୍ତ୍ୱିକ ସମୀକ୍ଷା କରିଥିଲେ। ଶେଷରେ ଅଧାପିକା ଶ୍ରୀମତୀ ମଞ୍ଜୁଶ୍ରୀ ପଟ୍ଟନାୟକ ଧନ୍ୟବାଦ ଅର୍ପଣ କରିଥିଲେ। 'ମହାନଗରୀ'ର ସମ୍ପାଦକ ଶ୍ରୀ କାହ୍ନୁ ଚରଣ ମିଶ୍ର ଉତ୍ସବ ପରିଚାଳନା କରିଥିଲେ। ଏହି କାର୍ଯ୍ୟକ୍ରମରେ ଆଶାତୀତ ଜନସମାଗମ ହୋଇଥିଲା। କକ୍ଷ ଭରପୁର ହେଲାପରେ ଅନେକ ବ୍ୟକ୍ତି ବାହାରେ ଛିଡ଼ା ହୋଇଥିବା ଦେଖାଯାଇଥିଲା।

ଅଧାପିକା ଦାସଙ୍କର ପ୍ରତିମୂର୍ତ୍ତି ତାଙ୍କ ଗ୍ରାମ ମଲ୍ଲୀପୁରଠାରେ ୧୯୯୯ ଜୁନ୍ ୬ରେ ଉନ୍ମୋଚିତ ହୋଇଥିଲା। ଅର୍ଥ ଓ ଆଇନ ମନ୍ତ୍ରୀ ଶ୍ରୀ ରଘୁନାଥ ପଟ୍ଟନାୟକ ମୁଖ୍ୟ ଅତିଥି ରୂପେ ଯୋଗଦେଇ ପ୍ରତିମୂର୍ତ୍ତି ଉନ୍ମୋଚନ କରିଥିଲେ। ନ୍ୟାସର ସଭାପତି ଡକ୍ଟର ଧନେଶ୍ୱର ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି କାର୍ଯ୍ୟକ୍ରମରେ ବିଶିଷ୍ଟ ଶିକ୍ଷାବିତ୍ ଡକ୍ଟର ଅମୂଲ୍ୟକୃଷ୍ଣ ମିଶ୍ର, ଡକ୍ଟର ଶ୍ୟାମ ସୁନ୍ଦର ମିଶ୍ର, ଶ୍ରୀ ଅସିତ କୁମାର ବୋଷ, ଡକ୍ଟର (ଶ୍ରୀମତୀ) ବାସନ୍ତୀ ରାୟ, ଡକ୍ଟର ଧନେଶ୍ୱର ରାଉତ, ଶ୍ରୀ ଭାସ୍କର ଚନ୍ଦ୍ର ଖଟାଇ ବକ୍ତା ରୂପେ ଯୋଗଦେଇଥିଲେ। ପ୍ରଥମେ ବି.ଜେ.ପି. ସଂଖ୍ୟାଲଘୁ ମୋର୍ଚ୍ଚାର ସାଧାରଣ ସମ୍ପାଦକ ସେଖ ଫିରଦୌଷ ଅଲି ପ୍ରାରମ୍ଭିକ ସୂଚନା ଦେଲାପରେ 'ନୀଳଚକ୍ର'ର ପ୍ରତିଷ୍ଠାତା ଆଡ଼ଭୋକେଟ ବ୍ରହ୍ମାନନ୍ଦ ପଣ୍ଡା ସ୍ୱାଗତ ଭାଷଣ ଦେଇଥିଲେ। ଶେଷରେ 'ମହାନଗରୀ'ର ସମ୍ପାଦକ ଶ୍ରୀ କାହ୍ନୁ ଚରଣ ମିଶ୍ର ଧନ୍ୟବାଦ ଅର୍ପଣ କରିଥିଲେ। ପ୍ରତିକୂଳ ପାଗ ସତ୍ତ୍ୱେ ଖୁବ୍ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ କାର୍ଯ୍ୟକ୍ରମ ସମ୍ପନ୍ନ ହୋଇଥିଲା। ମୁଁ ପତ୍ନୀ ଶ୍ରୀମତୀ ସଂଯୁକ୍ତା ମିଶ୍ରଙ୍କ ସହ ଯାଇ ଏଥିରେ ଯୋଗଦେଇଥିଲି। ନିମନ୍ତ୍ରଣପତ୍ରରେ ବକ୍ତାମାନଙ୍କ ମଧ୍ୟରେ ଡକ୍ଟର (ଶ୍ରୀମତୀ) ସୁଲୋଚନା ଦାସଙ୍କ ନାମ ଛପାଯାଇଥିଲେ ମଧ୍ୟ ସେ ଆସିନଥିଲେ।

ଅଧ୍ୟାପିକା ନୀହାରିକା ଦାସଙ୍କ ସ୍ମୃତି-ସଞ୍ଚିତ ସାରସ୍ୱତକୃତି 'ନୀହାରିକା'ର ୨ୟ ସଂସ୍କରଣର ଉନ୍ମୋଚନ ଉତ୍ସବ ଗତ ଡିସେମ୍ବର ୧୪ରେ ରାଜଧାନୀର ୟୁନିଟ୍-୯ସ୍ଥିତ କଳିଙ୍ଗ ବୁଦ୍ଧ ବିହାରଠାରେ ଅନୁଷ୍ଠିତ ହୋଇଥିଲା। ସତ କହିବାକୁ ଗଲେ, ସେ ଦିନ ଉନ୍ମୋଚିତ ହୋଇଥିବା ପୁସ୍ତକ ପୂର୍ଣ୍ଣାଙ୍ଗ ନଥିଲା। ଏଥିପାଇଁ ମୁଁ ହିଁ ଦାୟୀ ଥିଲି; କାରଣ ମୁଁ ଲେଖା ସମାପ୍ତ କରିପାରି ନଥିଲି। ଏଥିଯୋଗୁଁ ଲାଭ ଏୟା ହେଲା ଯେ, ଉନ୍ମୋଚନ ଉତ୍ସବର ବିବରଣୀକୁ ମୋ ଲେଖାରେ ସ୍ଥାନ ଦେଇପାରିଛି।

ସେ ଦିନର କାର୍ଯ୍ୟକ୍ରମରେ ବି.ଜେ.ବି. ସ୍ୱୟଂଶାସିତ କଲେଜର ଅଧ୍ୟକ୍ଷ ପ୍ରଫେସର ମହମ୍ମଦ ନୱାଜ ହାସାନ ମୁଖ୍ୟ ଅତିଥି ଭାବେ ଯୋଗଦେଇ 'ନୀହାରିକା'ର ୨ୟ ସଂସ୍କରଣକୁ ଉନ୍ମୋଚନ କରିଥିଲେ। ଇଂରାଜୀ ସାହିତ୍ୟର ପ୍ରତିଷ୍ଠିତ କବି ଡକ୍ଟର ଶୈଳେନ୍ଦ୍ର ନାରାୟଣ ତ୍ରିପାଠୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଉତ୍ସବରେ ବିଶିଷ୍ଟ ସାହିତ୍ୟିକ ଅଧ୍ୟାପକ ବିଶ୍ୱରଞ୍ଜନ ସମ୍ମାନିତ ଅତିଥି ଓ ବରିଷ୍ଠ ସାମ୍ବାଦିକ ଶ୍ରୀ ଅରୁଣ କୁମାର ପଣ୍ଡା ମୁଖ୍ୟବକ୍ତା ରୂପେ ଯୋଗଦେଇଥିଲେ। ସାହିତ୍ୟିକ ତଥା ଶିକ୍ଷାବିତ୍ ଡକ୍ଟର ବାବାଜି ଚରଣ ପଟ୍ଟନାୟକ ଓ ଡକ୍ଟର ଶଶିଭୂଷଣ ବିଶ୍ୱାଳ ପୁସ୍ତକର ସମୀକ୍ଷା କରିଥିଲେ। ପୂର୍ବତନ ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ବିମ୍ବାଧର କୁଅଁର, 'ନୀହାରିକା'ର ସହଯୋଗୀ ସମ୍ପାଦକ ଅଧ୍ୟାପକ ତପନ ପଟ୍ଟନାୟକ ଓ ଏନ୍.ଏସ୍.ଏମ୍. ସିଟି କଲେଜର ଅଧ୍ୟକ୍ଷା ଚିତ୍ରା ମହାନ୍ତି ସ୍ମୃତିଚାରଣ କରିଥିଲେ। ପ୍ରାରମ୍ଭରେ ସାମ୍ବାଦିକ ଶ୍ରୀ ଦୀପକ କୁମାର ମହାନ୍ତ ଅତିଥିମାନଙ୍କର ପରିଚୟ ପ୍ରଦାନ କରିଥିଲେ ଏବଂ ଶେଷରେ ଶିକ୍ଷାବିତ୍ ଡକ୍ଟର ଶଚୀନ୍ଦ୍ର ରାଉଳ ଧନ୍ୟବାଦ ଅର୍ପଣ କରିଥିଲେ। ସ୍ମୃତି ନ୍ୟାସର ସଦସ୍ୟ ଡକ୍ଟର ପବିତ୍ର କୁମାର ରଥ କାର୍ଯ୍ୟକ୍ରମକୁ ପରିଚାଳନା କରିଥିଲେ।

ଉକ୍ତ ଉତ୍ସବରେ ଅଧ୍ୟାପକ ମହାନ୍ତିଙ୍କର ସହକର୍ମୀ ଅଧ୍ୟାପକ ହରେକୃଷ୍ଣ ସାହୁ (ଇତିହାସ) ଉପସ୍ଥିତ ଥିଲେ ଏବଂ ତାଙ୍କ ବିବାହ ଦିନ ୧୯୮୧ ମଇ ୧୧ର ସ୍ମୃତିଚାରଣ କରିଥିଲେ। ସ୍ୱର୍ଗତ ଅଧ୍ୟାପକ ନୀଳାମ୍ବର ପାଣି (ଇତିହାସ), ଡକ୍ଟର ରାଖାଲ ଚନ୍ଦ୍ର ଘଡ଼ାଇ (ଓଡ଼ିଆ) ଓ ଶ୍ରୀ ସାହୁ ସୁଦୂର ବାଲେଶ୍ୱରରୁ ଏକ ସ୍କୁଟର ଯୋଗେ ବୋଧପୁର ଆସି ଶ୍ରୀ ମହାନ୍ତିଙ୍କର ବିବାହ ଉତ୍ସବରେ ଯୋଗଦେଇଥିଲେ। ସେ ଦିନ ଶ୍ରୀ ସାହୁଙ୍କର ବର୍ଣ୍ଣନା ଅତ୍ୟନ୍ତ ହୃଦୟସ୍ପର୍ଶୀ ଥିଲା।

ପୁସ୍ତକ ଉନ୍ମୋଚନ ଉତ୍ସବରେ ପ୍ରାୟ ଏକଶହ ବ୍ୟକ୍ତି ଯୋଗଦେବେ ବୋଲି ଆଶା କରାଯାଉଥିଲା ଏବଂ ସେହି ଅନୁସାରେ ବ୍ୟବସ୍ଥା କରାଯାଇଥିଲା। ମାତ୍ର ଦେଖିଲାବେଳକୁ ଉପସ୍ଥିତ ବ୍ୟକ୍ତିଙ୍କ ସଂଖ୍ୟା ଯଥେଷ୍ଟ ଅଧିକ ହୋଇଥିଲା। ଅଧ୍ୟାପିକା ଦାସଙ୍କ ସହକର୍ମୀ ଡକ୍ଟର ସ୍ନିଗ୍ଧା ବିଶ୍ୱାଳ (ଓଡ଼ିଆ), ଅଧ୍ୟାପିକା ଶୁଭ୍ରା ଦାସ (ଅର୍ଥନୀତି) ଓ ଅଧ୍ୟକ୍ଷା ଚିତ୍ରା ମହାନ୍ତି (ଇତିହାସ) ଯୋଗଦେଇଥିଲେ। ତାଙ୍କ ମାଇଁ ଶ୍ରୀମତୀ ଖୁଲଣା ସୁନ୍ଦରୀ ମହାନ୍ତି ସପରିବାର ଆସିଥିଲେ। ସାନଭାଇ ଶ୍ରୀ ସୁବ୍ରତ କୁମାର ଦାସ ବି ଉପସ୍ଥିତ ଥିଲେ। ସ୍ମରଣିକାକୁ ପରିପୁଷ୍ଟ କରିଥିବା ଲେଖକମାନଙ୍କ ମଧ୍ୟରୁ ଡକ୍ଟର ସ୍ନିଗ୍ଧା ବିଶ୍ୱାଳ ଓ ଡକ୍ଟର ଶୈଳେନ୍ଦ୍ର ନାରାୟଣ ତ୍ରିପାଠୀଙ୍କ ବ୍ୟତୀତ ପ୍ରଫେସର ଡକ୍ଟର ଗଣେଶ ପ୍ରସାଦ ଦାସ, ଡକ୍ଟର ଲକ୍ଷ୍ମଣ କୁମାର ଚୌଧୁରୀ, ଡକ୍ଟର ପ୍ରଫୁଲ୍ଲ କୁମାର ମାନସିଂହ ଓ ଶ୍ରୀ ରାସବିହାରୀ ମହାନ୍ତି ଯୋଗଦେଇଥିଲେ। ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ (ଆର୍.ଏସ୍.ଏସ୍.)ର ପୂର୍ବକ୍ଷେତ୍ରର କାର୍ଯ୍ୟବାହ ଅଧ୍ୟାପକ ଗୋପାଳ ପ୍ରସାଦ ମହାପାତ୍ର ଓ ଉତ୍କଳ ପୂର୍ବପ୍ରାନ୍ତର ସଂଘଚାଳକ ଶ୍ରୀ ସମୀର କୁମାର ମହାନ୍ତି ଉପସ୍ଥିତ ଥିଲେ। ବରିଷ୍ଠ ଶିକ୍ଷାବିତ୍ ଡକ୍ଟର ଦୀନବନ୍ଧୁ ତ୍ରିପାଠୀ, ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର, ଡକ୍ଟର ପ୍ରମୋଦ ଚନ୍ଦ୍ର ଦେଓ, ଡକ୍ଟର ବିଭୂତି ଭୂଷଣ ପଣ୍ଡା, ଡକ୍ଟର ବିଭୂତି ଭୂଷଣ ମହାପାତ୍ର, ଅଧ୍ୟାପିକା ଭାରତୀ ମିଶ୍ର, ଡକ୍ଟର ମହେନ୍ଦ୍ର କୁମାର ମହାନ୍ତି, ଡକ୍ଟର ଯୁଧିଷ୍ଠିର ଖଟୁଆ, ଡକ୍ଟର ହେମନ୍ତ କୁମାର ଦାସ ପ୍ରମୁଖ ଯୋଗଦେଇଥିଲେ। ସାମ୍ବାଦିକ ଶ୍ରୀ ସମନ୍ୱୟ ନନ୍ଦ ଓ ଶ୍ରୀ ଗୋଲୋକ ଚନ୍ଦ୍ର ଦାସ ଆସିଥିଲେ। ଅଧ୍ୟାପକ ଅର୍ଜୁନ ରାଉତ (ଦର୍ଶନ), ଅଧ୍ୟାପକ ଅରୁଣ କୁମାର ଶତପଥୀ (ଇତିହାସ) ଅଧ୍ୟାପିକା କମଳା ବେହେରା (ଇଂରାଜୀ), ଡକ୍ଟର ତ୍ରିନାଥ ହୋତା (ସଂସ୍କୃତ), ଅଧ୍ୟାପକ ଧର୍ମେନ୍ଦ୍ର ଦାସ (ସଂସ୍କୃତ), ଅଧ୍ୟାପକ ବସନ୍ତ କୁମାର ଦାଶ (ଦର୍ଶନ), ଡକ୍ଟର ବିଜୟ କୁମାର ଶତପଥୀ (ସଂସ୍କୃତ), ଅଧ୍ୟାପକ ମନୋଜ କୁମାର ରାଉତ (ଇତିହାସ), ଅଧ୍ୟାପକ ରବିନାରାୟଣ ବିଶ୍ୱାଳ (ଶିକ୍ଷା), ଡକ୍ଟର ହରିଶ୍ଚନ୍ଦ୍ର ସାହୁ (ଦର୍ଶନ), ଅଧ୍ୟାପକ ହରେକୃଷ୍ଣ ସାମଲ (ଓଡ଼ିଆ) ପ୍ରମୁଖ କାର୍ଯ୍ୟକ୍ରମରେ ସକ୍ରିୟ ଭାଗ ନେଇଥିଲେ।

ଅଧ୍ୟାପକ ମହାନ୍ତିଙ୍କର ସହପାଠୀ ଅଧ୍ୟାପକ ଭଗବାନ ପରିଡ଼ା ଓ ଶ୍ରୀ ଦାମୋଦର ପ୍ରଧାନୀ, ଛାତ୍ର ଅଧ୍ୟାପକ ବିଜୟ କୁମାର ନାୟକ, ଶ୍ରୀ ଦୋଳାନନ୍ଦ ବେହେରା ଓ ଅଧ୍ୟାପକ ନିରଞ୍ଜନ ବେହେରା ଏବଂ ବାଲ୍ୟବନ୍ଧୁ ସେଖ ଫିରଦୌଷ ଅଲି ଓ ଶ୍ରୀ ପ୍ରଦୀପ୍ତ କୁମାର ମହାନ୍ତି ଉପସ୍ଥିତ ଥିଲେ। ବନ୍ଧୁ ସ୍ୱର୍ଗତ ବିଜୟ

ସ୍ୱାଇଁଙ୍କର ଧର୍ମପତ୍ନୀ ଶ୍ରୀମତୀ ସନ୍ଧ୍ୟାରାଣୀ ସ୍ୱାଇଁ ଓ ସାନଭାଇ ଶ୍ରୀ ବିନାୟକ ସ୍ୱାଇଁ ଏବଂ ବନ୍ଧୁ ସ୍ୱର୍ଗତ ନଳୀନାକ୍ଷ ପ୍ରସାଦ ଦାଶଙ୍କର ସୁପୁତ୍ର ଇଂ. ଅଂଶୁମାନ ଦାଶ ପହଞ୍ଚିଥିଲେ। ମାମୁ ଶ୍ରୀ ଜ୍ୟୋତିଷ ଚନ୍ଦ୍ର ପଟ୍ଟନାୟକ ସପରିବାର ଆସିଥିଲେ। ଭାଇମାନଙ୍କ ସମେତ ମାମୁ ଇଂ. ଭାରତ ଭୂଷଣ ମହାନ୍ତି, ମାଉସୀ ଶ୍ରୀମତୀ ପ୍ରମୋଦିନୀ ମହାପାତ୍ର, ଭିଣୋଇ ଅଧ୍ୟାପକ ତୁଷାରକାନ୍ତି ପଟ୍ଟନାୟକ ଓ ସମୁଦୀ ଶ୍ରୀ ବିରଞ୍ଚି ନାରାୟଣ କାନୁନଗୋ ଯୋଗଦେଇଥିଲେ। କଳିଙ୍ଗ ସେନାର ସଭାପତି ଶ୍ରୀ ହେମନ୍ତ ରଥ, ବରିଷ୍ଠ ଆଇନଜୀବୀ ଶ୍ରୀ ଦେବନାରାୟଣ ପଟ୍ଟନାୟକ ପ୍ରମୁଖ ଉପସ୍ଥିତ ଥିଲେ। 'ନୀହାରିକା'ର ୧ମ ସଂସ୍କରଣ ୧୯୯୫ରେ ପ୍ରକାଶ ପାଇଥିଲା। ୨୨ବର୍ଷ ପରେ ସ୍ମରଣିକାର ୨ୟ ସଂସ୍କରଣ ପ୍ରକାଶିତ ହେବା ଏକ ବିରଳ ଘଟଣା ଥିଲା।

*ପ୍ରଧାନ ଶିକ୍ଷକ (ଅବସରପ୍ରାପ୍ତ)*
*ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲ, କଟକ*

# ପରିଶିଷ୍ଟ (୪)

# ଲେଖକ ପରିଚୟ

ଡକ୍ଟର ଧନେଶ୍ୱର ମହାପାତ୍ର (୧୯୩୨-) ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଜଣେ ସମର୍ପିତ ପ୍ରତିଭା ରୂପେ ବିବେଚିତ ହୁଅନ୍ତି। ସେ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ପ୍ରାୟ ୩୦ଟି ପୁସ୍ତକ ରଚନା କରିଛନ୍ତି। ତାଙ୍କ ସୃଷ୍ଟି ମଧ୍ୟରେ 'ଓଡ଼ିଆ ଧ୍ୱନିତତ୍ତ୍ୱ ଓ ଶବ୍ଦସମ୍ଭାର', 'ଓଡ଼ିଆ ଭାଷାତତ୍ତ୍ୱ : ବିଚାର ଓ ବିଶ୍ଳେଷଣ', 'ସରଳ ଓଡ଼ିଆ ଅଭିଧାନ', 'ସେ ଦିନ ସକାଳ' (କବିତା), 'ସନ୍ଥ ତୁଳସୀ ଦାସ' (ନାଟକ), 'କାଳିଦାସ ଗ୍ରନ୍ଥାବଳୀ' (ଅନୁବାଦ), 'ମୋ ଜୀବନ, ମୋ ଜଗତ' (ଆତ୍ମଜୀବନୀ) ଅନ୍ତର୍ଭୁକ୍ତ। ସେ ପ୍ରଫେସର କୁଞ୍ଜବିହାରୀ ତ୍ରିପାଠୀଙ୍କ ତତ୍ତ୍ୱାବଧାନରେ 'ସାରଳା ମହାଭାରତର ଭାଷାତାତ୍ତ୍ୱିକ ଅନୁଶୀଳନ' ଶୀର୍ଷକ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧି ପ୍ରାପ୍ତ ହୋଇଥିଲେ। ଡକ୍ଟର ମହାପାତ୍ର ରେଭେନ୍‌ସା କଲେଜ ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରାଧ୍ୟାପକ ଭାବେ ୧୯୮୪ରେ ସ୍ୱେଚ୍ଛାକୃତ ଅବସର ଗ୍ରହଣ କରିଥିଲେ। ସେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ୨୦୧୩ ପାଇଁ ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ସମେତ ଅନେକ ସମ୍ମାନ/ ପୁରସ୍କାର ଲାଭ କରିଛନ୍ତି। ସେ ସମ୍ପ୍ରତି କଟକ ସହରର କଲ୍ୟାଣୀନଗରସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

ଡକ୍ଟର ନବକିଶୋର ଷଡ଼ଙ୍ଗୀ (୧୯୫୧-) କଟକ ସହରସ୍ଥିତ ନେତାଜୀ ସୁଭାଷ ମେମୋରିଆଲ (ଏନ୍.ଏସ୍.ଏମ୍.) ସିଟି କଲେଜର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପକ ତଥା ମୁଖ୍ୟ ଭାବେ ୨୦୧୧ ଜାନୁଆରି ୩୧ରେ ଅବସର ଗ୍ରହଣ କରିଛନ୍ତି। ପ୍ରଫେସର ଆଶୁତୋଷ ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ 'ଓଡ଼ିଆ କୃଷ୍ଣକାବ୍ୟ ଓ କବି ଭକ୍ତଚରଣ' ଶୀର୍ଷକ ସନ୍ଦର୍ଭ ଲେଖି ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୯୫ରେ ପିଏଚ୍.ଡି. ଉପାଧି ଲାଭ କରିଥିଲେ। ଜ୍ଞାନ ଆହରଣରେ ବ୍ରତୀ ଡକ୍ଟର ଷଡ଼ଙ୍ଗୀ ଏମ୍.ଫିଲ୍. ଓ ଏଲ୍‌ଏଲ୍.ବି. ଡିଗ୍ରୀ ମଧ୍ୟ ହାସଲ କରିଛନ୍ତି। ଭାଷା ଓ ଆଇନର ଜ୍ଞାନକୁ ବିନିଯୋଗ କରି ସେ ପ୍ରାୟ ୧୫୦ ଖଣ୍ଡ ଆଇନ ବହିକୁ ଇଂରାଜୀରୁ ଓଡ଼ିଆକୁ ଅନୁବାଦ କରିଛନ୍ତି। ତାଙ୍କ ଅନୂଦିତ ଓଡ଼ିଆ ଫୌଜଦାରି ଗ୍ରନ୍ଥାବଳୀ ବିଶେଷ ଲୋକପ୍ରିୟ

ହୋଇପାରିଛି । ସେ ସମ୍ପ୍ରତି କଟକ ସହରର ମର୍କତନଗର (ସି.ଡି.ଏ.) ସ୍ଥିତ ବାସଭବନରେ ସପରିବାର ରହୁଛନ୍ତି ।

ଅଧ୍ୟାପକ ଶ୍ରୀ ଦେବବ୍ରତ ମହାପାତ୍ର (୧୯୬୨-) କଟକ ସହରସ୍ଥିତ ଇମର୍ତ୍ତୀ ଦେବୀ ମହିଳା କଲେଜରେ ସଂସ୍କୃତ ବିଭାଗର ଅଧ୍ୟାପକ ତଥା ମୁଖ୍ୟ ଅଛନ୍ତି । ତାଙ୍କଦ୍ୱାରା ସଂସ୍କୃତ ଓ ଇଂରାଜୀରେ ରଚିତ ପ୍ରାୟ ୨୦ଟି ଗବେଷଣାତ୍ମକ ନିବନ୍ଧ ବିଭିନ୍ନ ଜର୍ଣ୍ଣାଲରେ ପ୍ରକାଶିତ ହୋଇଛି । ସେ କଟକ ସହରର ମର୍କତନଗର (ସି.ଡି.ଏ.)ସ୍ଥିତ ବାସଭବନରେ ସପରିବାର ଅବସ୍ଥାନ କରୁଛନ୍ତି ।

ଡକ୍ଟର ଅରୁଣ କୁମାର ଦାଶ (୧୯୬୬-) କଟକ ସହରସ୍ଥିତ ନେତାଜୀ ସୁଭାଷ ମେମୋରିଆଲ (ଏନ୍.ଏସ୍.ଏମ୍.) ସିଟି କଲେଜର ରାଜନୀତି ବିଜ୍ଞାନ ବିଭାଗରେ ଅଧ୍ୟାପକ ଅଛନ୍ତି । ସେ ଡକ୍ଟର ବାଳକୃଷ୍ଣ ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ An Anatomy of Administration in Native States - A Case Study of Ranpur ଶୀର୍ଷକ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୨୦୦୦ରେ ପିଏଚ୍.ଡି. ଡିଗ୍ରୀ ପ୍ରାପ୍ତ ହୋଇଥିଲେ । ଯୁକ୍ତତିନି (ବି.ଏ.) ଶ୍ରେଣୀ ପାଇଁ ତାଙ୍କ ରଚିତ ତଥା କଲ୍ୟାଣୀ ପବ୍ଲିଶର୍ସଦ୍ୱାରା ପ୍ରକାଶିତ ୪ଖଣ୍ଡ ପାଠ୍ୟପୁସ୍ତକ ଛାତ୍ର ମହଲରେ ବିଶେଷ ଆଦୃତି ଲାଭ କରିଛି । ସେ ଉଭୟ ରାଜନୀତି ବିଜ୍ଞାନ ଓ ଲୋକ ପ୍ରଶାସନ (Public Administration)ରେ ସ୍ନାତକୋତ୍ତର (ଏମ୍.ଏ.) ଉପାଧି ହାସଲ କରିଛନ୍ତି । ସେ କଟକ ସହରର ବାଙ୍କିସାହିସ୍ଥିତ ଏକ ଭଡ଼ାଘରେ ସପରିବାର ରହୁଛନ୍ତି ।

ଡକ୍ଟର (ଶ୍ରୀମତୀ) ସ୍ନିଗ୍ଧା ବିଶ୍ୱାଳ (୧୯୫୨-) କ୍ଷୁଦ୍ରଗଳ୍ପ ରଚନାରେ ବ୍ରତୀ ଅଟନ୍ତି । ତାଙ୍କର ୨ଟି ଗଳ୍ପ ସଂକଳନ 'କସ୍ତୁରୀମୃଗ ଓ ଅନ୍ୟାନ୍ୟ ଗଳ୍ପ' ଏବଂ 'ସିଦ୍ଧାର୍ଥର ଶୋକ' ପ୍ରକାଶିତ ହୋଇଛି । ସେ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ତତ୍ତ୍ୱାବଧାନରେ 'ସବୁଜ କବିତା ଓ କବି ବୈକୁଣ୍ଠନାଥ' ଶୀର୍ଷକ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୮୯ରେ ପିଏଚ୍.ଡି. ଉପାଧି ଲାଭ କରିଥିଲେ । ସେ କଟକ ସହରସ୍ଥିତ ନେତାଜୀ ସୁଭାଷ ମେମୋରିଆଲ (ଏନ୍.ଏସ୍.ଏମ୍.)) ସିଟି କଲେଜର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପିକା ତଥା ମୁଖ୍ୟ ଭାବେ ୨୦୧୨ ଜୁଲାଇ ୩୧ରେ ଅବସର ନେଇଥିଲେ । ଡକ୍ଟର (ଶ୍ରୀମତୀ) ବିଶ୍ୱାଳ 'ବସୁନ୍ଧରା' ଅନୁଷ୍ଠାନ ସହ ସମ୍ପୃକ୍ତ ଅଛନ୍ତି । ସେ ଏବେ କଟକ ସହରର ଝାଞ୍ଜିରୀମଙ୍ଗଳାସ୍ଥିତ ବାସଭବନରେ ଅବସ୍ଥାନ କରୁଛନ୍ତି ।

ଡକ୍ଟର କୈଳାସ ଚନ୍ଦ୍ର ଦାଶ (୧୯୫୪-) ବ୍ରହ୍ମପୁରସ୍ଥିତ ବିନାୟକ ଆଚାର୍ଯ୍ୟ କଲେଜର ଇତିହାସ ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ପଦରୁ ୨୦୧୨ ଅଗଷ୍ଟ ୩୧ରେ ଅବସର ଗ୍ରହଣ କରିଛନ୍ତି। ସେ ଚୋଳଗଙ୍ଗଦେବଙ୍କ ଉପରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୮୭ରେ ପିଏଚ୍.ଡି. ଉପାଧି ହାସଲ କରିଥିଲେ। ତାଙ୍କଦ୍ୱାରା ଇଂରାଜୀ ଓ ଓଡ଼ିଆରେ ରଚିତ ଗବେଷଣାତ୍ମକ ପ୍ରବନ୍ଧମାନ ବିଭିନ୍ନ ଜର୍ଣ୍ଣାଲରେ ପ୍ରକାଶିତ ହେଉଛି।

ଡକ୍ଟର ଦୟାନିଧି ପାଢ଼ୀ (୧୯୫୪-୨୦୧୬) ବାଲେଶ୍ୱରସ୍ଥିତ ଫକୀର ମୋହନ (ଏଫ୍.ଏମ୍.) ସ୍ୱୟଂଶାସିତ କଲେଜର ଇତିହାସ ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ପଦରୁ ୨୦୧୨ ଜାନୁଆରି ୩୧ରେ ଅବସର ଗ୍ରହଣ କରିଥିଲେ। ଡକ୍ଟର ଭବାନୀ ଶଙ୍କର ମିଶ୍ରଙ୍କ ତତ୍ତ୍ୱାବଧାନରେ Peoples Movement in Dhenkanal Princily State ଶୀର୍ଷକ ସନ୍ଦର୍ଭ ଲେଖି ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୨୦୦୮ରେ ପିଏଚ୍.ଡି. ଡିଗ୍ରୀ ପ୍ରାପ୍ତ ହୋଇଥିଲେ। ଡକ୍ଟର ପାଢ଼ୀ ଓଡ଼ିଶା ସରକାରୀ କଲେଜ ଶିକ୍ଷକ ସଂଘ (ଓ.ଜି.ସି.ଟି.ଏ.)ର କ୍ଷେତ୍ରୀୟ ଉପସଭାପତି ରୂପେ ୨୦୦୩ ଏପ୍ରିଲ/ ମଇରେ ନିର୍ବାଚିତ ହୋଇଥିଲେ। ଡକ୍ଟର ନଟବର ଶତପଥୀ (ସଭାପତି) ଓ ଶ୍ରୀ ତପନ ପଟ୍ଟନାୟକ (ସାଧାରଣ ସମ୍ପାଦକ)ଙ୍କ ସହ ସେ କାର୍ଯ୍ୟ କରିଥିଲେ। 'ରେଡ଼କ୍ରସ୍'ର କାର୍ଯ୍ୟକ୍ରମରେ ସେ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ ରହୁଥିଲେ। ମୃତ୍ୟୁବେଳକୁ ସେ ବାଲେଶ୍ୱର ସହରର ତାମୁଳିଆ ଗେଟ୍‌ସ୍ଥିତ ବାସଭବନରେ ସପରିବାର ରହୁଥିଲେ।

ଡକ୍ଟର (ଶ୍ରୀମତୀ) ସତ୍ୟଭାମା ପତି (୧୯୫୫-) ରମାଦେବୀ ସ୍ୱୟଂଶାସିତ ମହିଳା କଲେଜର ଇତିହାସ ବିଭାଗର ପ୍ରାଧ୍ୟାପିକା ଭାବେ ୨୦୧୩ ମାର୍ଚ୍ଚ ୩୧ରେ ଅବସର ଗ୍ରହଣ କରିଛନ୍ତି। ପ୍ରଫେସର କରୁଣାସାଗର ବେହେରାଙ୍କ ତତ୍ତ୍ୱାବଧାନରେ Democratic Movements in Feudal States of Orissa-1905 to 1948 ଶୀର୍ଷକ ସନ୍ଦର୍ଭ ଲେଖି ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୮୫ରେ ପିଏଚ୍.ଡି. ଉପାଧି ଲାଭ କରିଥିଲେ। ଏହି ସନ୍ଦର୍ଭ ଦିଲ୍ଲୀର Discovery Publishing House ଦ୍ୱାରା ୧୯୮୭ରେ ପ୍ରକାଶିତ ହୋଇଛି। ତା'ଛଡ଼ା ତାଙ୍କ ରଚିତ ୩୨ଟି ଗବେଷଣାମୂଳକ ପ୍ରବନ୍ଧ ବିଭିନ୍ନ ଜର୍ଣ୍ଣାଲର ପୃଷ୍ଠା ମଣ୍ଡନ କରିଛି। ଅଭିନୟ ଓ ନିର୍ଦ୍ଦେଶନାରେ ରୁଚି ରଖିଥିବା ଡକ୍ଟର (ଶ୍ରୀମତୀ) ପତି ଶୈଳବାଳା ମହିଳା କଲେଜରେ ବି.ଓ. ଶ୍ରେଣୀରେ ପଢୁଥିବାବେଳେ ୧୯୭୪ରେ 'ଶ୍ରେଷ୍ଠ ଅଭିନେତ୍ରୀ' ଭାବେ ପୁରସ୍କୃତ

ହୋଇଥିଲେ । ବିବାହ ପରେ କିନ୍ତୁ ସେ ଅଭିନୟଠାରୁ ସମ୍ପୂର୍ଣ୍ଣ ଦୂରେଇଯାଇଥିଲେ । ସେ ସମ୍ପ୍ରତି ଭୁବନେଶ୍ୱରର ଖଣ୍ଡଗିରି ନିକଟବର୍ତ୍ତୀ ଆନ୍ନି ଏନ୍‌କ୍ଲେଭସ୍ଥିତ ବାସଭବନରେ ସପରିବାର ରହୁଛନ୍ତି ।

**ଶ୍ରୀମତୀ ମେନକା ସୁନ୍ଦରୀ ରଥ** (୧୯୫୫-) ଚମ୍ପତିସ୍ଥିତ ଗୋପବନ୍ଧୁ ବାଳିକା ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ପଦରୁ ୨୦୧୩ ଜୁଲାଇ ୩୧ରେ ଅବସର ଗ୍ରହଣ କରିଛନ୍ତି । ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୭୮ରେ ଏମ୍.ଏ. (ସଂସ୍କୃତ) ଓ ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନ, ଭୁବନେଶ୍ୱରରୁ ୧୯୮୬ରେ ବି.ଇଡି. (ଇନ୍ ସର୍ଭିସ) ପାସ କରିଥିଲେ । 'ଗାଇଡ୍ କ୍ୟାପଟେନ୍' ଭାବରେ ସେ ଓଡ଼ିଶା ରାଜ୍ୟ ଭାରତ ସ୍କାଉଟ୍ସ ଓ ଗାଇଡ୍ସ କାର୍ଯ୍ୟରେ ନିବିଡ଼ ଭାବରେ ସଂଶ୍ଳିଷ୍ଟ ଥିଲେ । ସେ ସମ୍ପ୍ରତି କଟକ ଜିଲ୍ଲାର ଜଗତପୁର ଥାନା ଅନ୍ତର୍ଗତ ତ୍ରିଲୋଚନପୁର ଗ୍ରାମସ୍ଥିତ ବାସଭବନରେ ସପରିବାର ରହୁଛନ୍ତି ।

**ଶ୍ରୀମତୀ ସରୋଜିନୀ ତ୍ରିପାଠୀ** (୧୯୫୪-) ରେଢୁଆସ୍ଥିତ ବୃନ୍ଦାବନଚନ୍ଦ୍ର ବିଦ୍ୟାମନ୍ଦିରରୁ ୧୯୭୧ରେ ମାଟ୍ରିକ ଓ ଜଗତ୍‌ସିଂହପୁରସ୍ଥିତ ସ୍ୱାମୀ ବିବେକାନନ୍ଦ ମେମୋରିଆଲ (ଏସ୍.ଭି.ଏମ୍.) କଲେଜରୁ ୧୯୭୫ରେ ବି.ଏ. ପାସ କରିଥିଲେ । ୧୯୭୫ରେ ହିଁ ତାଙ୍କର ବିବାହ ଡାକ୍ତର ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କ ସହ ସମ୍ପନ୍ନ ହୋଇଥିଲା । ଡାକ୍ତର ତ୍ରିପାଠୀ ବିଭିନ୍ନ ସରକାରୀ ହୋମିଓପାଥି ଚିକିତ୍ସାଳୟରେ ମେଡ଼ିକାଲ ଅଫିସର ଭାବେ କାର୍ଯ୍ୟ କରିଥିଲେ । ସେ ୨୦୦୬ ଅକ୍ଟୋବର ୩୧ରେ ବାଲିଆସ୍ଥିତ ଚିକିତ୍ସାଳୟରୁ ସିନିୟର ମେଡ଼ିକାଲ ଅଫିସର (ହୋମିଓପାଥି) ପଦରୁ ଅବସର ନେଇଛନ୍ତି । ସେମାନଙ୍କର ବଡ଼ପୁଅ ଡାକ୍ତର (ହୋମିଓପାଥି) ଓ ସାନପୁଅ ଇଞ୍ଜିନିୟର ଅଛନ୍ତି । ସୁଗୃହିଣୀ ଶ୍ରୀମତୀ ତ୍ରିପାଠୀଙ୍କର ପୂଜାପାଠରେ ବିଶେଷ ଆଗ୍ରହ ରହିଛି । ସେ ଏବେ କଟକ ସହରର ମର୍କତନଗର (ସି.ଡି.ଏ.)ସ୍ଥିତ ବାସଭବନରେ ସପରିବାର ରହୁଛନ୍ତି ।

**ଶ୍ରୀ ବଂଶୀଧର ମିଶ୍ର** (୧୯୩୧-୨୦୦୦) ନିରନ୍ତର କବିତା ରଚନା ଓ ସାହିତ୍ୟ ଅନୁଶୀଳନରେ ବ୍ରତୀ ଥିଲେ । ସେ କବିତା ପୁସ୍ତକ **'ସରଗଶଶୀ'**, 'ଶ୍ରଦ୍ଧାଞ୍ଜଳି', 'ଗାଦି ମହାତ୍ମ୍ୟ', 'ଭଟ୍ଟାରିକା ପଥେ', 'ମାଆ ନାରାୟଣୀ ଦର୍ଶନେ', 'କଟକର କଥା ଓ କାହାଣୀ', 'ବିଦାୟ ଗୀତି', 'ଗୁରୁସ୍ମୃତି ଓ ପ୍ରାର୍ଥନା' ରଚନା କରିଛନ୍ତି । ଏହା ବ୍ୟତୀତ ତାଙ୍କର ବହୁତ ପାଣ୍ଡୁଲିପି ଅପ୍ରକାଶିତ ହୋଇ ରହିଛି । ଦେବାତ୍ମା ପ୍ୟାରୀ

ମୋହନ ଆଚାର୍ଯ୍ୟ, କର୍ମବୀର ଗୌରୀଶଙ୍କର ରାୟ ଓ ସଂସ୍କାରକ ବୈରାଗୀ ମିଶ୍ରଙ୍କ ପରି କବି ବଂଶୀଧର ମିଶ୍ର କିରାନି ଥିଲେ। କେନ୍ଦ୍ରାଞ୍ଚଳ ଆର୍.ଡି.ସି.ଙ୍କ କାର୍ଯ୍ୟାଳୟରେ ଅବସ୍ଥାପିତ ଶ୍ରୀ ମିଶ୍ର ୧୯୯୨ ଅଗଷ୍ଟ ୩୧ରେ ଚାକିରିରୁ ଅବସର ନେଇଥିଲେ। ସାରସ୍ୱତ ସାଧନା ପାଇଁ କଳିଙ୍ଗ ଭାରତୀ ଆଦି ଅନେକ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ସମ୍ମାନିତ କରାଯାଇଛି। ମୃତ୍ୟୁବେଳକୁ ସେ କଟକ ସହରର ପଟାପୋଲସ୍ଥିତ ବାସଭବନରେ ସପରିବାର ରହୁଥିଲେ।

ପ୍ରାଧ୍ୟାପକ ଶ୍ରୀ ଚୈତନ୍ୟ ପ୍ରସାଦ ସେଠୀ (୧୯୪୨-) ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଏକ ଉଲ୍ଲେଖନୀୟ ଆସନର ଅଧିକାରୀ ଅଟନ୍ତି। ତାଙ୍କର 'ପଦ୍ମ ପଳାସ', 'ରାସଶ୍ରୀ', 'କେତେ ଅଧ୍ୟାୟ', 'ଆତ୍ମୀୟ', 'ନଈ ସେପାରି', 'ମାଣିକ', 'ଦାସିଆ' କବିତାଗୁଚ୍ଛ ପ୍ରକାଶିତ ହୋଇଛି। ସେ ଅନେକ ପ୍ରବନ୍ଧ ମଧ୍ୟ ରଚନା କରିଛନ୍ତି ଏବଂ ତତ୍‌ମଧ୍ୟରୁ 'କବିତା ଓ ଦର୍ଶନ' ବେଶ୍ ପ୍ରଭାବଶାଳୀ ମନେହୁଏ। ସେ ରେଭେନ୍‌ସା ଜୁନିୟର କଲେଜର ଦର୍ଶନ ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ଭାବେ ୨୦୦୦ ଅଗଷ୍ଟ ୩୧ରେ ଅବସର ଗ୍ରହଣ କରିଥିଲେ। ସାହିତ୍ୟ ସାଧନା ପାଇଁ ଶ୍ରୀ ସେଠୀ 'ଧରିତ୍ରୀ', 'ସହକାର', 'ଜୀବନରଙ୍ଗ' ପକ୍ଷରୁ ସମ୍ମାନିତ ହୋଇଛନ୍ତି। ସେ ସମ୍ପ୍ରତି କଟକ ସହରର ବିଶିନାବରସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

ଡକ୍ଟର ହୃଷିକେଶ ମଲ୍ଲିକ (୧୯୫୪-) ଓଡ଼ିଆ କବିତା ଜଗତର ଏକ ସୁପରିଚିତ ବ୍ୟକ୍ତିତ୍ୱ ଅଟନ୍ତି। ଏଯାବତ୍ ତାଙ୍କର ୧୦ଟି କବିତା ସଂକଳନ ପ୍ରକାଶ ପାଇଛି। ସେ ପ୍ରଫେସର ନୀଳାଦ୍ରି ଭୂଷଣ ହରିଚନ୍ଦନଙ୍କ ତତ୍ତ୍ୱାବଧାନରେ 'ଶ୍ରୀରାଧା ଓ ମୀରା- ଏକ ତୁଳନାତ୍ମକ ଅଧ୍ୟୟନ' ଶୀର୍ଷକ ନିବନ୍ଧ ଲେଖି ବିଶ୍ୱଭାରତୀ, ଶାନ୍ତିନିକେତନରୁ ପିଏଚ୍.ଡି. ଡିଗ୍ରୀ ପ୍ରାପ୍ତ ହୋଇଥିଲେ। ସେ ପୁରୀସ୍ଥିତ ସାମନ୍ତ ଚନ୍ଦ୍ରଶେଖର (ଏସ୍.ସି.ଏସ୍.) ସ୍ୱୟଂଶାସିତ କଲେଜର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ଭାବେ ୨୦୧୨ ଅକ୍ଟୋବର ୩୧ରେ ଅବସର ନେଇଥିଲେ। ଡକ୍ଟର ମଲ୍ଲିକ ୧୯୮୬ରେ ପ୍ରକାଶିତ 'ଧାନ ସାଉଣ୍ଟା ଝିଅ' ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ। ସେ ୨୦୧୬ରେ ସମ୍ମାନଜନକ ସାରଳା ପୁରସ୍କାର ନିଜର କାବ୍ୟିକ କୃତି ପାଇଁ ଲାଭ କରିଥିଲେ। ସେ ସମ୍ପ୍ରତି ଭୁବନେଶ୍ୱରର ଶ୍ରୀଅରବିନ୍ଦ ନଗରସ୍ଥିତ ବାସଭବନରେ ସପରିବାର ଅବସ୍ଥାନ କରୁଛନ୍ତି।

**ପ୍ରାଧ୍ୟାପକ ଶ୍ରୀ ଜୟଚନ୍ଦ୍ର ସାହୁ** (୧୯୫୧-) ବଲାଙ୍ଗୀରସ୍ଥିତ ରାଜେନ୍ଦ୍ର ସ୍ୱୟଂଶାସିତ କଲେଜର ଗଣିତ ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ପଦରୁ ୨୦୦୯ ମାର୍ଚ୍ଚ ୩୧ରେ ଅବସର ଗ୍ରହଣ କରିଛନ୍ତି। ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ୧୯୮୮-୧୯୮୯ ଶିକ୍ଷାବର୍ଷରେ ଏମ୍.ଫିଲ୍. ଡିଗ୍ରୀ ଲାଭ କରିଥିଲେ। ସମାଜସେବାରେ ରୁଚି ରଖିଥିବା ଶ୍ରୀ ସାହୁ ବିଭିନ୍ନ ସେବାମୂଳକ କାର୍ଯ୍ୟରେ ନିଜକୁ ଜଡ଼ିତ ରଖିଛନ୍ତି। ତା'ଛଡ଼ା ସେ ଆର୍ଯ୍ୟ ସମାଜ ସହ ମଧ୍ୟ ସମ୍ପୃକ୍ତ ଅଛନ୍ତି। ସେ ସମ୍ପ୍ରତି ବଲାଙ୍ଗୀର ସହରର ପ୍ୟାଲେସ୍ ଲାଇନ୍‌ସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

**ଶ୍ରୀ ସୁଧାଂଶୁ ମୋହନ ରାଉତରାୟ** (୧୯୫୫-) ଭାରତୀୟ ରିଜର୍ଭ ବ୍ୟାଙ୍କ୍‌ର ମୁମ୍ବାଇସ୍ଥିତ କେନ୍ଦ୍ରୀୟ କାର୍ଯ୍ୟାଳୟରୁ ସାଧାରଣ ପରିଚାଳକ (ଜେନେରାଲ ମ୍ୟାନେଜର) ଭାବେ ୨୦୧୫ ମାର୍ଚ୍ଚ ୩୧ରେ ଅବସର ନେଇଛନ୍ତି। ସେ ୧୯୭୮ରେ ଫକୀର ମୋହନ କଲେଜ, ବାଲେଶ୍ୱରରେ ଇତିହାସ ବିଭାଗର ଅଧ୍ୟାପକ ରୂପେ ଯୋଗଦେଇ କର୍ମମୟ ଜୀବନ ଆରମ୍ଭ କରିଥିଲେ। ରିଜର୍ଭ ବ୍ୟାଙ୍କ୍‌ର 'ଅଫିସର ଗ୍ରେଡ଼୍-ଏ' ଲାଗି ମନୋନୀତ ହୋଇ ସେ ୧୯୮୧ରେ କଲିକତା କାର୍ଯ୍ୟାଳୟରେ ଯୋଗଦେଇଥିଲେ। ଆଇ.ଏ.ଏସ୍. ଆଦି ପାଇଁ ଅନୁଷ୍ଠିତ ସର୍ବଭାରତୀୟ ପ୍ରତିଯୋଗିତାମୂଳକ ପରୀକ୍ଷାରେ ସେ ୨ଥର କୃତକାର୍ଯ୍ୟ ହୋଇ ମଧ୍ୟ ସେଥିକୁ ମନବଳାଇ ନଥିଲେ। ପର୍ବତାରୋହଣରେ ରୁଚି ରଖିଥିବା ଶ୍ରୀ ରାଉତରାୟ ପ୍ରସିଦ୍ଧ Himalayan Mountaineering Institute, ଦାର୍ଜିଲିଂରେ Basic Mountaineering Course ଗ୍ରହଣ କରିଛନ୍ତି। ହିମାଳୟ ପର୍ବତମାଳାରେ ସେ ଅନେକ ପର୍ବତାରୋହଣ ଅଭିଯାନରେ ଭାଗ ନେଇଛନ୍ତି। ମୋଟର ସାଇକେଲରେ ଦୂରସ୍ଥାନକୁ ଯାତ୍ରା କରିବାରେ ମଧ୍ୟ ତାଙ୍କର ବିଶେଷ ଆଗ୍ରହ ରହିଛି। ସେ ଦେଶର ବିଭିନ୍ନ ସ୍ଥାନକୁ ମୋଟର ସାଇକେଲ (ବୁଲେଟ୍)ରେ ଯାତ୍ରା କରିଛନ୍ତି। ଶ୍ରୀ ରାଉତରାୟ ଏବେ ଭୁବନେଶ୍ୱରର କଳିଙ୍ଗ ବିହାରସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

**ପ୍ରଫେସର ଅମୂଲ୍ୟକୃଷ୍ଣ ମିଶ୍ର** (୧୯୩୨-୨୦୦୧) ରାଜ୍ୟର ଜଣେ ପ୍ରମୁଖ ଶିକ୍ଷାବିତ୍, ସାହିତ୍ୟିକ ଓ ସଂଗଠକ ରୂପେ ବିଦିତ ଅଟନ୍ତି। ସେ ୬ଟି ଉପନ୍ୟାସ ('କୁଳବଧୂ', 'ନିଷ୍କୃତି' ଆଦି), ୭ଟି ଗଳ୍ପ ସଂକଳନ ('ଆହତ କପୋତ', 'ଚାଣକ୍ୟଙ୍କ ଶପଥ' ଆଦି), ୩ଟି ଜୀବନୀ ('ଅଲିଭା ଶିଖା' ଆଦି), ୨ଟି ପାଠ୍ୟପୁସ୍ତକ (ଇଂରାଜୀ)କୁ ମିଶାଇ ୩୫ଖଣ୍ଡ ପୁସ୍ତକ ରଚନା କରିଛନ୍ତି। ପଦାର୍ଥ ବିଜ୍ଞାନର ଅଧ୍ୟାପକ ହୋଇ ସୁଦ୍ଧା

ଓଡ଼ିଆ ଭାଷା ଓ ସାହିତ୍ୟରେ ବିଶେଷ ଆଗ୍ରହ ଥିବା ଯୋଗୁଁ ସେ ତହିଁରେ ପିଏଚ୍.ଡି. କରିଥିଲେ। ପ୍ରଫେସର ବଂଶୀଧର ମହାନ୍ତିଙ୍କ ତତ୍ତ୍ୱାବଧାନରେ ଭକ୍ତକବି ସାଲବେଗଙ୍କ ଉପରେ ଗବେଷଣା କରି ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧି ପ୍ରାପ୍ତ ହୋଇଥିଲେ। ଓଡ଼ିଶା ସରକାରୀ କଲେଜ ଶିକ୍ଷକ ସଂଘର ସଭାପତି ଥାଇ (୧୯୮୬-୧୯୮୮) ପ୍ରଫେସର ମିଶ୍ର ନିଜର ସାଂଗଠନିକ ଦକ୍ଷତା ପ୍ରତିପାଦନ କରିଥିଲେ। ବର୍କ୍ସି ଜଗବନ୍ଧୁ ବିଦ୍ୟାଧର (ବି.ଜେ.ବି.) କଲେଜର ଅଧ୍ୟକ୍ଷ (ପ୍ରଫେସର ଗ୍ରେଡ଼୍) ପଦରୁ ସେ ୧୯୯୦ ଡିସେମ୍ବର ୩୧ରେ ଅବସର ନେଇଥିଲେ। ମୃତ୍ୟୁବେଳକୁ ସେ ଭୁବନେଶ୍ୱରର ଖାରବେଳ ନଗରସ୍ଥିତ ବାସଭବନରେ ସପରିବାର ଅବସ୍ଥାନ କରୁଥିଲେ।

ଡକ୍ଟର ଶ୍ୟାମସୁନ୍ଦର ମିଶ୍ର (୧୯୩୨-) ରାଜ୍ୟର ଅନେକ ସାହିତ୍ୟ, ସଂସ୍କୃତି ଓ କଳା ଅନୁଷ୍ଠାନ ସହ ଘନିଷ୍ଠ ଭାବରେ ସମ୍ପୃକ୍ତ ଅଛନ୍ତି। ତାଙ୍କ ରଚିତ ଉପନ୍ୟାସ ('ଚକୋରୀ' ଓ 'ଯୋଗଜନ୍ମା'), ଆଲୋଚନା ('ଓଡ଼ିଆ ସାହିତ୍ୟର ଭିନ୍ନ ଦିଗନ୍ତ'), କ୍ଷୁଦ୍ରଗଳ୍ପ ('ସ୍ୱୟଂସମ୍ପୂର୍ଣ୍ଣା'), ରମ୍ୟରଚନା ('ଢିଙ୍କି ଦେ ଚମକାଇ'), ଶିଶୁସାହିତ୍ୟ ('ମହତ ସହିବା ଜନ', 'ଅନୁପମା' ଓ 'କଥା ସରିତ ସାଗର'), 'ଅନୁବାଦ' ('ଜଣେ ଶାସକର ସ୍ମୃତି', 'ଦୈବୀଗୁରୁ') ଇତ୍ୟାଦି ପ୍ରକାଶିତ ହୋଇଛି। ସେ ପ୍ରଫେସର ଅସିତ କବିଙ୍କ ତତ୍ତ୍ୱାବଧାନରେ 'ଓଡ଼ିଆ ସାହିତ୍ୟକୁ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଦାନ' ଶୀର୍ଷକ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୮୫ରେ ପଏଚ୍.ଡି. ଉପାଧି ପାଇଥିଲେ। ସେ ରେଭେନ୍ସା କଲେଜର ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ପ୍ରାଧ୍ୟାପକ ଭାବେ ୧୯୯୨ ଜାନୁଆରି ୩୧ରେ ଅବସର ଗ୍ରହଣ କରିଥିଲେ। ଡକ୍ଟର ମିଶ୍ର 'ଶିକ୍ଷା ବିକାଶ ସମିତି, ଓଡ଼ିଶା'ର ମୁଖପତ୍ର 'ଶିକ୍ଷାସୃଜନୀ'ର ମୁଖ୍ୟ ସମ୍ପାଦକ ଅଛନ୍ତି। ସେ ତାଙ୍କର ଝାଞ୍ଜିରୀମଙ୍ଗଳାସ୍ଥିତ ବାସଭବନରେ ସପରିବାର ଅବସ୍ଥାନ କରୁଛନ୍ତି ଏବଂ କଟକ ସହରର ଜନଜୀବନ ସହିତ ଓତପ୍ରୋତ ଭାବରେ ଜଡ଼ିତ ଅଛନ୍ତି।

ପ୍ରଫେସର ଗଣେଶ ପ୍ରସାଦ ଦାସ (୧୯୪୫-) ଜୀବନବ୍ୟାପୀ ଦର୍ଶନଶାସ୍ତ୍ର ଅଧ୍ୟୟନ, ଅଧ୍ୟାପନା ଓ ଗବେଷଣାରେ ଲିପ୍ତ ଅଛନ୍ତି। ସେ ୧୯୭୦ରେ ଉତ୍କଳ ବିଶ୍ୱବିଦ୍ୟାଳୟର ଏମ୍.ଏ. (ଦର୍ଶନ) ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ବିଜେତା ହୋଇଥିଲେ। ପ୍ରଫେସର ଗଣେଶ୍ୱର ମିଶ୍ରଙ୍କ ତତ୍ତ୍ୱାବଧାନରେ ଅଦ୍ୱୈତ ବେଦାନ୍ତ ଉପରେ ଶୋଧପ୍ରବନ୍ଧ ରଚନା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ

ପିଏଚ୍.ଡି. ଉପାଧି ପ୍ରାପ୍ତ ହୋଇଥିଲେ। ତାଙ୍କ ଅଧୀନରେ ଗବେଷଣା କରି ୧୨ଜଣ ବ୍ୟକ୍ତି 'ଡକ୍ଟରେଟ' ଲାଭ କରିଛନ୍ତି। ସେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଦର୍ଶନ ବିଭାଗର ପ୍ରଫେସର ଭାବେ ୨୦୦୫ ଜାନୁଆରିରେ ଅବସର ନେଇଥିଲେ। ୨୦୧୫ ଜାନୁଆରିରେ ରାଜମହେନ୍ଦ୍ରୀସ୍ଥିତ ଆଦିକବି ନାନାୟା ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ଭାରତୀୟ ଦର୍ଶନ କଂଗ୍ରେସର ୮୯ତମ ଅଧିବେଶନରେ ଏବଂ ୨୦୧୬ ଜାନୁଆରିରେ ଜଗତ୍‌ସିଂହପୁରସ୍ଥିତ ସ୍ୱାମୀ ବିବେକାନନ୍ଦ ମେମୋରିଆଲ (ଏସ୍.ଭି.ଏମ୍.) କଲେଜରେ ଅନୁଷ୍ଠିତ ନିଖିଳ ଉତ୍କଳ ଦର୍ଶନ ପରିଷଦର ୨୮ତମ ଅଧିବେଶନରେ ସଭାପତିତ୍ୱ କରି ଦର୍ଶନ ଜଗତକୁ ଗୌରବାନ୍ୱିତ କରିଛନ୍ତି।

**ପ୍ରାଧ୍ୟାପିକା (ଶ୍ରୀମତୀ) ପ୍ରତିଭା ପ୍ରଧାନ** (୧୯୪୬-) ପୁରୀସ୍ଥିତ ସାମନ୍ତ ଚନ୍ଦ୍ରଶେଖର (ଏସ୍.ସି.ଏସ୍.) ସ୍ୱୟଂଶାସିତ କଲେଜର ମନସ୍ତତ୍ତ୍ୱ ବିଭାଗର ପ୍ରାଧ୍ୟାପିକା ତଥା ମୁଖ୍ୟ ଭାବେ ୨୦୦୪ ଜୁଲାଇ ୩୧ରେ ଅବସର ଗ୍ରହଣ କରିଛନ୍ତି। ଚାକିରିକାଳ ମଧ୍ୟରେ ସେ ଢେଙ୍କାନାଳ ମହିଳା ମହାବିଦ୍ୟାଳୟ ଓ ଶୈଳବାଳା ମହିଳା ଜୁନିୟର କଲେଜର ଅଧ୍ୟକ୍ଷ ପଦରେ ଅବସ୍ଥାପିତ ହୋଇଥିଲେ। ତା'ଛଡ଼ା ଶୈଳାବାଳା ମହିଳା କଲେଜର ଉପାଧ୍ୟକ୍ଷ ଦାୟିତ୍ୱ ମଧ୍ୟ ନିର୍ବାହ କରିଥିଲେ। ଅଧ୍ୟାପନା ତଥା ପ୍ରଶାସନିକ କାର୍ଯ୍ୟରେ ସେ କର୍ତ୍ତବ୍ୟନିଷ୍ଠାକୁ ସର୍ବାଧିକ ଗୁରୁତ୍ୱ ଦେଉଥିଲେ। ଶ୍ରୀମତୀ ପ୍ରଧାନ ସମ୍ପ୍ରତି କଟକ ସହରର ସାମନ୍ତସାହିସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

**ଡକ୍ଟର ନଟବର ଶତପଥୀ** (୧୯୪୮-) ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ ଜଗତର ଜଣେ ଖ୍ୟାତନାମା ବ୍ୟକ୍ତି। ତାଙ୍କ ପ୍ରଣୀତ 'ଶବ୍ଦସିନ୍ଧୁ' ସର୍ବବୃହତ ଓ ସର୍ବାଧୁନିକ ଓଡ଼ିଆ ଅଭିଧାନ ରୂପେ ବିବେଚିତ ହୁଏ। 'ସାରଳା ଶବ୍ଦ ଓ ସୂକ୍ତିକୋଷ' ଓଡ଼ିଆ ଭାଷାର ପ୍ରଥମ କନ୍‌କରଡାନ୍ସ (concordance)ର ମାନ୍ୟତା ଲାଭ କରିଛି। ଏହାଛଡ଼ା ସେ ଆଉ ପ୍ରାୟ ୧୦ଖଣ୍ଡ ପୁସ୍ତକ ରଚନା କରିଛନ୍ତି। ତାଙ୍କ ଅଧୀନରେ ଗବେଷଣା କରି ପ୍ରାୟ ୧୨ଜଣ ବ୍ୟକ୍ତି 'ଡକ୍ଟରେଟ' ଲାଭ କରିଛନ୍ତି। ସେ ରେଭେନ୍‌ସା କଲେଜର ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ପଦରୁ ୨୦୦୬ ଜୁନ୍ ୩୦ରେ ଅବସର ନେଇଥିଲେ। ୨୦୧୬ରେ ସେ ରାଜ୍ୟର ଏକ ସମ୍ମାନଜନକ ପୁରସ୍କାର 'ବିଷୁବ ପୁରସ୍କାର' ଲାଭ କରିଛନ୍ତି। ଡକ୍ଟର ଶତପଥୀ ସମ୍ପ୍ରତି କଟକ ସହରର ମର୍କତନଗର (ସି.ଡି.ଏ.)ସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

ପ୍ରାଧ୍ୟାପକ ଶ୍ରୀ ଧନେଶ୍ୱର ସାହୁ (୧୯୪୯-) ଜଣେ ଶିକ୍ଷାବିତ୍ ତଥା ପ୍ରାବନ୍ଧିକ ଭାବରେ ସୁନାମ ଅର୍ଜନ କରିଛନ୍ତି। ତାଙ୍କ ରଚିତ 'ସଂସ୍କୃତି ଓ ସର୍ବୋଦୟ', 'ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ', 'ଜୀବନ ଓ ଜିଜ୍ଞାସା' ଆଦି ୧୭ଖଣ୍ଡ ପୁସ୍ତକ ପାଠକ ମହଲରେ ବିଶେଷ ଚର୍ଚ୍ଚିତ ହୋଇଛି। ସେ ଇଂରାଜୀରେ ୨ଟି ପୁସ୍ତକ Philosophy, Society and Culture ଓ Strawson's Concept of Descriptive Metaphysics ରଚନା କରିଛନ୍ତି। ଶ୍ରୀ ସାହୁ ୧୯୭୩ରେ ଉତ୍କଳ ବିଶ୍ୱବିଦ୍ୟାଳୟର ଏମ୍.ଏ. (ଦର୍ଶନ) ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ବିଜେତା ହୋଇଥିଲେ। ସେ ବକ୍ସି ଜଗବନ୍ଧୁ ବିଦ୍ୟାଧର (ବି.ଜେ.ବି.) ସ୍ୱୟଂଶାସିତ କଲେଜର ଦର୍ଶନ ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ପଦରୁ ୨୦୦୭ ଅଗଷ୍ଟ ୩୧ରେ ଅବସର ନେଇଥିଲେ। ଶ୍ରୀ ସାହୁ 'ସଂସ୍କୃତି ଓ ସର୍ବୋଦୟ' ପାଇଁ ୨୦୧୦ରେ ଓଡ଼ିଶା ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇଥିଲେ। ତା'ଛଡ଼ା ହେତୁବାଦର ପ୍ରସାର ଦିଗରେ ଅବଦାନ ଯୋଗୁଁ ୨୦୧୪ରେ ପେରିୟାର ଇଣ୍ଟରନ୍ୟାସନାଲ ଅନୁଷ୍ଠାନ ତାଙ୍କୁ ପୁରସ୍କୃତ କରିଥିଲା। ସେ ସମ୍ପ୍ରତି ଢେଙ୍କାନାଳ ସହରର ଭାଗୀରଥି ବିହାରସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

ଡକ୍ଟର (ଶ୍ରୀମତୀ) ସୁଲୋଚନା ଦାସ (୧୯୪୯-) ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ସମୃଦ୍ଧ କରିଛନ୍ତି। ତାଙ୍କ ରଚିତ 'ଟୋପାଏ କାକର' (ଉପନ୍ୟାସ), 'ଭଙ୍ଗୁର' (ଗଳ୍ପ), 'ସ୍ୱୟମ୍ବରା' (କବିତା), 'ଅବୁଝା ଅନ୍ଧାର' (ନିବନ୍ଧ) 'ମାଟିରୁ ଆକାଶ' (ଜୀବନୀ) ଆଦି ପ୍ରାୟ ୪୫ଟି ଗ୍ରନ୍ଥ ପ୍ରକାଶ ପାଇଛି। ତାଙ୍କ ଅଧୀନରେ ଗବେଷଣା କରି ୭ଜଣ ବ୍ୟକ୍ତି 'ଡକ୍ଟରେଟ' ଲାଭ କରିଛନ୍ତି। ସେ ଶୈଳବାଳା ମହିଳା କଲେଜର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ପ୍ରାଧ୍ୟାପିକା ତଥା ମୁଖ୍ୟ ଭାବେ ୨୦୦୭ ଜାନୁଆରି ୩୧ରେ ଅବସର ନେଇଥିଲେ। ସେ 'ଅବୁଝା ଅନ୍ଧାର' ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ୨୦୦୩ରେ ପୁରସ୍କୃତ ହୋଇଥିଲେ। ତା'ଛଡ଼ା ଉତ୍କଳ ସାହିତ୍ୟ ସମାଜ, ପ୍ରଜାତନ୍ତ୍ର ପ୍ରଚାର ସମିତି ଆଦି ଅନୁଷ୍ଠାନ ପକ୍ଷରୁ ନିଜର ସାହିତ୍ୟ କୃତି ପାଇଁ ପୁରସ୍କାର ଲାଭ କରିଛନ୍ତି। ଡକ୍ଟର (ଶ୍ରୀମତୀ) ଦାସ ସମ୍ପ୍ରତି କଟକ ସହରର ଶ୍ରୀରାମନଗରସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

ଡକ୍ଟର ପତିତପାବନ ବାନାର୍ଜୀ (୧୯୫୨-) ଜଣେ ବରିଷ୍ଠ ଶିକ୍ଷାବିତ୍ ତଥା ବିଶିଷ୍ଟ ସଂସ୍କୃତଜ୍ଞ ଭାବରେ ସୁପରିଚିତ ଅଟନ୍ତି। ସେ ପ୍ରଫେସର କୁଳମଣି ମିଶ୍ରଙ୍କ

ତତ୍ତ୍ୱାବଧାନରେ Critical Edition of Vrajayuvavilasamahakavyam ଶୀର୍ଷକ ସନ୍ଦର୍ଭ ଲେଖି ରାଷ୍ଟ୍ରୀୟ ସଂସ୍କୃତ ସଂସ୍ଥାନରୁ ୧୯୮୨ରେ ପିଏଚ୍.ଡି. ଏବଂ ପ୍ରଫେସର ବାଚସ୍ପତି ଶର୍ମା ତ୍ରିପାଠୀଙ୍କ ତତ୍ତ୍ୱାବଧାନରେ Evolution of Sanskrit Lyric Poetry of Orissa ଶୀର୍ଷକ ନିବନ୍ଧ ଲେଖି କେ.ଏସ୍. ଦରଭଙ୍ଗା ସଂସ୍କୃତ ବିଶ୍ୱବିଦ୍ୟାଳୟରୁ ୧୯୯୦ରେ ଡି.ଲିଟ୍. ଡିଗ୍ରୀ ପ୍ରାପ୍ତ ହୋଇଥିଲେ। ଏହି ଉଭୟ ଥିସିସ୍ ଜାତୀୟସ୍ତରର ପ୍ରକାଶନ ସଂସ୍ଥାଦ୍ୱାରା ପ୍ରକାଶିତ ହୋଇ ବିଦ୍ୱାନ୍‌ମାନଙ୍କଦ୍ୱାରା ଆଦୃତି ଲାଭ କରିଛି। ପ୍ରଫେସର ବାନାର୍ଜୀଙ୍କ ଅଧୀନରେ ଗବେଷଣା କରି ୩ଜଣ ଅଧ୍ୟାପକ 'ଡକ୍ଟରେଟ' ହାସଲ କରିଛନ୍ତି। ସେ ଯାଜପୁରସ୍ଥିତ ନରସିଂହ ଚୌଧୁରୀ ସ୍ୱୟଂଶାସିତ କଲେଜର ଅଧ୍ୟକ୍ଷ ପଦରୁ ୨୦୧୦ ଅଗଷ୍ଟ ୩୧ରେ ଅବସର ଗ୍ରହଣ କରିଥିଲେ। ସଂସ୍କୃତ ଓ ଇଂରାଜୀରେ ତାଙ୍କ ରଚିତ ୪୦ରୁ ଊର୍ଦ୍ଧ୍ୱ ଗବେଷଣାତ୍ମକ ପ୍ରବନ୍ଧ ବିଭିନ୍ନ ଜର୍ଣ୍ଣାଲରେ ପ୍ରକାଶିତ ହୋଇଛି। ସେ 'ଅନେକ ସ୍ୱରର ବଂଶୀ', 'ଭକ୍ତି ତରଙ୍ଗିଣୀ', 'ରୂପାନ୍ତର', 'ମହାଦୀପ', 'ମଙ୍ଗଳମୟୀ' ଆଦି ୭ଟି ପୁସ୍ତକ ପ୍ରଣୟନ କରିଛନ୍ତି ଏବଂ ଏହା ଓଡ଼ିଆ ସାହିତ୍ୟକୁ ସମୃଦ୍ଧି କରିଛି। ସେ କଟକ ଜିଲ୍ଲାର ମାହାଙ୍ଗା ଥାନା ଅନ୍ତର୍ଗତ ଶ୍ରୀକୃଷ୍ଣପୁର ଗ୍ରାମସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

**ଡକ୍ଟର ଅଶୋକ କୁମାର ରାୟ** (୧୯୫୪-) ଯାଜପୁରସ୍ଥିତ ନରସିଂହ ଚୌଧୁରୀ ସ୍ୱୟଂଶାସିତ କଲେଜର ଦର୍ଶନ ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ଭାବେ ୨୦୧୨ ଅକ୍ଟୋବର ୩୧ରେ ଅବସର ଗ୍ରହଣ କରିଛନ୍ତି। ସେ ପ୍ରଫେସର ମନୀନ୍ଦ୍ରନାଥ ସିହ୍ନାଙ୍କ ତତ୍ତ୍ୱାବଧାନରେ A Concept of Non-Violence: Gandhian View ଶୀର୍ଷକ ସନ୍ଦର୍ଭ ଲେଖି ବି.ଆର୍. ଆମ୍ବେଦକର ବିହାର ବିଶ୍ୱବିଦ୍ୟାଳୟ, ମୁଜାଫରପୁରରୁ ୨୦୦୧ରେ ପିଏଚ୍.ଡି. ଉପାଧି ପ୍ରାପ୍ତ ହୋଇଥିଲେ। ଉଭୟ କ୍ରୀଡ଼ା ଓ ସମାଜସେବାରେ ରୁଚି ରଖିଥିବା ଡକ୍ଟର ରାୟ ରାମକୃଷ୍ଣ ମିଶନ ଆଶ୍ରମର ସେବାକାର୍ଯ୍ୟରେ ନିଜକୁ ଜଡ଼ିତ ରଖିଛନ୍ତି ଏବଂ ଗୌରୀଶଙ୍କର ସ୍ମୃତି ସଂସଦ ଓ ଓଡ଼ିଶା ପ୍ରଦେଶ କାୟସ୍ଥ ସଭା ସହ ସମ୍ପୃକ୍ତ ଅଛନ୍ତି। ସେ ସମ୍ପ୍ରତି କଟକ ସହରର ମର୍କତନଗର (ସି.ଡି.ଏ.) ସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

**ଡକ୍ଟର ଲକ୍ଷ୍ମଣ କୁମାର ଚୌଧୁରୀ** (୧୯୫୫-) ସରକାରୀ କଲେଜ, ଅନୁଗୁଳର ସ୍ନାତକୋତ୍ତର ଅର୍ଥନୀତି ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ପଦରୁ ୨୦୧୩ ଏପ୍ରିଲ ୩୦ରେ ଅବସର ଗ୍ରହଣ କରିଛନ୍ତି। ସେ ଡକ୍ଟର ସୟଦ୍ ମେହେମୁଦ ଅଲି ଓ

ପ୍ରଫେସର ବାସୁଦେବ ସାହୁଙ୍କ ଦ୍ୱୈତ ତତ୍ତ୍ୱାବଧାନରେ Economics of Fishing Trade with Special Reference to Prawn Trade in Orissa ଶୀର୍ଷକ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୨୦୦୧ରେ ପିଏଚ୍.ଡି. ଉପାଧି ହାସଲ କରିଥିଲେ। ଉତ୍ତମ ଅଧାପନା ଶୈଳୀ ପାଇଁ ଛାତ୍ର ମହଲରେ ବିଶେଷ ଆଦୃତି ଲାଭ କରିଥିବା ଡକ୍ଟର ଚୌଧୁରୀ ଜୀବନସାରା ଅଧ୍ୟୟନ ଓ ଅଧାପନାରେ ବ୍ୟାପୃତ୍ତ ଅଛନ୍ତି। ସେ ସମ୍ପ୍ରତି ଭୁବନେଶ୍ୱରର ଡୁମୁଡୁମା ଭିଲେଜସ୍ଥିତ ବାସଭବନରେ ସପରିବାର ଅବସ୍ଥାନ କରୁଛନ୍ତି।

ଡକ୍ଟର ପ୍ରଫୁଲ୍ଲ କୁମାର ମାନସିଂହ (୧୯୫୫-) ପୁରୀସ୍ଥିତ ସାମନ୍ତ ଚନ୍ଦ୍ରଶେଖର (ଏସ୍.ସି.ଏସ୍.) ସ୍ୱୟଂଶାସିତ କଲେଜର ଅର୍ଥନୀତି ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ପଦରୁ ୨୦୧୩ ମାର୍ଚ୍ଚ ୩୧ରେ ଅବସର ଗ୍ରହଣ କରିଛନ୍ତି। ପ୍ରଫେସର ସୁଧାକର ପାତ୍ରଙ୍କ ତତ୍ତ୍ୱାବଧାନରେ Institutional Credit and Rural Devel-opment : A Study in Puri District in Orissa ଶୀର୍ଷକ ସନ୍ଦର୍ଭ ଲେଖି ଫକୀର ମୋହନ (ଏଫ୍.ଏମ୍.) ବିଶ୍ୱବିଦ୍ୟାଳୟରୁ ୨୦୦୮ରେ ପିଏଚ୍.ଡି. ଡିଗ୍ରୀ ହାସଲ କରିଥିଲେ। ଯୁକ୍ତଦୁଇ ଓ ଯୁକ୍ତତିନି ଶ୍ରେଣୀ ପାଇଁ ସେ ଇଂରାଜୀ ଓ ଓଡ଼ିଆରେ ୪ଖଣ୍ଡ ଲେଖାଏଁ ପାଠ୍ୟପୁସ୍ତକ ପ୍ରଣୟନ କରିଛନ୍ତି। ଏହି ପୁସ୍ତକଗୁଡ଼ିକ ଛାତ୍ର ମହଲରେ ବିଶେଷ ଆଦୃତି ଲାଭ କରିଛି। ଅଧୁନାତନ ଘଟଣାବଳୀ ଉପରେ ଏଯାବତ୍ ତାଙ୍କ ରଚିତ ପ୍ରାୟ ୩୦ଟି ପ୍ରବନ୍ଧ 'ସମାଜ' ଓ 'ସମ୍ବାଦ'ରେ ପ୍ରକାଶ ପାଇଅଛି। ସେ ସମ୍ପ୍ରତି ଭୁବନେଶ୍ୱରର ଟଙ୍କପାଣି ରୋଡ଼ସ୍ଥିତ ଏକ ଫ୍ଲାଟ୍‌ରେ ସପରିବାର ବାସ କରୁଛନ୍ତି।

ପ୍ରାଧ୍ୟାପକ ଶ୍ରୀ ପ୍ରଭାତ ରଞ୍ଜନ ପରିଡ଼ା (୧୯୫୫-) ସରକାରୀ ମହିଳା କଲେଜ, ସମ୍ବଲପୁରର ଭୂଗୋଳ ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ଭାବେ ୨୦୧୩ ଜାନୁଆରୀ ୩୧ରେ ଅବସର ଗ୍ରହଣ କରିଛନ୍ତି। ବିଦେଶ ଭ୍ରମଣରେ ତାଙ୍କର ରୁଚି ରହିଛି ଏବଂ ସେ ୟୁ.ଏସ୍.ଏ. ଯାଇ ସେଠାରେ ୯ମାସ ବିତାଇଛନ୍ତି। ଜଣେ ଛାତ୍ରବତ୍ସଳ ଅଧାପକ ଭାବେ ବିଦିତ ଶ୍ରୀ ପରିଡ଼ା ଜୀବନବ୍ୟାପୀ ଅଧ୍ୟୟନ ଓ ଅଧାପନାରେ ଲିପ୍ତ ଅଛନ୍ତି। ସେ କଟକ ସହରର ଜଗନ୍ନାଥ ଲେନ୍‌ସ୍ଥିତ ନିଜସ୍ୱ ଫ୍ଲାଟ୍‌ରେ ସପରିବାର ବାସ କରୁଛନ୍ତି।

ଡକ୍ଟର ସୀମାଞ୍ଚଳ ପ୍ରଧାନ (୧୯୬୭-) ବରପାଲିସ୍ଥିତ ବରପାଲି କଲେଜରେ ତର୍କ ଓ ଦର୍ଶନ ବିଭାଗର ଅଧାପକ ଅଛନ୍ତି। ପ୍ରଫେସର ଭଗବନ୍ତ ସିଂହଙ୍କ ତତ୍ତ୍ୱାବଧାନରେ

Criterion of Values and Principles of Action ଶୀର୍ଷକ ସନ୍ଦର୍ଭ ରଚନା କରି ସେ ପଣ୍ଡିତ ରବିଶଙ୍କର ଶୁକ୍ଳା ବିଶ୍ୱବିଦ୍ୟାଳୟ, ରାୟପୁରରୁ ୨୦୧୬ରେ ପିଏଚ୍.ଡି. ଡିଗ୍ରୀ ଲାଭ କରିଥିଲେ। ତାଙ୍କ ରଚିତ ପ୍ରାୟ ୧୫ଟି ଗବେଷଣାତ୍ମକ ନିବନ୍ଧ ବିଭିନ୍ନ ଜର୍ଣ୍ଣାଲରେ ପ୍ରକାଶିତ ହୋଇଛି। ରାଜ୍ୟର ଶିକ୍ଷକ ଆନ୍ଦୋଳନ ସହ ଜଡ଼ିତ ଡକ୍ଟର ପ୍ରଧାନ 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା'ର ସାଧାରଣ ସମ୍ପାଦକ (୨୦୦୪-୨୦୦୬) ଥିଲେ। ସେ ସମ୍ପ୍ରତି ବରଗଡ଼ ସହରର ନିଗମାନନ୍ଦ ବିହାରସ୍ଥିତ ଏକ ଭଡ଼ାଘରେ ସପରିବାର ରହୁଛନ୍ତି।

ଶ୍ରୀ ଦ୍ୱାରିକାନାଥ ନାୟକ (୧୯୬୮-) କଟକ ମହାନଗର ନିଗମ (ସି.ଏମ୍.ସି.)ର ହିସାବ ଉପବିଭାଗରେ କନିଷ୍ଠ ସହାୟକ ଭାବେ କାର୍ଯ୍ୟରତ ଅଛନ୍ତି। ସେ ୧୯୯୦ରେ ନିଗମଦ୍ୱାରା ପରିଚାଳିତ ବିଶ୍ୱନାଥ ପଣ୍ଡିତ କେନ୍ଦ୍ରୀୟ ପାଠାଗାରରେ ପାଠଗାର ସହାୟକ ରୂପେ ଯୋଗଦେଇ କର୍ମମୟ ଜୀବନ ଆରମ୍ଭ କରିଥିଲେ। ସେ ଜଗତ୍‌ସିଂହପୁର ଜିଲ୍ଲାର ନାଉଗାଁ ବ୍ଲକ ଅନ୍ତର୍ଗତ ଦାନ୍ତୁଆଳ ଗ୍ରାମ ନିବାସୀ ସ୍ୱର୍ଗତ ଚତୁର୍ଭୁଜ ନାୟକଙ୍କର ପୁତ୍ର ଅଟନ୍ତି। ସେ କଟକ ସହରର ଝାଞ୍ଜିରୀମଙ୍ଗଳାଠାରେ ଏକ ଭଡ଼ାଘରେ ସପରିବାର ରହୁଛନ୍ତି।

ପ୍ରଫେସର ବାଉରୀବନ୍ଧୁ କର (୧୯୫୧-) ମସୀ ଚାଳନା କରି ଓଡ଼ିଆ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟକୁ ସମୃଦ୍ଧି କରିଛନ୍ତି। ଓଡ଼ିଆ ଭାଷାରେ ସେ ପ୍ରାୟ ୪୦ ଖଣ୍ଡ ପ୍ରବନ୍ଧ ଓ ସମାଲୋଚନା ପୁସ୍ତକ ପ୍ରଣୟନ କରିଛନ୍ତି। ପ୍ରଫେସର ବଂଶୀଧର ମହାନ୍ତିଙ୍କ ତତ୍ତ୍ୱାବଧାନରେ 'ଆଧୁନିକ ଓଡ଼ିଆ ସାହିତ୍ୟକୁ କାମପାଳ ମିଶ୍ରଙ୍କ ଦାନ' ଶୀର୍ଷକ ଶୋଧପ୍ରବନ୍ଧ ରଚନା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୮୩ରେ ପିଏଚ୍.ଡି. ଡିଗ୍ରୀ ପ୍ରାପ୍ତ ହୋଇଥିଲେ। ତାଙ୍କ ଅଧୀନରେ ଗବେଷଣା କରି ପ୍ରାୟ ୬୦ ଜଣ ବ୍ୟକ୍ତି 'ଡକ୍ଟରେଟ' ଲାଭ କରିଛନ୍ତି; ଏହା ତାଙ୍କର ଏକ ବିରଳ କୃତିତ୍ୱ ନିଶ୍ଚୟ। ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରଫେସର ତଥା ମୁଖ୍ୟ ପଦରୁ ୨୦୧୧ ସେପ୍ଟେମ୍ବର ୩୦ରେ ଅବସର ନେଇଥିଲେ। ପ୍ରଫେସର କର ସମ୍ପ୍ରତି ଭୁବନେଶ୍ୱରର କପିଳପ୍ରସାଦସ୍ଥିତ ବାସଭବନରେ ସପରିବାର ଅବସ୍ଥାନ କରୁଛନ୍ତି।

ଡକ୍ଟର ବିଜୟ ସ୍ୱାଇଁ (୧୯୫୨-୨୦୦୮) ଓଡ଼ିଆ କବିତା ଜଗତରେ ନିଜର ପଦଚିହ୍ନ ଛାଡ଼ିଯାଇଛନ୍ତି। ତାଙ୍କ ରଚିତ 'ଶରଧାର ବଡ଼ଦାଣ୍ଡ', 'ସମ୍ପର୍କର ନୂଆନଈ', 'ମାଟି ଅଗଣାର ଗୀତ', 'କଥା ବୋଇଲେ ତ ଗୋଟିଏ ବୁଲେଇ

ବଙ୍କେଇ କୋଟିଏ' ଆଦି କବିତା ସଂକଳନ ପ୍ରକାଶିତ ହୋଇଛି । ସେ ଡକ୍ଟର ନଟବର ପାଣିଗ୍ରାହୀଙ୍କ ତତ୍ତ୍ୱାବଧାନରେ 'ଓଡ଼ିଆ ଜାତୀୟବାଦୀ ନାଟକ' ଶୀର୍ଷକ ସନ୍ଦର୍ଭ ରଚନା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧି ପ୍ରାପ୍ତ ହୋଇଥିଲେ । ବକ୍ସି ଜଗବନ୍ଧୁ ବିଦ୍ୟାଧର (ବି.ଜେ.ବି.) ସ୍ୱୟଂଶାସିତ କଲେଜର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ପ୍ରାଧ୍ୟାପକ ଥିବାବେଳେ ୨୦୦୮ ଅକ୍ଟୋବର ୫ରେ ତାଙ୍କର ଅକାଳ ବିୟୋଗ ଘଟିଥିଲା । ମୃତ୍ୟୁବେଳକୁ ସେ ଭୁବନେଶ୍ୱରର ଲକ୍ଷ୍ମୀସାଗରସ୍ଥିତ ଏକ ଭଡ଼ାଘରେ ସପରିବାର ଅବସ୍ଥାନ କରୁଥିଲେ ।

ଶ୍ରୀ ବରଦାକାନ୍ତ ମହାନ୍ତି (୧୯୫୮-) ରାଜ୍ୟ ପଶୁପାଳନ ଓ ପଶୁଚିକିତ୍ସା ସେବା ନିର୍ଦ୍ଦେଶାଳୟରେ କାର୍ଯ୍ୟାଳୟ ଅଧୀକ୍ଷକ ଭାବେ କାର୍ଯ୍ୟରତ ଅଛନ୍ତି । ସେ ମଧୁସୂଦନ ଆଇନ କଲେଜରୁ ୧୯୮୦ରେ ଏଲ୍ଏଲ୍.ବି. ଡିଗ୍ରୀ ହାସଲ କରି ଓଡ଼ିଶା ହାଇକୋର୍ଟରେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ମାତ୍ର ପରେ ଓକିଲାତି ଛାଡ଼ି ସରକାରୀ ଚାକିରିରେ ଯୋଗଦେଇଥିଲେ । ମୂଳରୁ ସାଂଗଠନିକ କାର୍ଯ୍ୟ ପ୍ରତି ଆଗ୍ରହ ରଖିଥିବା ଶ୍ରୀ ମହାନ୍ତି ଉତ୍କଳ ସାହିତ୍ୟ ସମାଜ, ଓଡ଼ିଆ ଯୁବ ଲେଖକ ସମ୍ମେଳନ, ଉତ୍କଳ ପାଠକ ସଂସଦ, ରାଜ୍ୟ ଜୀବେ ନିଷ୍ଠୁରତା ନିରୋଧ ସମିତି, ସାମନ୍ତସାହି କୁମାର ଉତ୍ସବ ସମିତି, ଶ୍ରୀ ଶ୍ରୀ ପତିତପାବନଜୀଉ ଭଜନ ପରିଷଦ ପରି ଅନୁଷ୍ଠାନର କାର୍ଯ୍ୟରେ ସମ୍ପୃକ୍ତ ଅଛନ୍ତି । ସେ କଟକ ସହରର ସାମନ୍ତସାହିସ୍ଥିତ ବାସଭବନରେ ସପରିବାର ରହୁଛନ୍ତି ।

ଶ୍ରୀ ରାସବିହାରୀ ମହାନ୍ତି (୧୯୪୭-) ଓଡ଼ିଶା ପୁଲିସର ହାବିଲଦାର ପଦରୁ ୨୦୦୫ ସେପ୍ଟେମ୍ବର ୩୦ରେ ଅବସର ଗ୍ରହଣ କରିଛନ୍ତି । ତାଙ୍କ ରଚିତ 'ପଲ୍ଲୀ ପରିଚୟ' କବିତା ଗ୍ରନ୍ଥ ୨୦୦୬ରେ ଅଧ୍ୟାପିକା ନୀହାରିକା ଦାସ ସ୍ମୃତି ନ୍ୟାସଦ୍ୱାରା ପ୍ରକାଶିତ ହୋଇଥିଲା । ପଲ୍ଲୀ ଜୀବନର ନିଛକ ଚିତ୍ର ବହନ କରୁଥିବା ଏହି ପୁସ୍ତକ ପାଠକ ମହଲରେ ବିଶେଷ ଆଦୃତି ଲାଭ କରିଛି । ଏହା ପୂର୍ବରୁ ତାଙ୍କ ରଚିତ 'ଅଭିଶାପ' ଓ 'ନିମନ୍ତ୍ରଣ' କବିତା ବହିଦ୍ୱୟ ପ୍ରକାଶ ପାଇଥିଲା । ସେ ସମ୍ପ୍ରତି ଭୁବନେଶ୍ୱରର ଶାସ୍ତ୍ରୀନଗରସ୍ଥିତ ବାସଭବନରେ ସପରିବାର ଅବସ୍ଥାନ କରୁଛନ୍ତି ।

ଶ୍ରୀ ଯୋଗେନ୍ଦ୍ର କୁମାର ମହାନ୍ତି (୧୯୧୯-୨୦୦୧) ଜଣେ ରହସ୍ୟ ଔପନ୍ୟାସିକ ଭାବରେ ଓଡ଼ିଶାର ପୁରପଲ୍ଲୀରେ ସୁଦ୍ଧା ଖ୍ୟାତି ଅର୍ଜନ କରିଛନ୍ତି । ୧୧୦ଖଣ୍ଡ ରହସ୍ୟ ଉପନ୍ୟାସ ('ମୀରା ସିରିଜ', 'ବିଦୀର୍ଣ୍ଣ ତମସା', 'ଲାଲକିଲାର ବନ୍ଦୀ'

ଇତ୍ୟାଦି) ବ୍ୟତୀତ ସେ ୧୭ଖଣ୍ଡ ଶିଶୁ ସାହିତ୍ୟ ('ବନ୍ଦୀ ସୁଭାଷ', 'ହିମାଳୟର ଡାକ', 'ଦେଶବିଦେଶର ବିସ୍ମୟକର କାହାଣୀ' ଇତ୍ୟାଦି) ସୃଷ୍ଟି କରିଛନ୍ତି। ଓଡ଼ିଶା ପୁଲିସରେ ଚାକିରି କରିଥିବା ଶ୍ରୀ ମହାନ୍ତି ବାରିପଦାରେ ଇନ୍‌ସ୍ପେକ୍ଟର ଥାଇ ସ୍ୱେଚ୍ଛାକୃତ ଭାବରେ ଚାକିରିରୁ ଅବସର ଗ୍ରହଣ କରିଥିଲେ। ତାଙ୍କର ସାହିତ୍ୟ କୃତି ଉପରେ ଗବେଷଣା କରି ଡକ୍ଟର କିଶୋର ଚନ୍ଦ୍ର ଦାସ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୨୦୦୬ରେ ପିଏଚ୍.ଡି. ଉପାଧି ଲାଭ କରିଛନ୍ତି। ଶ୍ରୀ ମହାନ୍ତି ମୃତ୍ୟୁବେଳକୁ କଟକ ଜିଲ୍ଲାର କିଶୋରନଗର ଥାନା ଅନ୍ତର୍ଗତ ହୁଲିପୁର ଗ୍ରାମସ୍ଥିତ ବାସଭବନରେ ରହୁଥିଲେ।

ଶ୍ରୀମତୀ ନମିତା ପଣ୍ଡା (୧୯୪୯-) ରାଜ୍ୟର ଜଣେ ପ୍ରମୁଖ ନାରୀନେତ୍ରୀ ରୂପେ ଜଣାଶୁଣା ଅଟନ୍ତି। ସେ ୨୦୧୦ରୁ 'ନୀଳଚକ୍ର' ଅନୁଷ୍ଠାନର ସଭାନେତ୍ରୀ ଦାୟିତ୍ୱ ବହନ କରିଆସୁଛନ୍ତି। ସେ ରାଜ୍ୟ ମହିଳା କମିଶନର ଅଧକ୍ଷା ଭାବେ ୨୦୦୩ ଜାନୁଆରିରୁ ୨୦୦୬ ଜାନୁଆରି ଏବଂ ପୁଣି ୨୦୦୬ ଫେବୃଆରିରୁ ୨୦୦୯ ଫେବୃଆରି ପର୍ଯ୍ୟନ୍ତ କାର୍ଯ୍ୟରତ ଥିଲେ। ତା' ପୂର୍ବରୁ ସେ ଓଡ଼ିଶା ରାଜ୍ୟ ସମବାୟ ହସ୍ତଶିଳ୍ପ ନିଗମର ଅଧ୍ୟକ୍ଷ ପଦ ମଣ୍ଡନ କରିଥିଲେ। ଲଜପତ ରାୟ ଆଇନ କଲେଜରେ ଏଲ୍‌ଏଲ୍.ବି. ପଢ଼ିବାବେଳେ ସେ ଛାତ୍ର ସଂସଦର ଉପସଭାପତି ରୂପେ ନର୍ବାଚିତ ହୋଇଥିଲେ। ଶ୍ରୀମତୀ ପଣ୍ଡା ସମ୍ପ୍ରତି କଟକ ସହରର ପିଠାପୁରସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।

ଡକ୍ଟର ଶୈଳେନ୍ଦ୍ର ନାରାୟଣ ତ୍ରିପାଠୀ (୧୯୫୭-) ଇଂରାଜୀ ସାହିତ୍ୟର ଜଣେ ବିଶିଷ୍ଟ କବି ଭାବେ ବିବେଚିତ ହୁଅନ୍ତି। ଇଂରାଜୀରେ ତାଙ୍କ ରଚିତ/ସମ୍ପାଦିତ ୪ଖଣ୍ଡ କବିତା ପୁସ୍ତକ I am Fhallic God and Other Poems, The Trapped World, Hole in Soul ଓ Moon on Cuckoo's Nest ପ୍ରକାଶିତ ହୋଇଛି। ସେ ସାମୟିକ ପତ୍ରିକା Poesi India International ର ସମ୍ପାଦକ, ପ୍ରକାଶକ ତଥା ପ୍ରତିଷ୍ଠାତା ଅଟନ୍ତି। ସେ ପ୍ରଫେସର ଆଇଜାକ୍ ସେକ୍ୟୁୟାରା (ହାଇଦ୍ରାବାଦ)ଙ୍କ ତତ୍ତ୍ୱାବଧାନରେ Indian Influences on the Poetry of Allen Ginsberg ଶୀର୍ଷକ ସନ୍ଦର୍ଭ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୨୦୦୭ରେ ପିଏଚ୍.ଡି. ଡିଗ୍ରୀ ପାଇଥିଲେ। ତାଙ୍କ ଅଧୀନରେ ଗବେଷଣା କରି ୨ଜଣ ଅଧ୍ୟାପକ 'ଡକ୍ଟରେଟ' ଲାଭ କରିସାରିଛନ୍ତି। ଡକ୍ଟର ତ୍ରିପାଠୀ ବକ୍ସି ଜଗବନ୍ଧୁ ବିଦ୍ୟାଧର

(ବି.ଜେ.ବି.) ସ୍ୱୟଂଶାସିତ କଲେଜରେ ଇଂରାଜୀ ବିଭାଗର ପ୍ରାଧ୍ୟାପକ ତଥା ମୁଖ୍ୟ ଅଛନ୍ତି । ବିଭିନ୍ନ ଓଡ଼ିଆ ଖବରକାଗଜରେ ବାହାରିଥିବା ତାଙ୍କର ଲେଖାଗୁଡ଼ିକ ସଂକଳିତ ହୋଇ 'ବିଶ୍ୱ ସାହିତ୍ୟ' ଶୀର୍ଷକ ପୁସ୍ତକ ପ୍ରକାଶ ପାଇଛି । ସେ ସମ୍ପ୍ରତି ଭୁବନେଶ୍ୱରର ରାଜେନ୍ଦ୍ର ବିହାରସ୍ଥିତ ନିଜସ୍ୱ ଫ୍ଲାଟରେ ସପରିବାର ବାସ କରୁଛନ୍ତି ।

ପ୍ରାଧ୍ୟାପକ ଶ୍ରୀନିବାସ ରଥ (୧୯୪୪-୨୦୧୨) ରାଷ୍ଟ୍ରବାଦୀ ଚିନ୍ତାଧାରାରେ ବିଶ୍ୱାସ କରୁଥିବା ରାଜ୍ୟର କତିପୟ ଐତିହାସିକଙ୍କ ମଧ୍ୟରୁ ଅନ୍ୟତମ ଥିଲେ । ସେ ଓଡ଼ିଶାର ୪ଟି ପ୍ରମୁଖ ବେସରକାରୀ ଶିକ୍ଷାନୁଷ୍ଠାନର ଅଧ୍ୟକ୍ଷ ଦାୟିତ୍ୱ ବହନ କରିଥିଲେ । ସେ ମୋହନ ସୁବୁଦ୍ଧି (ଏମ୍.ଏସ୍.) କଲେଜ, ବଡ଼ମ୍ବା, କଟକ ସିଟି କଲେଜ, କଟକ, ଧର୍ମଶାଳା ମହାବିଦ୍ୟାଳୟ, ଧର୍ମଶାଳା ଓ ଚୌଦ୍ୱାର କଲେଜ, ଚୌଦ୍ୱାରର ଅଧ୍ୟକ୍ଷ ରହିଥିଲେ । ଚୌଦ୍ୱାର କଲେଜର ଅଧ୍ୟକ୍ଷ ପଦରୁ ଶ୍ରୀ ରଥ ୨୦୦୪ ଜାନୁଆରି ୩୧ରେ ଅବସର ଗ୍ରହଣ କରିଥିଲେ । ସେ ନିଜକୁ ଜଣେ ନିଷ୍ଠାପର ଶିକ୍ଷାବିତ୍ ତଥା ସଫଳ ପ୍ରଶାସକ ଭାବେ ପ୍ରମାଣିତ କରିଯାଇଛନ୍ତି । ମୃତ୍ୟୁବେଳକୁ ସେ କଟକ ସହରର ଜଗନ୍ନାଥ ଲେନ୍‌ସ୍ଥିତ ବାସଭବନରେ ସପରିବାର ରହୁଥିଲେ ।

ଅଧ୍ୟାପକ ଶ୍ରୀ ଅକ୍ଷୟ କୁମାର ଦାଶ (୧୯୬୨-) କିଶୋରନଗରସ୍ଥିତ କିଶୋରନଗର କଲେଜରେ ଇଂରାଜୀ ବିଭାଗର ଅଧ୍ୟାପକ ଅଛନ୍ତି । ଏଥି ପୂର୍ବରୁ ସେ ଅଡ଼ଶପୁରସ୍ଥିତ ଉଦୟନାଥ ବିଜ୍ଞାନ ଓ ବୈଷୟିକ କଲେଜ ଏବଂ କନିମୂଳସ୍ଥିତ ବାୟା ଅବଧୂତ କଲେଜରେ ଅଧ୍ୟାପନା କରିଥିଲେ । ମାତ୍ର ଅଡ଼ଶପୁର ଓ କନିମୂଳ ଛାଡ଼ି ସେ କିଶୋରନଗରକୁ ନିଜର କର୍ମକ୍ଷେତ୍ର ରୂପେ ବାଛିନେଇଥିଲେ । ଇଂରାଜୀରେ ତାଙ୍କ ରଚିତ ପ୍ରାୟ ଏକଶହ କବିତାକୁ ନେଇ ଏକ ସଙ୍କଳନ ପ୍ରକାଶ ଅପେକ୍ଷାରେ ଅଛି । ଗୀତ ଗାଇବାରେ ଆଗ୍ରହ ରଖିଥିବା ଶ୍ରୀ ଦାଶ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ଗୀତ ଗାଇ ପ୍ରଶଂସିତ ହୋଇଛନ୍ତି । ସେ ସମ୍ପ୍ରତି କଟକ ସହରର ପାରେଶ୍ୱରସାହିସ୍ଥିତ ଏକ ଭଡ଼ାଘରେ ସପରିବାର ରହୁଛନ୍ତି ।

ଡକ୍ଟର ସଂକର୍ଷଣ ମିଶ୍ର (୧୯୪୬-) ବି.ଏସ୍‌ସି. ଓ ବି.ଇଡି. ପାସ କରି ଶିକ୍ଷକତାକୁ ବୃତ୍ତି ଭାବେ ଆପଣାଇ ନେଇଥିଲେ । ସେ କଟକ ସହରର ୨ଟି ପ୍ରମୁଖ ଶିକ୍ଷାନୁଷ୍ଠାନ ରାଣୀହାଟ ହାଇସ୍କୁଲ ଓ ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲରେ ଶିକ୍ଷକତା କରିଥିଲେ । ସେ ବୋର୍ଡ଼ ହାଇସ୍କୁଲର ପ୍ରଧାନ ଶିକ୍ଷକ ପଦ ମଣ୍ଡନ କରିବାର ଗୌରବ

ଅର୍ଜନ କରିଥିଲେ। ଜ୍ଞାନପିପାସା ଯୋଗୁଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଘରୋଇ ଭାବେ ପରୀକ୍ଷା ଦେଇ ୧୯୮୫ରେ ଓଡ଼ିଆ ଭାଷା ଓ ସାହିତ୍ୟରେ ଏମ୍.ଏ. ଡିଗ୍ରୀ ଲାଭ କରିଥିଲେ। ପ୍ରଫେସର ପ୍ରଫୁଲ୍ଲ କୁମାର ମିଶ୍ରଙ୍କ ତତ୍ତ୍ୱାବଧାନରେ 'ଓଡ଼ିଆ ଅଳଙ୍କାର ଶାସ୍ତ୍ର – ଏକ ଅଧ୍ୟୟନ' ଶୀର୍ଷକ ସନ୍ଦର୍ଭ ଲେଖି ୨୦୦୦ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧି ପ୍ରାପ୍ତ ହୋଇଥିଲେ। ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ (ଆର୍.ଏସ୍.ଏସ୍.) ଓ 'ରାଷ୍ଟ୍ରବାଦୀ ଶିକ୍ଷକ ପରିଷଦ, ଓଡ଼ିଶା' ପରି ତା'ର ବିବିଧ କ୍ଷେତ୍ର ସହିତ ଡକ୍ଟର ମିଶ୍ର ଜଡ଼ିତ ଅଛନ୍ତି। ସେ ସମ୍ପ୍ରତି କଟକ ସହରର ଶିଖରପୁରସ୍ଥିତ ବାସଭବନରେ ସପରିବାର ରହୁଛନ୍ତି।



## ନୀହାରିକା (ଇଲା) : ୧୯୫୭



ପିତାଙ୍କର ବନ୍ଧୁ ପୋଷ୍ଟମାଷ୍ଟର ତଥା ସୌଖୀନ ଫଟୋଗ୍ରାଫର
ଶ୍ରୀ ଶରତ ଚନ୍ଦ୍ର ପରିଜା ୧୯୫୭ ମସିହାରେ ବୋଧପୁରଠାରେ
ଏହି ଫଟୋ ଉତ୍ତୋଳନ କରିଥିଲେ ।

## ସହପାଠିନୀମାନଙ୍କ ଗହଣରେ ନୀହାରିକା ଦାସ



ଉତ୍କଳ ବିଶ୍ୱବିଦ୍ୟାଳୟରେ ଏମ୍.ଏ. ପଢ଼ିବାବେଳେ (୧୯୭୫-୧୯୭୭) ସହପାଠିନୀମାନଙ୍କ ଗହଣରେ କୁମାରୀ ନୀହାରିକା ଦାସ (ଡାହାଣରୁ ପ୍ରଥମ) ।

## ସ୍ୱପରିବାର ସହ ନୀହାରିକା ଦେବୀ



ବାମରୁ ଡାହାଣକୁ :

ଅଧ୍ୟାପିକା ନୀହାରିକା ଦାସ, ଶ୍ରୀମତୀ ଅହଲ୍ୟା ଦାସ (ଭାଉଜ), ଶ୍ରୀମତୀ ସୌଭାଗ୍ୟ ମଞ୍ଜରୀ ଦାସ (ବୋଉ), ଶ୍ରୀ ରାଜକିଶୋର ଦାସ (ବାପା), ଡକ୍ଟର ସୁଶାନ୍ତ କୁମାର ଦାସ (ଭାଇ) ଏବଂ ଶ୍ରୀ ସୁବ୍ରତ କୁମାର ଦାସ (ଭାଇ) ।

## ମୃତ୍ୟୁଶଯ୍ୟାରେ ନୀହାରିକା ଦେବୀ



ବାମରୁ ଡାହାଣକୁ :

ଶ୍ରୀମତୀ ସୌଦାମିନୀ ପଟ୍ଟନାୟକ (ନଣନ୍ଦ), ଶ୍ରୀମତୀ ତୃପ୍ତିପ୍ରଭା ମହାନ୍ତି (ଯାଆ), ଅଧ୍ୟାପିକା ପ୍ରଣତି ମହାନ୍ତି (ଯାଆ), ଶ୍ରୀମତୀ ଅଳକା ମହାନ୍ତି (ଯାଆ) ଏବଂ ଶ୍ରୀମତୀ ସାବିତ୍ରୀ ମହାନ୍ତି (ଖୁଡ଼ୀ)।

"ନୀହାରିକା ନାମରେ ଇତିହାସ ଅଧ୍ୟାପିକା ଝିଅଟିଏ ଥିଲା ଖୁବ୍ ଧୀରସ୍ଥିର ଓ କର୍ତ୍ତବ୍ୟ-ପରାୟଣା । ସେହି ଝିଅଟି ଅକାଳରେ ସ୍ୱର୍ଗକୁ ଚାଲିଗଲାଣି । ତା'ର ସ୍ୱାମୀ ଦର୍ଶନ ଅଧ୍ୟାପକ ଶ୍ରୀ ନାରାୟଣ ମହାନ୍ତି ତାଙ୍କ ଗ୍ରାମରେ ନୀହାରିକାର ଗୋଟିଏ ପ୍ରତିମୂର୍ତ୍ତି ସ୍ଥାପନା କରିଛନ୍ତି (ମୁଁ କଲେଜ ଛାଡ଼ିବା ପରେ)। ପ୍ରତିମୂର୍ତ୍ତି ଉନ୍ମୋଚନବେଳକୁ ନାରାୟଣ ବାବୁ ମୋତେ ଡାକିଥିଲେ । ନୀହାରିକାକୁ ପ୍ରତିମୂର୍ତ୍ତି ଆକାରରେ ଦେଖି ମୁଁ କାନ୍ଦି ପକାଇଥିଲି ।"

– ଡକ୍ଟର ଧନେଶ୍ୱର ମହାପାତ୍ର

*ଏକ ବୁଦ୍‌ବୁଦ୍‌ର କାହାଣୀ*